# ଉତ୍କଳ ପ୍ରସଙ୍ଗ

B DASH, M

୧୯୭୬ ଅକ୍ଟୋବର: ଆଶ୍ୱିନ ୧୮୯୮ ଶକାବ୍ଦ
ଷଷ୍ଠ ଭାଗ : ତୃତୀୟ ସଂଖ୍ୟା

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ଏଭଳି ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନହେଁ ।

'ଉତ୍କଳ ପ୍ରସଙ୍ଗ' ଓଡ଼ିଶା ସରକାରଙ୍କ ସ୍ୱରାଷ୍ଟ୍ର (ଲୋକ ସମ୍ପର୍କ) ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସମ୍ବନ୍ଧରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

• • •

ମୁଖ୍ୟ ସମ୍ପାଦକ:
**ଶ୍ରୀ ଅଭୟ ନାରାୟଣ ତିୱାରୀ**
ଆଇ. ଏ. ଏସ୍.,
ଲୋକ ସମ୍ପର୍କ ନିର୍ଦ୍ଦେଶକ

ସମ୍ପାଦକ:
**ମହାପାତ୍ର ନୀଳମଣି ସାହୁ**

ସହକାରୀ ସମ୍ପାଦକ:
**ପ୍ରହରାଜ ଶ୍ରୀ ସତ୍ୟନାରାୟଣ ନନ୍ଦ**

ସହଯୋଗୀ ସମ୍ପାଦକ :
**ଶ୍ରୀ ବ୍ରଜମୋହନ ପଟ୍ଟନାୟକ**
**ଶ୍ରୀ କିଶୋର ଚନ୍ଦ୍ର ବେହେରା**

ପ୍ରଚ୍ଛଦପଟ :
**ଶ୍ରୀ ଅସୀତ୍ ମୁଖର୍ଜୀ**

ମୁଦ୍ରଣ
**ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ**

ବାର୍ଷିକ ଦେୟ—ଟ ୧୦·୦୦    ପ୍ରତିଖଣ୍ଡ—ଟ ୧·୦୦

## ସୂଚୀପତ୍ର

### ପ୍ରସଙ୍ଗ କ୍ରମେ



### ସାହିତ୍ୟ ଓ ସଂସ୍କୃତି

# ଉତ୍କଳ ପ୍ରସଙ୍ଗ

B DASH, M

୧୯୭୬ ଅକ୍ଟୋବର: ଆଶ୍ୱିନ ୧୮୯୮ ଶକାବ୍ଦ
[illegible] ଖଣ୍ଡ : ତୃତୀୟ ସଂଖ୍ୟା

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଗୁଡ଼ିକ ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।

'ଉତ୍କଳ ପ୍ରସଙ୍ଗ' ଓଡ଼ିଶା ସରକାରଙ୍କ ସ୍ୱରାଷ୍ଟ୍ର (ଲୋକ ସମ୍ପର୍କ) ବିଭାଗ ତରଫରୁ ପ୍ରକାଶ ପାଇଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁସମୟରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

•••

ମୁଖ୍ୟ ସମ୍ପାଦକ:
ଶ୍ରୀ ଅଯୋଧ୍ୟା ନାରାୟଣ ତିୱାରୀ
ଆଇ. ଏ. ଏସ୍.,
ଲୋକ ସମ୍ପର୍କ ନିର୍ଦ୍ଦେଶକ

ସମ୍ପାଦକ:
ମହାପାତ୍ର ନୀଳମଣି ସାହୁ

ସହକାରୀ ସମ୍ପାଦକ:
ପ୍ରହରାଜ ଶ୍ରୀ ସତ୍ୟନାରାୟଣ ନନ୍ଦ

ସହଯୋଗୀ ସମ୍ପାଦକ :
ଶ୍ରୀ ବ୍ରଜମୋହନ ପଟ୍ଟନାୟକ
ଶ୍ରୀ କିଶୋର ଚନ୍ଦ୍ର ବେହେରା

ପ୍ରଚ୍ଛଦପଟ :
ଶ୍ରୀ ଅସୀତ୍ ମୁଖର୍ଜୀ

ମୁଦ୍ରଣ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

ବାର୍ଷିକ ଦେୟ—ଟ ୧୦·୦୦ ପ୍ରତିଖଣ୍ଡ—ଟ ୧·୦୦

## ସୂଚୀପତ୍ର

### ପ୍ରସଙ୍ଗ କ୍ରମେ



### ସାହିତ୍ୟ ଓ ସଂସ୍କୃତି

## ଆଜିର ଓଡ଼ିଶା



ଉତ୍କଳମଣି ଗୋପବନ୍ଧୁ ଓଡ଼ିଆ ଜାତିର ଯୁଗ ଯୁଗର ଆଶା, ଅଭୀପ୍ସା ଓ ତପସ୍ୟାର ପୁଣ୍ୟ ଅବଦାନ । ସେ ଥିଲେ ଆଧୁନିକ ଓଡ଼ିଶାର ନବନିର୍ମାତା ଏବଂ ଏ ଜାତିଲାଗି ଯୁଗ ଯୁଗକୁ ଆଦର୍ଶ ଓ ପ୍ରେରଣାର ଉତ୍ସ । ସେଥିପାଇଁ ସେ ନିଜକୁ ସଂପୂର୍ଣ୍ଣ ଉତ୍ସର୍ଗ କରି ଦେଇଥିଲେ । ଏପରିକି ଅନ୍ୟର ଦୁଃଖ ମୋଚନ କରିବାକୁ ଯାଇ ନିଜର ଏକମାତ୍ର ପୁତ୍ରକୁ ହରାଇଥିଲେ ।

ସେ ଚାହୁଁଥିଲେ ଦାରିଦ୍ର୍ୟ ଓ ଅଜ୍ଞତା ମୁକ୍ତ ଏକ ସମାଜ ଯେଉଁଠି ମଣିଷ ଆତ୍ମ ମର୍ଯ୍ୟାଦା ରକ୍ଷା କରି ବଂଚି ପାରିବ ଓ ଆପଣା ଚେତନାର ବିକାଶ କରିବାରେ ସମର୍ଥ ହୋଇ ପାରିବ । ଏହି ଲକ୍ଷ୍ୟରେ ସେ ଜୀବନ ପଣ କରି ଦେଇଥିଲେ । ଆଜି ସୁଦ୍ଧା ତାଙ୍କର ସେ ସ୍ୱପ୍ନ ସଫଳ ହୋଇ ନାହିଁ । ଆସନ୍ତୁ । ଆମ୍ଭେମାନେ ସମସ୍ତେ ତାଙ୍କ ସ୍ୱପ୍ନକୁ ସଫଳ କରିବାପାଇଁ ଲାଗି ପଡ଼ିବା । ସମସ୍ତ ପ୍ରକାର ଛଳନା, ନୀଚତା, ପ୍ରତାରଣା ଓ ଅହଂସର୍ବସ୍ୱତାରୁ ନିଜକୁ ମୁକ୍ତ ନ କରି ପାରିଲେ ଆମେ ଗୋପବନ୍ଧୁଙ୍କ ପଥ ଅନୁସରଣ କରିପାରିବା ନାହିଁ । କିମ୍ବା ନିଜକୁ ସମାଜକୁ ଗୋଟାଏ ଇଞ୍ଚ ମଧ୍ୟ ଅଗ୍ରସର କରାଇ ପାରିବା ନାହିଁ । ସେ ଅଳ୍ପ ବୟସରେ ଏ ପୃଥିବୀକୁ ଛାଡ଼ି ଚାଲିଗଲେ ଏବଂ ସମଗ୍ର ଜାତି ଆଗରେ ଅନନ୍ତକାଳ ଲାଗି ତାଙ୍କର ସ୍ୱପ୍ନକୁ ସଫଳ କରିବାର ଦାୟିତ୍ୱ ଦେଇଗଲେ । ଗୋପବନ୍ଧୁଙ୍କ ନାମ ଉଚ୍ଚାରଣ କରିବା ମାତ୍ରେ ଆମେ ଯେପରି ସେହି ମହାନ୍ ପବିତ୍ର ଦାୟିତ୍ୱକୁ ନିଜ ମୁଣ୍ଡ ଉପରକୁ ଉଠାଇ ନେଉ, ତା' ନ ହେଲେ ଆମେ ସେହି ଋଷି ନେତାଙ୍କ ପ୍ରତି ଅବିଚାର କରିବୁ ।

ଆଜି ତାଙ୍କର ଶତବାର୍ଷିକୀରେ ମୁଁ ମୋ ତରଫରୁ ଓ ସମଗ୍ର ଜାତି ତରଫରୁ ତାଙ୍କ ପ୍ରତି ଅଶେଷ ଭକ୍ତି, ଶ୍ରଦ୍ଧା ଓ କୃତଜ୍ଞତା ନିବେଦନ କରୁଛି ।

ନନ୍ଦିନୀ ଶତପଥୀ

ମୁଖ୍ୟମନ୍ତ୍ରୀ, ଓଡ଼ିଶା




# ଗୋପବନ୍ଧୁ କିଏ?

ଆଜିଠାରୁ ଶହେବର୍ଷ ପୂର୍ବେ.............ଅଠରଶ ଛସ୍ତରୀ ମସିହାର ଅକ୍ଟୋବର ନଅ ତାରିଖକୁ ଧନ୍ୟ କହିବା । ପୁରୀ ଜିଲ୍ଲାର ଭାର୍ଗବୀ ନଦୀ ତଟବର୍ତ୍ତୀ ସୁଆଣ୍ଡୋ ଗାଁଟିକି ମଧ୍ୟ ଧନ୍ୟ କହିବା । ସେଇଦିନ, ସେଇ ଗ୍ରାମରେ ପରମ ଧର୍ମ୍ୟବନ୍ତ ଦୈତ୍ୟାରି ଦାସ ଓ ସ୍ୱର୍ଣ୍ଣମୟୀ ଦେବୀଙ୍କ ଔରସରୁ ସେହି ମହାପୁରୁଷ ଜନ୍ମ ଗ୍ରହଣକରି ଅଜ୍ଞାନ ଦାରିଦ୍ର୍ୟ ଦୁଃଖକଷଣ ପ୍ରପିଡିତା ଦୀନାହୀନା ଉତ୍କଳ ମାତାର କୋଳମଣ୍ଡନ କରିଥିଲେ । ବାପ ଡାକୁଥିଲେ ଧୂଳିଧୂସରିଆ ସାଧୁ ଚରଣ—ଦେଶବାସୀ ଡାକିଲେ ଗୋପବନ୍ଧୁ—ଦେଶ ଡାକିଲା ଉତ୍କଳମଣି । ସେକାଳର ଓଡ଼ିଶାର କୋଡ଼ିଏ ଜଣ ଗ୍ରାଜୁଏଟ ଭିତରେ ସେ ଥିଲେ ଜଣେ । ଓକିଲାତି ମଧ୍ୟ ପାସ କରି ଦିନ କେତୁଟା ଓକିଲାତି କରିଥିଲେ । ସେ ଇଚ୍ଛା କରିଥିଲେ ସରକାରୀ ଦପ୍ତରରେ ବଡ ଚାକିରୀଟିଏ ଧରି ସେଇଥିରେ ସିଡ଼ି ପରେ ସିଡ଼ି ଉଠି ଉଠି କୋଉଠିନା କୋଉଠି ଯାଇ ବସିଥାନ୍ତେ । କିମ୍ବା ଓକିଲାତିରେ ମନଦେଇ କୋଠାବାଡ଼ି ଦାସଦାସୀ ଧନଦୌଲତ ଭିତରେ ବାଦଶାହ ହୋଇ ବସିଥାନ୍ତେ । ମାତ୍ର ତାହା ସେ କଲେ ନାହିଁ । ଜ୍ୟୋତିଷ କୁଆଡ଼େ କହିଥିଲେ—ଏ ପିଲାଟି ବାବାଜି ହୋଇଯିବ । ସେ ନିଜେ ମଧ୍ୟ ପିଲାଦିନେ ଦେହରେ ଧୂଳି ବୋଳିହୋଇ ବାବାଜି ହେଉଥିଲେ । କହୁଥିଲେ, ବାପା । ମୁଁ ବାଆଜି ହେବି—ରଜା ହେବି ନାହିଁ—ମନ୍ତ୍ରୀ ହେବି ନାହିଁ—ସାଧବ ହେବି ନାହିଁ କି କଟୁଆଳ ହେବି ନାହିଁ—ବାଆଜି ହେବି ।

ହଁ—ବାଆଜି ସେ ହେଲେ ନାହିଁତ କ'ଣ ଆଉ ହେଲେ ? ସ୍କୁଲରେ ପାଠ ପଢ଼ିବା ଦିନୁ ଦେଶକଥା, ସମାଜକଥା ତାଙ୍କ ମୁଣ୍ଡରେ ପଶିଲା । ସେ ଦେଖିଲେ ଏଡ଼େ ବଡ ଦେଶ, ଏଡ଼େ ପ୍ରାଚୀନ ସଭ୍ୟତା ଓ ସଂସ୍କୃତି ସମ୍ପନ୍ନ ଦେଶ ପରାଧୀନ ହୋଇ ରହିଛି । ତାଙ୍କ ନିଜପାଇଁ ଖଣ୍ଡିଏ ପ୍ରଦେଶ ମଧ୍ୟ ନାହିଁ । ଲୋକେ ଘୋର ଅଜ୍ଞାନ ଅଚେତନଭାବେ ବଞ୍ଚିଛନ୍ତି । ରୋଗ, ଶୋକ, ଅପମୃତ୍ୟୁ, ଦାରିଦ୍ର୍ୟ, କ୍ଷୁଦ୍ରତା, ନୀଚାଶ୍ରୟତା ଆଦିରେ ସମଗ୍ର ଜାତି ଓ ଦେଶ ମ୍ରିୟମାଣ । ତାଙ୍କ ପ୍ରାଣ ସେହି ପିଲାଦିନୁ ଅନ୍ୟ ପାଇଁ କାନ୍ଦି ଉଠୁଥିଲା । ଗୋଟାଏ ଜାତି ନାନା ଦିଗରୁ ଭୟଙ୍କର କଷ୍ଟ ଭୋଗ କରୁଛି, ମାତ୍ର ସେଥିରୁ ମୁକୁଳିବାକୁ ତାର ଆସ୍ପୃହା ନାହିଁ, ସଙ୍ଗଠନ ନାହିଁ, ଚେଷ୍ଟା ସଂଗ୍ରାମ ନାହିଁ । ସେ ନିଜ ଜୀବନକୁ ଉତ୍ସର୍ଗ କଲେ ସେହି ଅଭିପ୍ରାୟରେ—ସେ ହୋଇ ଉଠିଲେ—ପରାର୍ଥେ ତ୍ୟକ୍ତ ଜୀବିତଂ ।

ଅଳ୍ପ ବୟସରେ ଘଟିଲା ତାଙ୍କର ପତ୍ନୀ ବିୟୋଗ । ଏକମାତ୍ର ପୁତ୍ର ମଧ୍ୟ ତାଙ୍କୁ ଛାଡି ଆରପାରିକୁ ଚାଲିଗଲା । ମାତ୍ର ଦୁଇଟି କନ୍ୟା ଜୀବିତ ଥିଲେ । ସେ ଦ୍ୱିତୀୟ ଦାର ପରିଗ୍ରହ କଲେ ନାହିଁ । ପତ୍ନୀଙ୍କର ମୃତ୍ୟୁ, ଏକମାତ୍ର ପୁତ୍ରର ମୃତ୍ୟୁ ଓ ଦୁଇ କନ୍ୟାଙ୍କର ବିବାହ ପରେ ସେ ନିଜକୁ ସଂସାର-ବନ୍ଧନରୁ ସମ୍ପୂର୍ଣ୍ଣ ମୁକ୍ତ କରିଦେଲେ । ଦେଶ ହୋଇ ଉଠିଲା ତାଙ୍କ ପାଖରେ ସର୍ବସ୍ନେହ ସର୍ବମମତାର ଆଶ୍ରୟ ଓ ବିଷୟ । ଭାରତବର୍ଷକୁ ସେ ଦେଖିଲେ ଓଡିଶା ଭିତରେ । ଭାରତ ମାତାର ମୂର୍ତ୍ତିକୁ ସେ ପ୍ରତ୍ୟକ୍ଷ କଲେ ଉତ୍କଳ ଜନନୀଙ୍କ ଭାବକଳ୍ପ ବିଗ୍ରହରେ । ସେ ଭାବିଲେ, ସେ ଏହି ଓଡିଶାର ସେବା କରିବେ । ଉତ୍କଳ ଜନନୀର ପାଦରେ ନମସ୍କାର କଲେ—ସେ ପ୍ରଣତି "ଭାରତ ପ୍ରତି ଭକ୍ତି"—ଏ ସତ୍ୟ ତାଙ୍କ ହୃଦୟରେ ସ୍ଥିର ନିଶ୍ଚୟ ପ୍ରତିଭାତ ହୋଇଥିଲା ।

ଏହି ଓଡିଶା ହିଁ ହେଲା ତାଙ୍କର ପରିବାର ଓ କର୍ମଭୂମି । ଏହି ଓଡିଶାର ସେବା କରିବାକୁ ସେ ଜୀବନ ପଣ କରିଦେଇଥିଲେ । ନିଜର ସବୁ ସୁଖ ସମୃଦ୍ଧି ଜଳାଞ୍ଜଳି ଦେଇଥିଲେ ; ତାଙ୍କ ଆଗରେ ତାଙ୍କର ଲକ୍ଷ୍ୟ ସ୍ଥିର ହୋଇ ଯାଇଥିଲା । ସେ ଭାବିଲେ—ଓଡିଆମାନଙ୍କଲାଗି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ହେବ । ଭାରତବର୍ଷର ମହାନ୍ ଜାତୀୟତାରେ ଓଡିଆମାନଙ୍କୁ ଉଦ୍‌ବୁଦ୍ଧ କରିବାକୁ ହେବ । ଭାରତବର୍ଷର ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାଲାଗି ତାଙ୍କୁ ଓଡିଆମାନଙ୍କ ପକ୍ଷରୁ ନେତୃତ୍ୱ ନେବାକୁ ହେବ । ଭାରତବର୍ଷର ମୁନି ଋଷି ପ୍ରଦର୍ଶିତ ଆଧ୍ୟାତ୍ମିକ ପରମ୍ପରାକୁ ରକ୍ଷା କରିବାକୁ ହେବ । ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ପ୍ରଦର୍ଶିତ ଅହିଂସା ଓ ସତ୍ୟାଗ୍ରହ ପଥରେ ଜାତିକୁ ଗଠନ କରିବାକୁ ହେବ । ଓଡିଆମାନଙ୍କର ସାମୂହିକ ଅଶିକ୍ଷା, ଅଚେତନତା ଓ ଦାରିଦ୍ର୍ୟର ଦୁର୍ଭାଗ୍ୟ କବଳରୁ ସମଗ୍ର ଜାତିକୁ ଉଦ୍ଧାର କରିବାକୁ ହେବ । ପ୍ରତି ମଣିଷକୁ ଅହଂ-ସର୍ବସ୍ୱତାରୁ ମୁକ୍ତ କରି ତା'ଠାରେ ଆତ୍ମ-ମର୍ଯ୍ୟାଦା-ସମ୍ପନ୍ନ ସାମାଜିକ ଭାବ ସଞ୍ଚାରିତ କରିବାକୁ ହେବ ।

ମୋଟାମୋଟି ଏହାହିଁ ଥିଲା ତାଙ୍କ ଜୀବନର ଲକ୍ଷ୍ୟ । ଏହି ଲକ୍ଷ୍ୟରେ ତାଙ୍କର ସମଗ୍ର ଜୀବନ ବ୍ୟୟିତ ହୋଇଥିଲା । ତାଙ୍କର ସମସ୍ତ ସଙ୍ଗଠନ, ସମସ୍ତ ଉଦ୍ୟମ, ସମସ୍ତ ବାକ୍ୟ ଓ ସମସ୍ତ ଅଶ୍ରୁ ଏହି ଗୋଟିଏ ମାତ୍ର ଲକ୍ଷ୍ୟ ପଥରେ ନିର୍ଦ୍ଦିଷ୍ଟ ହୋଇ ଯାଇଥିଲା । ସେ ବେଶିକାଳ ବଞ୍ଚି ନ ଥିଲେ । ଯାହା କହନ୍ତି—ଅଧା ବୟସରୁ ମଲେ । ମାତ୍ର ତାଙ୍କରି ଭାଷାରେ କହିଲେ, "ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ—କର୍ମେ ତାହିଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।" ଏହି ମହତ କର୍ମାବଳୀ ଭିତରେ ତାଙ୍କର ପରିମିତ ଜୀବନ ଅପରିମିତ ମହିମାରେ ଉଦ୍‌ଭାସିତ ହୋଇ ଉଠିଲା ।

କିନ୍ତୁ କି କି କର୍ମମାନ ସେ କରିଛନ୍ତି—ତାକୁ କିପରି କହିବା ? ଲୋକେ ଆଜିପର୍ଯ୍ୟନ୍ତ ତିନି ଚାରିଟା କଥା ମନେ ରଖିଛନ୍ତି ମାତ୍ର । ବଢି ମରୁଡିରେ ସେ ନିଜ ଜୀବନକୁ ବିପନ୍ନ କରି ବୁଭୁକ୍ଷୁ ଲୋକଙ୍କୁ ଚୂଡ଼ା ଗୁଡ଼ କାଣ୍ଟୁଥିଲେ । ସତ୍ୟବାଦୀରେ ବକୁଳ ବଣରେ ଜାତୀୟ ବିଦ୍ୟାଳୟଟିଏ ସ୍ଥାପନ କରିଥିଲେ । ସେକାଳର ବିଶିଷ୍ଟ କେତେ ଶିକ୍ଷିତ ଯୁବକମାନଙ୍କୁ ଏକ ବିଶେଷ ଆଦର୍ଶରେ ଅନୁପ୍ରାଣିତ କରି ଏକତ୍ର ସଙ୍ଗଠିତ କରିଥିଲେ । ଓଡିଶାରେ ଭାରତୀୟ ଜାତୀୟ କଂଗ୍ରେସ ମାଧ୍ୟମରେ ମହାଭାରତୀୟ ଚେତନା ସୃଷ୍ଟି କରିଥିଲେ । ବିଚ୍ଛିନାଞ୍ଚଳରେ ଓଡିଆମାନଙ୍କୁ ସଙ୍ଗଠିତ କରିଥିଲେ । "ସମାଜ" ସମ୍ବାଦ ପତ୍ର ପ୍ରଚଳନ କରିଥିଲେ ଓ ଏମିତି ଏମିତି ଆଉ କେତୋଟା ସାନ ବଡ଼ କାମ କରି ଯାଇଥିଲେ ଏବଂ ଅନ୍ୟର ଦୁଃଖ ଦେଖିଲେ ବା ଶୁଣିଲେ ଭୋ ଭୋ ହୋଇ କାନ୍ଦି ପକାଉ ଥିଲେ ।

କିନ୍ତୁ କେବଳ ଏତିକି ଓ ଏଇ ସବୁ କାମରୁ ଯଦି ଜଣେ ବଡ ମଣିଷକୁ ଆବିଷ୍କାର କରାଯାଏ—ତେବେ ତାହା ଠିକ୍ ହେବ ନାହିଁ । ଏ ପୃଥିବୀରେ ବହୁ ମହାପୁରୁଷ ଜନ୍ମିଛନ୍ତି, ଯେଉଁମାନଙ୍କ କର୍ମ ଜୀବନ ଅପେକ୍ଷା ଆଉ ଜଣେ କ୍ଷମତା, ଧନ, ଯଶ ଓ ଜୟାଭିଳାଷୀ ସାଧାରଣ ବ୍ୟକ୍ତିର କର୍ମଜୀବନ ଅଧିକ ପ୍ରସାରିତ, ଅଧିକ ଜଟିଳ ଓ ଅଧିକ ପ୍ରଭାବକାରୀ । କିଏ କେତେ କାମ କଲା ସେହି କାମର ଗୁରୁତ୍ୱ ବା ଆଧିକ୍ୟରୁ ମହାପୁରୁଷ ଚିହ୍ନାଯାଏ ନା । ମହାପୁରୁଷମାନେ ଚିହ୍ନା ପଡନ୍ତି ସେମାନଙ୍କ ବ୍ୟକ୍ତିତ୍ୱରୁ—ସେମାନଙ୍କର ବ୍ୟକ୍ତିଗତ ଜୀବନଚର୍ଯ୍ୟାରୁ, ସେମାନଙ୍କର ଆଦର୍ଶରୁ—ସ୍ୱପ୍ନରୁ—ସଂଗ୍ରାମରୁ—ପୃଥିବୀ ପ୍ରତି ଓ ସ୍ରଷ୍ଟା ପ୍ରତି ସେମାନଙ୍କର ମନୋଭାବରୁ ଓ ସମ୍ପର୍କରୁ ।

ଗୋପବନ୍ଧୁ ଦାସ ସେଇ ସବୁ ଦୃଷ୍ଟିରୁ ମହାପୁରୁଷ । ତାଙ୍କର ଆଦର୍ଶ ଓ ସେ ନିଜେ ଏକୀଭୂତ ଥିଲେ । ମଣିଷ ସହିତ ତାଙ୍କର ସମ୍ପର୍କ ଖୁବ୍ ନିବିଡ଼ ଆତ୍ମିକ ଓ ଉଦାର ଥିଲା । ସେ ମଣିଷର ଦୁଃଖ ଦୁର୍ଭାଗ୍ୟରେ ସମବ୍ୟଥି ହୋଇ ପଡୁଥିଲେ । ଜଗତରୁ ଦୁଃଖ ଦୂର କରିବା ଦିଗରେ ସେ ନିଜ ଜୀବନକୁ ପାଣି ଚଢ଼ାଇ ଦେଇଥିଲେ । ତାଙ୍କର ଅନ୍ତରରେ ଦୁଇଟି ଆକୂତି ତାଙ୍କୁ ସର୍ବଦା ଅଶ୍ରୁ ଜର୍ଜରିତ କରି ରଖୁଥିଲା । ସେ ବାହାରେ ଦେଖୁଥିଲେ—ତାଙ୍କର ପଡ଼ୋଶୀମାନେ ପାର୍ଥିବ ଦୁଃଖ ଯନ୍ତ୍ରଣା ଓ ଅଜ୍ଞାନ ଦ୍ୱାରା ସନ୍ତାପିତ ହେଉଛନ୍ତି । ପୁଣି ନିଜ ଭିତରେ ଦେଖୁଥିଲେ—ସେ କେତେ ଅପୂର୍ଣ୍ଣ । କେତେ ଅପରିଣତ । କେତେ ସୀମିତ । କେତେ ସଙ୍କୁଚିତ । ତାଙ୍କର ଜୀବାତ୍ମା ନିତ୍ୟ ବିରହ ବିଚ୍ଛେଦର କରୁଣ ଯନ୍ତ୍ରଣା ଭୋଗୁଥିଲା—ପରମାତ୍ମାଙ୍କ ସଙ୍ଗେ ମିଳନ ବିରହିତ ହୋଇ । ସେଥିପାଇଁ ସେ ବାହାରେ ଅଶ୍ରୁ ଝରଉ ଥିଲେ—ଭିତରେ ବି କାନ୍ଦିକାନ୍ଦି ଝୁରି ମରୁଥିଲେ । ସେ ବୁଝିଥିଲେ—ମନୁଷ୍ୟ କି ଶୋଚନୀୟ ଭାବେ ପରାଧୀନ । ତାକୁ ବାହ୍ୟ ପ୍ରକୃତି ଆକ୍ରାନ୍ତ କରୁଛି—ବନ୍ୟା, ମରୁଡ଼ି, ରୋଗ, ଶୋକ, ମୃତ୍ୟୁ ଆଦିରେ । ପୁଣି ଅନ୍ତଃ ପ୍ରକୃତି ଆକ୍ରମଣ କରୁଛି—କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟାଦିରେ । ଏଥିରୁ ସେ ମୁକ୍ତି ପାଇବ କିପରି ? ମୋଟ୍ ଉପରେ ଅହଙ୍କାରର ବନ୍ଧନରୁ ଓ ପ୍ରାକୃତିକ ବନ୍ଧନରୁ ମୁକ୍ତ ମଣିଷ ସମାଜଟିଏ ଗଢ଼ିବା ପାଇଁ ସେ ତାଙ୍କର ସ୍ୱଳ୍ପ ଜୀବନକାଳଟି ସଂଗ୍ରାମ କରି କରି ବିତାଇ ଦେଇ-ଥିଲେ । ସାରା ଜୀବନ ଏହି ସଂଗ୍ରାମ ଯନ୍ତ୍ରଣାରେ ଅଶ୍ରୁ-ତର୍ପଣ କରି ଚାଲିଥିଲେ । ତାଙ୍କପରି ମହାପୁରୁଷ-ମାନଙ୍କର ଏହି ଆତ୍ମ-ମୁକ୍ତିର ପିପାସା ଭିତରୁ ରାଜନୀତିକ ସ୍ୱାଧୀନତା, ସାମାଜିକ ସ୍ୱାଧୀନତା ଏବଂ ଅର୍ଥନୈତିକ ସ୍ୱାଧୀନତା ଆନ୍ଦୋଳନମାନ ଜାତ ହୋଇଛି । ଗୋପବନ୍ଧୁ ମଧ୍ୟ ଏହି ସବୁ ଆନ୍ଦୋଳନର ପୁରୋଧା ଥିଲେ ଓଡ଼ିଶାରେ ।

ଅନୁରକ୍ତମାନେ ଗୋପବନ୍ଧୁଙ୍କୁ କେବଳ "ଉତ୍କଳମଣି" ଉପାଧି ଦେଇ ସନ୍ତୁଷ୍ଟ ବା ଆପ୍ତକାମ ହୋଇ ନାହାଁନ୍ତି—ଅନେକ ତାଙ୍କୁ "ସୀମାନ୍ତ ଗାନ୍ଧୀ" ଭଳି "ଉତ୍କଳ ଗାନ୍ଧୀ" ଉପାଧିରେ ଡାକିବାକୁ ମଧ୍ୟ ସୁଖ ପାଇଛନ୍ତି । ପ୍ରକୃତରେ ଗାନ୍ଧିଜୀଙ୍କର ସମସ୍ତ ମହିମାର ସମ୍ଭାବନା ଗୋପବନ୍ଧୁଙ୍କ ଠାରେ ନିହିତ ଥିଲା । ଗୋପବନ୍ଧୁଙ୍କ ଜୀବନ ଚର୍ଯ୍ୟାର ବହୁ ଅଂଶ ଗାନ୍ଧିଜୀଙ୍କ ଜୀବନ ଚର୍ଯ୍ୟା ସଂଗେ ସଂଗତି ରକ୍ଷା କରିଥିଲା । ଆଉ ତିରିଶ ବର୍ଷ ବଂଚିଥିଲେ ଗୋପବନ୍ଧୁ ମହାପୌରୁଷର ବା ମହାତ୍ମିକତାର କେଉଁ ପର୍ଯ୍ୟାୟ ବା ସ୍ତର ପର୍ଯ୍ୟନ୍ତ ଗତି କରିପାରନ୍ତେ ତାହା କଳନା କରିବା ଆମ୍ଭମାନଙ୍କ ପକ୍ଷରେ ଧୃଷ୍ଟତା ହେବ । ତେବେ ଗାନ୍ଧିଜୀ ଓ ଗୋପବନ୍ଧୁଙ୍କ ମହାନ୍ ବ୍ୟକ୍ତିତ୍ୱ ସମପଦବାଚୀ ହେଲେ ବି କିଂଚିତ୍ ଉପାଦାନଗତ ଭିନ୍ନତା ଦୁହିଁଙ୍କ ବ୍ୟକ୍ତିତ୍ୱ-ସଂଗଠନରୁ ବିଶ୍ଳେଷଣ ପ୍ରକ୍ରିୟାରେ ବାରି ହୋଇପଡ଼େ ।

ମୁଖ୍ୟତଃ ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱରେ ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ଚେତନା ଗୋସ୍ୱାମୀ ତୁଳସୀ ଦାସଙ୍କ "ରାମଚରିତ ମାନସ" ପ୍ରଭାବରେ ପରିସ୍ଫୁଟ ହୋଇ ରହିଛି । ଶ୍ରୀରାମ ଥିଲେ ଗାନ୍ଧିଜୀଙ୍କର ଆଦର୍ଶ । ଆଉ ଶ୍ରୀରାମଚନ୍ଦ୍ର ହେଉଛନ୍ତି—ନୀତି, ନ୍ୟାୟ, ବିବେକ, ବୈରାଗ୍ୟ, ଧୈର୍ଯ୍ୟ, ସ୍ନେହ, ସଂଗ୍ରାମ, ଉଦ୍ୟମ ଓ ସଂଯମର ଅବତାର । ଗାନ୍ଧିଜୀଙ୍କ ଜୀବନରେ ଉଲ୍ଲିଖିତ ଗୁଣଗୁଡ଼ିକ ଦିବ୍ୟଶକ୍ତିରେ ପରିଣତ ହୋଇ ସମାଜ ଚେତନାରେ କାର୍ଯ୍ୟ କରୁଥିଲା । ଆଉ, ଏଣେ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱରେ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଚେତନା ଭକ୍ତକବି ଜଗନ୍ନାଥ ଦାସଙ୍କ "ଭାଗବତ" ଧାରରେ ପରିସ୍ଫୁଟ ହୋଇଥିଲା । ଏକଥା ସର୍ବଜନବିଦିତ ଯେ ଶ୍ରୀକୃଷ୍ଣ ଭକ୍ତମାନେ ବଡ଼ କାନ୍ଦୁରା । କୃଷ୍ଣାନୁରାଗୀମାନଙ୍କର ହୃଦୟ ସର୍ବଦା ଉଦ୍‌ବେଳିତ—ଚକ୍ଷୁ ସର୍ବଦା ଅଶ୍ରୁସଜଳ । ସେମାନଙ୍କ ଚିତ୍ତ ସର୍ବଦା କାରୁଣ୍ୟ ସାଗରରେ ମଗ୍ନ । ଗାନ୍ଧିଜୀଙ୍କର ଦିବ୍ୟ ସ୍ମିତ ହାସ୍ୟ ପଛରେ ସୂକ୍ଷ୍ମଭାବେ ଲୁଚି ରହୁଥିଲା ଗୋଟିଏ ଧୈର୍ଯ୍ୟବନ୍ତ ପରମସହିଷ୍ଣୁ ଗମ୍ଭୀର ବିଷଣ୍ଣତା । ମାତ୍ର ଗୋପବନ୍ଧୁଙ୍କ ମୁହଁରେ ସର୍ବଦା କାରୁଣ୍ୟ ସାଗର-ଉତ୍‌ଥିତ ଏକ ଅଧୈର୍ଯ୍ୟ ଅସହଣୀୟ ବର୍ଷୁକ ମେଘ ଘନୀଭୂତ ହୋଇଥାଏ—ବର୍ଷି ମଧ୍ୟ ଯାଏ ଥାନ କାଳ ନମାନି । ଗାନ୍ଧିଜୀ ଓ ଗୋପବନ୍ଧୁ ଉଭୟେ ଥିଲେ ଭଗବତ୍ ବିଧୁର ବୈଷ୍ଣବ ଏବଂ ଉଭୟେ ଦେଶ ଓ ରାଜ୍ୟର ରାଜନୈତିକ ନେତୃତ୍ୱ ମଧ୍ୟ ନିଜ ମୁଣ୍ଡ ଉପରକୁ ଟେକି ନେଇଥିଲେ ।

ଉଭୟେ ଦେଶବାସୀଙ୍କ ସେବା କରୁ କରୁ ଦେଶବାସୀଙ୍କର ପୂଜାଭାଜନ ହୋଇ ଉଠିଥିଲେ । ସେବା ଭିତରୁ ଉଭୟେ ଦେଶବାସୀଙ୍କ ହୃଦୟରେ ନେତାର ଆସନ ପାଇଥିଲେ ଏବଂ ଉଭୟେ ଥିଲେ ଆଧ୍ୟାତ୍ମିକ ଚେତନା ଓ ଶକ୍ତିରେ ବଳୀୟାନ । ଅହିଂସା, ଅସ୍ତେୟ, ଅପରିଗ୍ରହ ଓ ସତ୍ୟାଗ୍ରହାଦି ସାଧନ କ୍ଷେତ୍ରରେ ଉଭୟେ ଥିଲେ ସିଦ୍ଧ ଓ ସାଧକ ।

ଆଧୁନିକ ବିଶ୍ୱ ଇତିହାସକୁ ପର୍ଯ୍ୟାଲୋଚନା କରି ଭାରତବର୍ଷ ଆଡକୁ ଚାହିଁଲେ ଗୋଟିଏ କଥା ସ୍ପଷ୍ଟ ବାରି ହୋଇପଡେ । ତାହା ହେଉଛି ବିଶ୍ୱରେ ଗତ ଦୁଇଶତ ବର୍ଷ ଭିତରେ ଯେତେ ଯୋଉଁଠି ଯୋଉ ପ୍ରକାର ବିପ୍ଳବମାନ ସଂଘଟିତ ହୋଇଛି—ତାହା ମୂଳରେ ଜଣେ ବା ଦଳେ ରାଜନୀତିକ ବୀର ପୁରୁଷ ଅଛନ୍ତି । ମାତ୍ର ଭାରତବର୍ଷରେ ନବଜାଗରଣ ଆରମ୍ଭ ହେଲା ଦିନୁଁ ଆମେ ଦେଖି ଆସିଛୁ—ସମସ୍ତ ବିପ୍ଳବର ନେତୃତ୍ୱ ନେଇଛନ୍ତି ଜଣେ ବା ଦଳେ ଆଧ୍ୟାତ୍ମିକ ବୀର ପୁରୁଷ । ସ୍ୱାମୀ ଦୟାନନ୍ଦ, ରାଜା ରାମମୋହନଙ୍କ ଠାରୁ ଆରମ୍ଭ କରି ସ୍ୱାମୀ ବିବେକାନନ୍ଦ, ଶ୍ରୀ ଅରବିନ୍ଦ; ତିଳକ, ଗାନ୍ଧିଜୀ, ଏପରିକି ଜବାହରଲାଲ, ଶାସ୍ତ୍ରୀଜୀ, ରାଜଗୋପାଳଚାରୀ, ମଦନ ମୋହନ ମାଳବ୍ୟ ଆଦି ନେତାମାନେ ସମସ୍ତେ ପରୋକ୍ଷ ବା ପ୍ରତ୍ୟକ୍ଷରେ ଧାର୍ମିକ ପୁରୁଷ । ସେମାନେ ସମସ୍ତେ ଈଶ୍ୱର ପରାୟଣ । ଜୀବକୁ ଶିବ ଜ୍ଞାନରେ ସେବା କରୁ କରୁ ସେମାନେ ରାଜନୀତି, ଅର୍ଥନୀତି ଓ ସମାଜନୀତି ଭିତରକୁ ଟାଣି ହୋଇ ଯାଇଛନ୍ତି । ଗୋପବନ୍ଧୁ ଥିଲେ ସେହି ମାର୍ଗରେ ନେତା । ତାଙ୍କର ନେତୃତ୍ୱ ଥିଲା ଜଣେ ଈଶ୍ୱର ଭକ୍ତ ସମାଜ ସେବକର ନେତୃତ୍ୱ । ସେଇଥି ପାଇଁ ସେ ଆଜି ପର୍ଯ୍ୟନ୍ତ ଓ ଅନନ୍ତ କାଳ ପର୍ଯ୍ୟନ୍ତ ଓଡ଼ିଶାବାସୀଙ୍କ ହୃଦୟରେ ଏକ ଜାଜ୍ୱଲ୍ୟମାନ ମଶାଲ ହୋଇ ଏ ଜାତିକୁ ଆଲୋକିତ ପଥ ଦର୍ଶାଇ ଚାଲିଥିବେ । ସେ ଏ ଦିଗରେ ଅନୁପମ । ତାଙ୍କର ଉପମା ସେ ନିଜେ । ଆମ ହୃଦୟରେ ସେ ଆଉ ବ୍ୟକ୍ତିଟିଏ ରୂପରେ ଅଧିଷ୍ଠାନ କରୁ ନାହାନ୍ତି । ଆମର ଜାତୀୟ ଆଦର୍ଶ, ସ୍ୱପ୍ନ, ଲକ୍ଷ୍ୟ, ଚର୍ଯ୍ୟା ଓ ବିଭୂତି ରୂପେ ଆମେ ତାଙ୍କର ଏକ ସ୍ୱର୍ଣ୍ଣଦୀପ୍ତ ମନ୍ମୟ ପ୍ରତୀକ ଆମର ଜାତୀୟ ଚିତ୍ତରେ ସ୍ଥାପନ ଓ ସଂସ୍ଥାପନ କରି ସାରିଛୁ । ସେହି ପ୍ରତୀକଟିକୁ ଅମ୍ଳାନ ରଖିବା ଲାଗି ଆମର ପ୍ରାଣାନ୍ତକ ଚେଷ୍ଟା ଚାଲିଥିବ । କାରଣ ଯଦି କୌଣସି କାରଣରୁ ତାର ସ୍ୱର୍ଣ୍ଣଦୀପ୍ତ ମହିମା ଆମର ଅଜ୍ଞାନ ଓ ଅକର୍ମର ଧୂଳି ଧୂଆଁର ଆସ୍ତରଣରେ ଆବୋରିତ ହୋଇଯାଏ—ତେବେ ସମଗ୍ର ଓଡ଼ିଆ ଜାତିର ଚରିତ୍ର ମ୍ଳାନ ହୋଇଯିବ ଏବଂ ସମଗ୍ର ଜାତି ଏକ ସୂର୍ଯ୍ୟହୀନ ତମସାଲୋକର ପାତାଳପୁରକୁ ଅଜାଣତ ଅନ୍ଧତାରେ ଆକର୍ଷିତ ହୋଇ ଗତି ଚାଲିଯିବ ।

ଓଡ଼ିଶାରେ ଆଜିପର୍ଯ୍ୟନ୍ତ ଦୁଇଟି ବିଶିଷ୍ଟ ମହାପୁରୁଷ ଆମର ପ୍ରାତଃ ସ୍ମରଣୀୟ ହେବାର ଯୋଗ୍ୟସ୍ଥାନ ଅଧିକାର କରି ରହିଛନ୍ତି । ଉତ୍କଳ ଗୌରବ ମଧୁସୂଦନ ଓ ଉତ୍କଳମଣି ଗୋପବନ୍ଧୁ ଏମାନେ ଓଡ଼ିଆ ଜାତିର ଉଦ୍ଧାର କର୍ତ୍ତା ଓଡ଼ିଆ ଜାତିର ନିର୍ମାତା ଓ ଜାତୀୟ ଆଦର୍ଶର ପ୍ରତୀକ । ଏମାନଙ୍କ ମଧ୍ୟରୁ ଜଣେ ଜାତିର ଶୁଦ୍ଧ ବୁଦ୍ଧିର ପ୍ରତୀକ ଓ ଅନ୍ୟ ଜଣକ ଶୁଦ୍ଧ ହୃଦୟର ପ୍ରତୀକ । ଉଭୟେ ମିଶି ଓଡ଼ିଆ ଜାତିର ଅମୃ-ଭୂତିର ପ୍ରତୀକ ।

ଗାନ୍ଧିଜୀଙ୍କ ଭଳି ମହାତ୍ମା ପୃଥିବୀରେ ଯତ୍ରତତ୍ର ବା ଜନ୍ମାନ୍ତଜନ୍ମାନ୍ କାଳେ ଜନ୍ମ ହୋଇ ପଡନ୍ତି ନାହିଁ । ସମଗ୍ର ମାନବ ଜାତିର ଯୁଗ ଯୁଗ ଆକୁତି ଅଭୀପ୍ସାର ଗର୍ଭଭିତରୁ ମାନବ ଭାଗ୍ୟବିଧାତାର ପରମ ଆଶୀର୍ବାଦ ଫଳରେ ସେହି ମହାପୁରୁଷମାନେ ଆମଭଳି ହତଭାଗ୍ୟ, ହତବୁଦ୍ଧି ହତକର୍ମା ମଣିଷମାନଙ୍କ ଭିତରେ ଆବିର୍ଭୂତ ହୋଇ ସମଗ୍ର ମାନବଜାତିକୁ ଊର୍ଦ୍ଧ୍ୱମୁଖୀ, ଊର୍ଦ୍ଧ୍ୱଶିର ଓ ଊର୍ଦ୍ଧ୍ୱଚେତନ କରିଦିଅନ୍ତି । ଅନ୍ୟାର୍ଥେ ମାନବୀୟ ସ୍ୱଗ୍ୟସୀମାକୁ ଅତିକ୍ରମ କରି ସେମାନେ ଆମ ଭିତରର ପ୍ରସୁପ୍ତ ଅଦ୍ଭୁତ ଦିବ୍ୟ ସମ୍ଭାବନାଗୁଡିକୁ ଜାଗ୍ରତ କରି ଦେଇଯାନ୍ତି । ଭାରତବର୍ଷର ସୌଭାଗ୍ୟ ସେ ଗାନ୍ଧୀଜୀଙ୍କୁ ତାର ଭବିଷ୍ୟତ ପଥ ପ୍ରଦର୍ଶକରୂପେ ପାଇଛି । ଆମେ ଆମର ଜୀବନକାଳ ଭିତରେ ଦ୍ୱିତୀୟ ଗାନ୍ଧୀ ଦେଖି ପାରିବୁ ନାହିଁ । କିନ୍ତୁ ଗାନ୍ଧିଜୀଙ୍କ ଅନୁରକ୍ତ ଶିଷ୍ୟରୂପେ ଆମେ ଦେଖିନ୍ତୁ ଜବାହର ନେହେରୁଙ୍କୁ, ଶାସ୍ତ୍ରୀଜୀଙ୍କୁ; ରାଜଗୋପାଳ-

ପାରୀଙ୍କୁ । ଆମେ ଗୋଟିଏ କଥା ଧ୍ରୁବ ଜାଣିଛୁ, ସ୍ୱାମୀ ବିବେକାନନ୍ଦ, ଶ୍ରୀ ଅରବିନ୍ଦ ଓ ଗାନ୍ଧିଜୀଙ୍କ ଧାରାରେ ଆଦୌ ନ ଚାଲିପାରୁଥିବା ବ୍ୟକ୍ତି କେବେ ଭାରତବର୍ଷର ଯଥାର୍ଥ ନେତୃତ୍ୱ ନେଇ ପାରିବ ନାହିଁ । ସେମିତି ଆମ ଓଡ଼ିଶାରେ ଗୋପବନ୍ଧୁଙ୍କ ପନ୍ଥାନୁସରଣ ନ କରି ପାରିଲେ କେହି ଓଡ଼ିଆ ଜାତିର ସର୍ବପ୍ରିୟ ସର୍ବମାନ୍ୟ ନେତା ହୋଇ ପାରିବେ ନାହିଁ । କଳେ ବଳେ କୌଶଳେ ଭୋଟ ଯୋଗାଡ଼ କରି, କିମ୍ବା କଳ କାରଖାନା ମେଲିଦେଇ, କିମ୍ବା ଦୃପ୍ତ ବିକ୍ରମରେ ଓଡିଶା ରାଜକୋଷକୁ ଶୂନ୍ୟକରି ଦାନ ଖଇରାତର ଦୁଆ ଦେଖାଇ, ମହା ଆଟୋପରେ ପଟୁଆର କରି ବଂବାଜୀ ଫୁଟାଇ ବା ହାବେଲିମାରି ରାଜ୍ୟବାସୀଙ୍କ କାନ ଫଟେଇ ଆଖି ଝଲସାଇ କେହି ଓଡିଆ ଜାତିର ହୃଦୟ ସିଂହାସନରେ ବସି ପାରେନା । ଭୁବନେଶ୍ୱରର ରାଜ ସିଂହାସନ ସଙ୍ଗେ ଓଡ଼ିଆ ଜାତିର ହୃଦୟ ସିଂହାସନକୁ ମଧ୍ୟ ଯେ ଜୟ କରିବ, ସେଇ ହେବ ଏ ଜାତିର ଯଥାର୍ଥ ନେତା ।

ଗାନ୍ଧିଜୀ ଯେପରି ଭାରତବର୍ଷର ପିତା ସ୍ୱରୂପ ହୋଇ ରହିଛନ୍ତି, ଗୋପବନ୍ଧୁ ସେହିପରି ଓଡ଼ିଶାର ମାତା ସ୍ୱରୂପା ହୋଇ ରହିଛନ୍ତି । ମାଆଟିଏ ଭଳି ସେ ଏ ଜାତିକୁ କୋଳେଇ କାଖେଇ କୁଣ୍ଢେଇ ଧରିଛନ୍ତି । ମାଆଟିଏ ଭଳି ତାଙ୍କର ହୃଦୟ ଥିଲା ଏ ଜାତିପ୍ରତି ସର୍ବଦା ସଂତ୍ରସ୍ତ, ସଶଙ୍କ, ସକରୁଣ, ଉଦ୍‌ବିଗ୍ନ, ଉଦ୍‌ବେଳ ଓ ସ୍ନେହସ୍ରାବୀ । ମାଆଟିଏ ଭଳି ଜାତିର ମୁହଁକୁ ଚାହିଁ ସେ କାନ୍ଦୁଥିଲେ । ସତେ ଏ ଜାତି ବଂଚିବ । ଏତେବଡ଼ ବଳପୂର୍ବା ଉଦ୍‌ବାର୍ଯ୍ୟା ପୃଥୀବିରେ ଆପଣା ଶକ୍ତିରେ ତିଷ୍ଠି ରହିବ । ସତରେ ଏ ଜାତି ବଡ଼ ହେବ । ଆପଣା ଗୁଣ ବିକାଶିବ । ପିତୃ ପୁରୁଷର ମହତ୍ତ୍ୱକୁ ବଂଚେଇ ରଖିବ । ପୁଣି ନିଜର ପାରିଲା ପଣରେ ଆସ୍ଥା ନ ରଖି ସେ ଓଡ଼ିଶାର ମହାପ୍ରଭୁ ଯେ ଶ୍ରୀ ଜଗନ୍ନାଥ, ତାଙ୍କରି ପାଖେ ଏ ଜାତିକୁ ସମର୍ପି ଦେଇଥିଲେ । ନିଇତି ତୁଳସୀ ଚଉରାମୂଳେ ସଂଜ ଦେଇ ମୁଣ୍ଡିଆ ମାରି ମାଆଟିଏ ସନ୍ତାନ ପାଇଁ ଅଶ୍ରୁ ଗଦ୍ ଗଦ୍ କଣ୍ଠରେ ଶୁଭ ମନାସିଲା ଭଳି ସେ ଶ୍ରୀ ଜଗନ୍ନାଥଙ୍କ ପାଖେ ଏ ଜାତିପାଇଁ ଶୁଭ ମନାସୁଥିଲେ । ତାଙ୍କ ଆଖିର ଲୁହରେ ବାଇଶି ପାହାଚ ଉବୁ ଟୁବୁ ହେଉଥିଲା । ରତ୍ନ ସିଂହାସନ ଜଳଶାୟୀ ହେଉଥିଲା । ବଡ଼ ଦେଉଳରେ ନୀଳଚକ୍ରର ପଥର ଥରି ଉଠୁଥିଲା ।

ଓଡ଼ିଆ ଜାତିର ସୌଭାଗ୍ୟ ଯେ ଆପଣାର ନେତାରୂପେ ପାଇଥିଲା ଚିରନ୍ତନ ମାତୃ ହୃଦୟର ଅଧିକାରୀ ମହାତ୍ମାଟିଏ, ସେଇ ହେଉଛନ୍ତି ଗୋପବନ୍ଧୁ ଦାସ । ଯେ ତାଙ୍କରି ଭଳି ମାଆଟିଏ ହୋଇପାରିବ, ଏ ଜାତି ତାଙ୍କୁଇ ପରମ ନିର୍ଭରତା ଓ କୃତଜ୍ଞତାରେ ଜାବୁଡ଼ି ଧରିବ । ମାଆ ଭଳି ନମ୍ରା, ବିନତା, ଅଶେଷ ଧୈର୍ଯ୍ୟ ପରାୟଣା, ବିଷଦ୍ ହୃଦୟା, କରୁଣାବତୀ, ଅଶ୍ରୁମୁଖୀ ଭରସାଦାୟିନୀ ହୃଦୟ ହେଉଛି ଗୋପବନ୍ଧୁ ହୃଦୟ । ସେ ହୃଦୟ ଯେଉଁଠି ଯେମିତି, ଯେତିକି ପରିମାଣରେ ପ୍ରତିଭାତ ହେଉପଛେ ଆମେ ତାରି ଜୟଗାନ କରିବୁ । ତାକୁଇ ଆମର ହୃଦ ସିଂହାସନ ଓ ରାଜ ସିଂହାସନ ଛାଡିଦେବୁ । କାରଣ ସେଇ କେବଳ ଆମକୁ ତୁଷ୍ଟ କରିବ, ପୁଷ୍ଟ କରିବ ଆଉ ଯଥାର୍ଥ ବିକାଶ ପଥରେ ଚଳେଇ ନେବ ।

ଓଡ଼ିଆ ଜାତି ଆଗରେ ଦୁଇଜଣ ଆଦର୍ଶ ପୁରୁଷ ସମାନ ଉଜ୍ଜଳତାରେ ଠିଆ ହୋଇ ରହିଛନ୍ତି । ଉତ୍କଳ ଗୌରବ ମଧୁସୂଦନ ଆଉ ଉତ୍କଳମଣି ଗୋପବନ୍ଧୁଙ୍କ ଚିର ଅମ୍ଳାନ ଦୁଇଟି ପ୍ରଜ୍ୱଳନ୍ତ ତିମିର ବିଧ୍ୱଂସୀ ତାରକା । ଗୋଟିଏ ରାତ୍ରର ଅନ୍ଧକାର ଦୂରହେଲା ବୋଲି ଘୋଷଣା କରି ପୂର୍ବାକାଶରେ ନବ ଜାଗରଣ-ଶଂସୀ ଉଷା ଦେବୀଙ୍କର ବନ୍ଦାପନାକରି ଜଳିଉଠେ ଶୁକ୍ର ତାରକା । ଆଉ ଗୋଟିଏ ଉତ୍କଳାକାଶର ଦିଗ ବାରଣ ଖମ୍ବ ଉପରେ ଜଳିଉଠେ ଧ୍ରୁବତାରା ରୂପେ ଏ ଜାତିକୁ ଯଥାର୍ଥ ଦିଗ ନିର୍ଦ୍ଦେଶ ଦେବାଲାଗି । ଉତ୍କଳ ଗୌରବ ଆମକୁ ଦେଇଛନ୍ତି ଏକ ଜାତୀୟ ଗୌରବବୋଧର ଶୁଭ ଦୃପ୍ତ ଆତ୍ମାଭିମାନ । ଉତ୍କଳମଣି ଆମକୁ ଦେଇ ଯାଇଛନ୍ତି ଏକ ଜାତୀୟ ମମତ୍ୱବୋଧର ଶୁଭନମ୍ର ଆତ୍ମୋପଲବ୍ଧି । ଉତ୍କଳ ଗୌରବଙ୍କ ମହିମା

ଭିତରେ ଫୁଟି ଉଠିଥିଲା ଓଡ଼ିଆ ଜାତିର ଐଶ୍ୱର୍ଯ୍ୟମୟ ବିଭୂତି । ଉତ୍କଳମଣିଙ୍କ ମହିମା ଭିତରେ ଫୁଟିଉଠିଛି ଏ ଜାତିର ମାଧୁର୍ଯ୍ୟମୟୀ ଆକୃତି । ଏ ଦୁଇଟିଯାକ ବିଗ୍ରହ ଭିତରେ ଗୋଟିଏ ସତ୍ୟର ଦୁଇଟି ରୂପ ପ୍ରତିଭାତ । ତାହା ହେଉଛି ଓଡ଼ିଆ ଜାତିର ବୈପ୍ଳବିକ ବିଭବ ।

ତେଣୁ ଆଜି ପୁଣ୍ୟଶ୍ଳୋକ ଉତ୍କଳମଣି ଗୋପବନ୍ଧୁଙ୍କ ଶତବାର୍ଷିକୀ ଅବକାଶରେ ଆମେ ସେହି ମହାନ୍ ପୁରୁଷଙ୍କ ନିକଟରେ ପ୍ରୀତି ଓ କୃତଜ୍ଞତାରେ ଅବନତ ହେଲାବେଳେ ସ୍ୱତଃ ଆମର ଚିତ୍ତାକାଶରେ ସେହି ପ୍ରାତଃ ସ୍ମରଣୀୟ ଉତ୍କଳ ଗୌରବର ସୂର୍ଯ୍ୟ ଉଦିତ ହୋଇ ଯାଉଛନ୍ତି । ତାଙ୍କୁବି ଆମେ ପରମଭକ୍ତିରେ ନମସ୍କାର ଅର୍ପଣ କରୁନ୍ତୁ । କାରଣ "ଜଣେତ ଦିନର ସାଥୀ—ଆରେକ ରାତିର—ଦୁହେଁଯାକ ସୂର୍ଯ୍ୟ ଚନ୍ଦ୍ର ଏ ମହାଜାତିର" ।



ଜାତିର ପିନ୍ଧା ଜାପୁଷ୍ଟ ପଣ
ପଞ୍ଚ ଦୃଷ୍ଟା ନାହିଁ ବୀରର ଜାତକେ
ବୀର ମାରେ, ଅବା ମରେ କରି ରଣ ।
ନ ମରେ ସେ କେବେଁ ପରାଣ ଆତଙ୍କେ ।

× × ×

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
ସ୍ୱାଧୀନତା-ପଥେ ଚାଲେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।

ଉତ୍କଳ ନିବାସୀ ଏ ଦଶା ଦେଖିଣ
ନିରାଶରେ ବଳ କର ନାହେଁ କ୍ଷୀଣ ।
କର ନା ଭାବନା କାହାର ବଚନେ
ଚାଲିବ ସ୍ୱରାଜ୍ୟ-ବୋଇତ କେସନେ ?
ନ ଅଟକେ କର୍ମ ନେତାର ଅଭାବେ
ଧର୍ମ ନାବ ଚଲେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।

× × ×

ଏବେ ନୀଳାଚଳେ ବିଜେ ଜଗନ୍ନାଥ
ତେବେ କିଂପା କହ ଉତ୍କଳ ଅନାଥ ?
ନାହିଁ ପୂର୍ବବଳ, ନାହିଁ ପୂର୍ବ ଧର୍ମ
ନାହିଁ ପୂର୍ବ ସତ୍ୟ, ନାହିଁ ପୂର୍ବ କର୍ମ ।
ଉତ୍କଳବାସୀର ଦେଖି ଏ ଦୁର୍ଗତି
ଦାରୁଭୂତ କହେ ନୀଳାଚଳପତି ?

—ଗୋପବନ୍ଧୁ




ସ୍ୱର୍ଗତ ମାୟାଧର ମାନସିଂହ

ଜଗନ୍ନାଥର ସିଂହ ଦୁଆରେ
କିଏ ଅଛି ପ୍ରତିହାରୀ
ପଥ ଛାଡ଼ିଦିଅ ଯାଉଛି ଦେବତା
ଶ୍ରେଷ୍ଠ ସେ ପୂଜାହାରୀ ।

ଗରୁଡ଼ର ପଛେ କେ ଅଛି ଭକ୍ତ
ଆଡ଼ ହୋଇଯାଅ ଭାଇ
ଭକ୍ତର ରଜା ଆସୁଅଛି ପର
ଦେବତା ପୂଜିବା ପାଇଁ ।

ଧାର୍ମିକ ସବୁ ନିଜ ସୁଖ ଲାଗି
ଦେବତାରେ ଅଛି ମାଗି
ପରସୁଖ ପାଇଁ ସେ ଡାକୁଛି ତାର
ଦେବତା ରହି ଜାଗି ।

ଭାଇ ପଡ଼ୋଶୀରେ ମମତା ଦେଇ ସେ,
ପୂଜିଲା ତା ଭଗବାନ
ଦେଢ଼କୋଟି ନର ମଙ୍ଗଳ ଲାଗି
ପୂଜୁଛି ତା ନାରାୟଣ ।

ବାଟ ଗ୍ରୁଡ଼ ତାଙ୍କୁ ଦେବତାର ପଦେ
ଯାହୁ ତା ଅସ୍ଥି ମିଶି
ବହୁଦେବଙ୍କୁ ଦେଖି ସେ ତାହାର
ଜାତି ଛଳ ଦବାନଶି ।

ସେହୁ ଦେବତାଙ୍କୁ ଅଶେଷ ତାହାର
ଅମୃତଧାମ ଘର
ବନ୍ଧୁଯିବ ତାହା ଉତ୍କଳ ଜନେ
ନେବେ ଅଞ୍ଜଳି ଭରି ।

ପତିତପାବନ ବାନା ଫୁଟିଗ ଫୁଟିଗ
ଶରଣ ଉତ୍କଳର
ସେହୁ ବାନାତଳେ ଉତ୍କଳମଣି
ଜଳୁଥାଉ ସ୍ୱପ୍ନର ।

ପତିତପାବନ-ଦର୍ଶନବେଳେ
ନଶ୍ୱିଳ ଓଡ଼ିଆ ଜାତି
ବାଇଣି ଯାହାଟେ ପାଇବେ ପତିତ-
ବନ୍ଧୁ ଚରଣ ମାଟି ।

( 'ଗୋପ-ପ୍ରସ୍ଥାଣେ' କବିତାରୁ )

---

## ୧୭,୫୫୦ ଜଣଙ୍କୁ ବାର୍ଦ୍ଧକ୍ୟ ଭତ୍ତା ଦିଆଗଲାଣି

ବାର୍ଦ୍ଧକ୍ୟ ଭତ୍ତା ଯୋଜନା କାର୍ଯ୍ୟକାରୀ ହେବା ପରଠାରୁ ଗତ ଜୁଲାଇ ମାସ ଶେଷ ସୁଦ୍ଧା ରାଜ୍ୟରେ ସମୁଦାୟ ୧୭ ହଜାର ୫୫୦ ଜଣ ନିଃସହାୟ ଓ ଜରାଗ୍ରସ୍ତ ବ୍ୟକ୍ତିଙ୍କୁ ବାର୍ଦ୍ଧକ୍ୟ ଭତ୍ତା ଦିଆଯାଇଛି । ଏମାନଙ୍କ ମଧ୍ୟରେ ବାଲେଶ୍ୱର ଜିଲ୍ଲାର ୧,୭୪୫ ଜଣ, ବଲାଙ୍ଗିରର ୯୫୧ ଜଣ, ଫୁଲବାଣୀର ୫୯୧ ଜଣ, କଟକର ୩୨୫୪ ଜଣ, ଢେଙ୍କାନାଳର ୧,୫୦୧ ଜଣ, ଗଞ୍ଜାମର ୭୬୨ ଜଣ, କଳାହାଣ୍ଡିର ୯୦୩ ଜଣ, କେଉଁଝରର ୯୬୧ ଜଣ, କୋରାପୁଟର ୨,୩୧୯ ଜଣ, ମୟୂରଭଞ୍ଜର ୮୭୪ ଜଣ, ପୁରୀର ୨,୨୮୩ ଜଣ, ସମ୍ବଲପୁରର ୮୮୩ ଜଣ ଓ ସୁନ୍ଦରଗଡ଼ର ୭୨୩ ଜଣ ବ୍ୟକ୍ତି ଅନ୍ତର୍ଭୁକ୍ତ ।

ଏ ବାବଦରେ ୧୯୭୫-୭୬ରେ ୧୪ ଲକ୍ଷ ୫୦ ହଜାର ଟଙ୍କା ମଞ୍ଜୁର କରାଯାଇଥିବା ସ୍ଥଳେ ଚଳିତ ଆର୍ଥିକ ବର୍ଷରେ ୩୦ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି ।

---

# ଉତ୍କଳ ଗୌରବ ଓ ଉତ୍କଳମଣି

ଶ୍ରୀ ଆର୍. ପି. ଶାସ୍ତ୍ରୀ

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ —ମୁଣ୍ଡକ ଉପନିଷଦ ।

ଦୁଇଟି ପକ୍ଷୀ ପରସ୍ପର ବନ୍ଧୁ ଓ ସଖା ଭାବରେ ଗୋଟିଏ ବୃକ୍ଷରେ ବାସ କରି ରହିଛନ୍ତି ।

ଉତ୍କଳ ଗୌରବ ମଧୁସୂଦନ ଓ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଓଡ଼ିଶାର ରାଜନୈତିକ ଓ ସାମାଜିକ ଇତିହାସରେ ଉଭୟେ ଅତୁଳନୀୟ ସ୍ଥାନର ଅଧିକାରୀ । ଉତ୍କଳ ଗୌରବ ମଧୁସୂଦନ ବିଗତ ଶତାବ୍ଦୀର ଶେଷଭାଗଠାରୁ ଆରମ୍ଭ କରି ଏହି ଶତାବ୍ଦୀର ତୃତୀୟ ଦଶକ ପର୍ଯ୍ୟନ୍ତ ଓଡ଼ିଶାରେ ଶିକ୍ଷା, ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଅର୍ଥନୈତିକ ପ୍ରଗତିସାଧନ ପାଇଁ ଏବଂ ବିଶେଷତଃ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସଂମିଶ୍ରଣ ଦ୍ୱାରା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ବିଭିନ୍ନ ପାହ୍ୟାର ବ୍ରିଟିଶ ଶାସନକର୍ତ୍ତାମାନଙ୍କଠାରୁ ଆରମ୍ଭକରି ରାଜା, ମହାରାଜା, ଜମିଦାର, ମହନ୍ତ, ପ୍ରଜା, ଚାଷୀ, ମୂଲିଆ, ରାଜନୈତିକ ନେତା, କର୍ମୀ ସମସ୍ତଙ୍କ ସହିତ ସହଯୋଗ ସ୍ଥାପନ କରି ଗୋଟିଏ ମୁମୂର୍ଷୁ ଜାତି ପ୍ରାଣରେ ମୃତ ସଂଜୀବନୀ ସଞ୍ଚାର କରିଥିଲେ । ତାଙ୍କ ପ୍ରେରଣାରେ ମୟୂରଭଞ୍ଜର ମହାରାଜା ଉତ୍କଳ ସମ୍ମିଳନୀର ପୃଷ୍ଠପୋଷକତା କରିଥିଲେ ଏବଂ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ଲଣ୍ଡନ ଗୋଲ୍‌ଟେବୁଲ ବୈଠକକୁ ଯାଇ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଓଡ଼ିଆମାନଙ୍କ ଦାବୀ ଉପସ୍ଥାପନ କରି ସଫଳତା ଲାଭ କରିଥିଲେ । ସେ ଜଣେ ରାଜା ଭଳି ରୋଜଗାର କରିଥିଲେ, ରାଜକୀୟ ଆଡ଼ମ୍ବରରେ ଚଳୁଥିଲେ ଏବଂ ରାଜାମାନଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଥିଲା । ସେ ଓଡ଼ିଶାର ମୁକୁଟବିହୀନ ସମ୍ରାଟ ରୂପେ ପରିଚିତ ଥିଲେ ।

## ଏକ ଶୁଭଲଗ୍ନ

୧୮୪୮ରେ ମଧୁସୂଦନ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ଏକ କ୍ଷୁଦ୍ର ଜମିଦାର ପରିବାରରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ସେ ଜନ୍ମଭୂମି ଓ ଓଡ଼ିଆ ଜାତିର ସେବାରେ

ଅଗ୍ରେ ଗ୍ରହଣ କରିଥିଲେ । ବ୍ୟକ୍ତିଗତ ଜୀବନରେ ସେ ଧନପ୍ରତି ଅନାସକ୍ତ ଭାବ ପ୍ରଦର୍ଶନ କରିଥିବାର ବହୁ ଘଟଣା ରହିଛି; କିନ୍ତୁ ଭୋଗ, ବିଳାସ ଓ ରାଜକୀୟ ଆଡ଼ମ୍ବରପୂର୍ଣ୍ଣ ପରିବେଶ ମଧ୍ୟରେ ଚଳିବା ତାଙ୍କ ପକ୍ଷରେ ହୁଏ ତ ସେ ସମୟରେ ଅପରିହାର୍ଯ୍ୟ ହୋଇ ପଡ଼ିଥିଲା । କାରଣ ବହୁ ରାଜା, ମହାରାଜା, ଜମିଦାର, ଆଇନଜୀବୀ ମଧୁସୂଦନଙ୍କ ମହକିଲ ଭାବରେ ତାଙ୍କ ନିକଟକୁ ଆସି ତାଙ୍କର ଶରଣାପନ୍ନ ହେଉଥିଲେ ଏବଂ ସେମାନଙ୍କଠାରୁ ସେ ଯଥେଷ୍ଟ ଧନ ଲାଭ କରି ଓଡ଼ିଆଜାତିର ସେବାରେ ବ୍ୟସ୍ତ କରୁଥିଲେ ।

## ଧର୍ମ-ସହିଷ୍ଣୁତା

ତାଙ୍କ ଜୀବନର ବହୁ ଘଟଣା ମଧ୍ୟରୁ ପୁରୀ ଜଗନ୍ନାଥ ମନ୍ଦିର ଲାଗି ପୁରୀ ମହାରାଣୀଙ୍କ ପାଇଁ ସେ ଯେଉଁ ମକଦ୍ଦମା ଲଢ଼ି ଯେପରି ଭାବରେ କୃତକାର୍ଯ୍ୟ ହୋଇଥିଲେ, ତାହା ଇତିହାସରେ ଉଲ୍ଲେଖନୀୟ ଘଟଣା ହୋଇ ରହିଛି ଓ ରହିଥିବ ।

ମଧୁବାବୁ ଖ୍ରୀଷ୍ଟଧର୍ମ ଗ୍ରହଣ କରି ଖ୍ରୀଷ୍ଟ ସଂପ୍ରଦାୟରେ ସମ୍ମାନିତ ସ୍ଥାନର ଅଧିକାରୀ ହୋଇଥିଲେ ମଧ୍ୟ ହିନ୍ଦୁଧର୍ମ ଓ ହିନ୍ଦୁ ଧର୍ମାନୁଷ୍ଠାନ ପ୍ରତି ତାଙ୍କର ଯଥେଷ୍ଟ ସମ୍ମାନ ଓ ସଦ୍‌ଭାବ ଥିଲା ।

## ପୁରୀ ମନ୍ଦିର ମକଦ୍ଦମା

ପୁରୀର ରାଜା ଶ୍ରୀ ଦିବ୍ୟସିଂହ ଦେବଙ୍କୁ ଏକ ହତ୍ୟା ମକଦ୍ଦମାରେ ଦ୍ୱୀପାନ୍ତର ଦଣ୍ଡାଦେଶ ହେବାର କେତେବର୍ଷ ପରେ ତଦାନୀନ୍ତନ ବ୍ରିଟିଶ ସରକାର ରାଜାଙ୍କଠାରୁ ପୁରୀ ମନ୍ଦିରର ପରିଚାଳନା ଦାୟିତ୍ୱ ଓ ମନ୍ଦିରର ଦଖଲ ନେବା ପାଇଁ ୧୮୮୫ରେ ଏକ ଦେବାନୀ ମକଦ୍ଦମା କଲେ । ଦିବ୍ୟସିଂହ ଦେବଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିବା ତାଙ୍କର ମାତା ପୁରୀ ରାଜାଙ୍କ ବିଧବା ରାଣୀ ସୂର୍ଯ୍ୟମଣି ପାଟ ମହାଦେଈ ଦିବ୍ୟସିଂହ ଦେବଙ୍କ ନାବାଳକପୁତ୍ର ରାଜକୁମାର ମୁକୁନ୍ଦ ଦେବଙ୍କ ଅଭିଭାବକ ଭାବରେ ସରକାରଙ୍କ ଏହି ମକଦ୍ଦମାର ବିରୋଧ କରିଥିଲେ । ମଧୁବାବୁ ରାଣୀଙ୍କ ତରଫରୁ ମକଦ୍ଦମା ଲଢ଼ୁଥିଲେ । କିନ୍ତୁ ନିମ୍ନ ଅଦାଲତ ସରକାରଙ୍କ ସପକ୍ଷରେ ଡିକ୍ରୀ ଦେଲେ । ଏହା ପରେ ଶ୍ରୀ ମନ୍ଦିରର ସଂପତ୍ତି ଓ ପରିଚାଳନାର ଦାୟିତ୍ୱ ନେବା ପାଇଁ ଜିଲ୍ଲା ଜଜ୍ ଜଣେ ରିସିଭର ନିଯୁକ୍ତ କରିଥିଲେ । ଏହା ମଧ୍ୟରେ ପରେ ମିଃ ଦାସ ଅଟନିଙ୍କ ପରାମର୍ଶ କରିବା ପାଇଁ କଲିକତା ଗଲେ । ସେଠାରେ ସେ ବିଶିଷ୍ଟ ଆଇନଜ୍ଞ ଗୁରୁଦାସ ବାନାର୍ଜି, ହିଙ୍ଗରଫ ଓ ଇଭାନ୍‌ସଙ୍କ ସହିତ ପରାମର୍ଶ କଲେ । କିନ୍ତୁ ଏହି ତିନିଜଣ ଯାକ ବିଶିଷ୍ଟ ଆଇନଜ୍ଞ ଏହି ମକଦ୍ଦମା ଜୟ ହେବାର ସମ୍ଭାବନା ନାହିଁ ବୋଲି ମତ ଦେଇଥିଲେ ।

ଏହାପରେ ମଧୁବାବୁ ନିଜର ବିଦ୍ୟାବୁଦ୍ଧି ଓ ଅଭିଜ୍ଞତାକୁ ଲଗାଇ ଏହି ମକଦ୍ଦମାର ଏକ ପୂର୍ଣ୍ଣାଙ୍ଗ ବିବରଣୀ ଦେଇ ଅପିଲ ପ୍ରସ୍ତୁତ କଲେ । ସେ ସବୁ ନିଜ ଖର୍ଚ୍ଚରେ ଛପାଇ କଲିକତାର ଅନ୍ୟ ଜଣେ ବାରିଷ୍ଟରଙ୍କ ସାହାଯ୍ୟରେ ଅପିଲ ଦାଏର କଲେ । ହାଇକୋର୍ଟରେ ଅପିଲର ଶୁଣାଣି ଚାଲିଲା । ଶୁଣାଣିଦିନ କୋର୍ଟ କୋଠରୀରେ ଲୋକ ଭରପୂର ହୋଇ ରହିଥିଲେ । କାରଣ ହିନ୍ଦୁଜଗତର ପ୍ରଧାନ ପୀଠ ବଡ଼ଦେଉଳ ପାଇଁ ଜଣେ ଖ୍ରୀଷ୍ଟିଆନଙ୍କ ଦ୍ୱାରା ପ୍ରସ୍ତୁତ ଅପିଲ ମକଦ୍ଦମାର ଶୁଣାଣି ହାଇକୋର୍ଟରେ ଚାଲିଥିବା ଯୋଗୁଁ ମକଦ୍ଦମାର ବିଚାର ଶୁଣିବା ପାଇଁ ଲୋକଙ୍କ ମନରେ ବିଶେଷ କୌତୂହଳ ଓ ଆଗ୍ରହ ସୃଷ୍ଟି ହୋଇଥିଲା । ଉକ୍ତ ମକଦ୍ଦମାକୁ ଏକ ବଡ଼ ଧରଣର ମକଦ୍ଦମା ରୂପେ ଗ୍ରହଣ କରି ହାଇକୋର୍ଟ ଏହାର ଶୁଣାଣି ପାଇଁ ତିନିଦିନ ଧାର୍ଯ୍ୟ କରିଥିଲେ । କିନ୍ତୁ ରାଣୀଙ୍କ ବାରିଷ୍ଟର ତିନି ଘଣ୍ଟା ମଧ୍ୟରେ ଶୁଣାଣି ଶେଷ କରି ଦେଇ ବସିଗଲେ । ଏତେ କମ୍ ସମୟ ମଧ୍ୟରେ ଶୁଣାଣି ଶେଷ କରିଥିବାରୁ ହାଇକୋର୍ଟ ବିଚାରପତି ବାରିଷ୍ଟରଙ୍କୁ ଧନ୍ୟବାଦ ଦେଇଥିଲେ । କିନ୍ତୁ ବାରିଷ୍ଟର ମହୋଦୟ ସଙ୍ଗେ ସଙ୍ଗେ ନିଜର ଉଦାରତା ପ୍ରଦର୍ଶନ କରି ତାଙ୍କ ପାଖରେ ସେତେବେଳେ ବସିଥିବା ମଧୁବାବୁଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ହାଇକୋର୍ଟ ବିଚାରପତିଙ୍କୁ ଜଣାଇଥିଲେ ଯେ ପ୍ରକୃତରେ ମଧୁବାବୁହିଁ ଏଥିଲାଗି ଧନ୍ୟବାଦାର୍ହ । ମକଦ୍ଦମାରେ ପୁରୀ ରାଣୀଙ୍କର ବିଜୟ ହେଲା ଏବଂ ମଧୁବାବୁଙ୍କ ନାମ ଚାରିଆଡ଼େ ପ୍ରଖ୍ୟାତ ହୋଇଗଲା । ସେହିଦିନ ସନ୍ଧ୍ୟାରେ ମଧୁବାବୁଙ୍କ ସମ୍ମାନାର୍ଥେ ଏକ ସାନ୍ଧ୍ୟଭୋଜର ଆୟୋଜନ କରାଯାଇଥିଲା ଏବଂ ଉକ୍ତ ସାନ୍ଧ୍ୟଭୋଜରେ ବିଚାରପତି ତଥା ବହୁ ଉଚ୍ଚପଦସ୍ଥ କର୍ମଚାରୀଙ୍କ ସହିତ ମଧୁବାବୁଙ୍କୁ ପରିଚିତ କରାଇ ଦିଆଯାଇଥିଲା ।

ଏହାପରେ ବଙ୍ଗଳାର ଲେଫ୍‌ଟାନାଣ୍ଟ ଗଭର୍ଣ୍ଣର ମଧୁବାବୁଙ୍କୁ ଲାଟଭବନକୁ ଡାକିନେଇ ରାଣୀଙ୍କ ସହିତ ଏକ ରାଜିନାମା କରି ପୁରୀର ରାଜାଙ୍କୁ ମନ୍ଦିରର ସୁପରିନ୍‌ଟେଣ୍ଡେଣ୍ଟ ରୂପେ ସ୍ୱୀକୃତି ପ୍ରଦାନ କରିଥିଲେ ଏବଂ ମୁକୁନ୍ଦ ଦେବଙ୍କ ନାବାଳକତ୍ୱ ସମୟରେ ତାଙ୍କ ମାତାମହୀ ମନ୍ଦିର ପରିଚାଳନା ଦାୟିତ୍ୱରେ ରହିବେ ବୋଲି ମଧ୍ୟ ରାଜି ହୋଇଥିଲେ ।

## କେନ୍ଦୁଝର ରାଜାଙ୍କ ମକଦ୍ଦମା

ଏହାପରେ ମଧୁବାବୁ ଗାଦିଚ୍ୟୁତ କେନ୍ଦୁଝରର ରାଜା ଧନୁର୍ଜୟ ଭଞ୍ଜଙ୍କୁ ପୁଣି ଗାଦିରେ ଅଧିଷ୍ଠିତ କରିବାରେ ଯେଉଁ ଦକ୍ଷତା ଓ ବିଚକ୍ଷଣତା ଦେଖାଇଥିଲେ ତାହା ବାସ୍ତବରେ ସେତେବେଳେ ସମଗ୍ର ଦେଶରେ ଚହଳ ପକାଇ ଦେଇଥିଲା । ୧୮୯୧ରେ କେନ୍ଦୁଝରରେ ଓଡ଼ିଶାର ବ୍ୟାସକବି ଫକୀର ମୋହନ ଥିଲେ କେନ୍ଦୁଝର ରାଜା

ଧନୁର୍ଜୟ ଭଞ୍ଜଙ୍କ ମ୍ୟାନେଜର । ସେତେବେଳେ କେନ୍ଦୁଝରରେ ପ୍ରଜାମେଳକୁ ତତ୍କାଳୀନ ଓଡ଼ିଶା ଡ଼ିଭିଜନର କମିଶନର ଟଏନବି ସାହେବ ପ୍ରଚ୍ଛନ୍ନ ପ୍ରୋତ୍ସାହ ପ୍ରଦାନକରି ରାଜାଙ୍କୁ ଗାଦିଚ୍ୟୁତ କରି ଦେଇଥିଲେ ଏବଂ ରାଜ୍ୟର ଦାୟିତ୍ୱ ଗ୍ରହଣ କରିବାପାଇଁ ଗୋରା ଅଫିସରଙ୍କୁ ପଠାଇଥିଲେ । କେନ୍ଦୁଝର ରାଜା ହାତରେ ବସି ରାତିରେ କେନ୍ଦୁଝରରୁ ଲୁଚି ପଳାଇ ଆସି ମଧୁବାବୁଙ୍କ ଆଶ୍ରୟ ଭିକ୍ଷା କରିଥିଲେ । ରାଜାଙ୍କ ନିକଟରେ କୌଣସି ଲୁଗାପଟା ଓ ପୋଷାକପତ୍ର ମଧ୍ୟ ନ ଥିଲା । ମଧୁବାବୁଙ୍କ ପାଳିତା କନ୍ୟା ସ୍ୱର୍ଗତା ଶୈଳବାଳା ମଧୁବାବୁଙ୍କ ସମ୍ପର୍କରେ ପ୍ରାୟ ୯ବର୍ଷ ତଳେ ମୋ ନିକଟକୁ ଗୋଟିଏ ଲେଖା ପଠାଇଥିଲେ । ସେଥିରେ ସେ ଉଲ୍ଲେଖ କରିଥିଲେ ଯେ କେନ୍ଦୁଝର ରାଜାଙ୍କ ଲାଗି ମଧୁବାବୁ ନିଜ ଖର୍ଚ୍ଚରେ ପୋଷାକ କରି ଦେଇଥିଲେ । ମଧୁବାବୁ ରାଜାଙ୍କୁ ଆଶ୍ରୟ ପ୍ରଦାନ କରି ତାଙ୍କ ସମ୍ପର୍କରେ ଆଲୋଚନା କରିବାପାଇଁ କମିଶନରଙ୍କ ସହିତ ସାକ୍ଷାତ କରିବାକୁ ସମୟ ଚାହିଁଥିଲେ, କିନ୍ତୁ କମିଶନର ଟଏନବି ରାଜାଙ୍କ ଉପରେ ଏତେ ବିରକ୍ତ ହୋଇଥିଲେ ଯେ ସେ ରାଜା ଓ ମଧୁବାବୁଙ୍କୁ ସାକ୍ଷାତ ଦେବାପାଇଁ ମଧ୍ୟ ମନା କରିଥିଲେ । ଏହାପରେ ମଧୁବାବୁ ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କୁ ତାର କରି କମିଶନର ଅଫିସରଙ୍କୁ କେନ୍ଦୁଝର ସଂପର୍କିତ ସମସ୍ତ କାଗଜପତ୍ର ଓ ତଥ୍ୟ ଦେଖିବାପାଇଁ ଅନୁମତି ଲାଭ କରିଥିଲେ । ଏସବୁ ତଥ୍ୟ ପଢ଼ିବା ପରେ ତାଙ୍କର ହୃଦବୋଧ ହୋଇଥିଲା ଯେ କମିଶନର ଓ କେତେକ ଗୋରା ଅଫିସରଙ୍କ ଚକ୍ରାନ୍ତ ଫଳରେ ରାଜା ଗାଦିଚ୍ୟୁତ ହୋଇଛନ୍ତି । ତେଣୁ ସେ ବଡ଼ଲାଟଙ୍କଠାରେ ଅପିଲ୍ କରି ରାଜାଙ୍କୁ ଯେପରି ରାଜ୍ୟ ମିଳିବ ସେଥିଲାଗି ସମସ୍ତ ପ୍ରକାର ଯୁକ୍ତି ବାଢ଼ିଥିଲେ, ବଡ଼ ଲାଟ କମିଶନରଙ୍କ ଆଦେଶକୁ ବାତିଲ କରି ରାଜାଙ୍କୁ ପୁଣି ରାଜଗାଦି ଫେରାଇ ଦେଇଥିଲେ । ଏହାଥିଲା ମଧୁବାବୁଙ୍କ ଆଇନ ଜ୍ଞାନ ଓ ବିଚକ୍ଷଣତାର ଆଉ ଏକ ନିଦର୍ଶନ । ସେହି ସମୟରେ ଖଣ୍ଡପଡ଼ାର ନଟବର ପ୍ରତାପସିଂହଙ୍କୁ ମଧ୍ୟ ହତ୍ୟା ମକଦ୍ଦମାରୁ ମୁକ୍ତ କରିଥିଲେ । ଏପରି ଭାବରେ ମଧୁବାବୁ ଏକାଧାରରେ ଥିଲେ ରାଜା, ମହାରାଜା ଓ ଜମିଦାରମାନଙ୍କ ବନ୍ଧୁ, ଦାର୍ଶନିକ ଓ ନିର୍ଦ୍ଦେଶକ (Friend, Philosopher and Guide) ଏବଂ ଓଡ଼ିଶାର ଲକ୍ଷ ଲକ୍ଷ ସାଧାରଣ ଜନତାର ନେତା, ଦେଶସେବୀ ଓ ପଥ ପ୍ରଦର୍ଶକ । ଦେଶର ମାନଚିତ୍ରରେ ଓଡ଼ିଶାର ସ୍ୱତନ୍ତ୍ର ସ୍ଥାନ ପ୍ରତିଷ୍ଠା କରି ଓଡ଼ିଆମାନଙ୍କର ଭାଷା, ସାହିତ୍ୟ, ସଂସ୍କୃତି, କୃଷି, କଳା, ସ୍ଥାପତ୍ୟ, ବାଣିଜ୍ୟ, କାରିଗରୀ କୁଶଳତାର ମର୍ଯ୍ୟାଦା ରକ୍ଷା କରି ଅର୍ଥନୈତିକ ଓ ଶିଳ୍ପ କ୍ଷେତ୍ରରେ ପ୍ରଗତିସାଧନ ପାଇଁ ସେ ଏ ଜାତିର ପ୍ରାଣରେ ନୂତନ ପ୍ରେରଣା ଓ ଉନ୍ମାଦନା ସୃଷ୍ଟି କରିଥିଲେ ।

## ଓଡ଼ିଆତ୍ୱ ଓ ସ୍ୱାଭିମାନ

ଓଡ଼ିଶାର ସନ୍ତାନ ଜଣେ ଓଡ଼ିଆ ବୋଲି ସେ କିପରି ଗର୍ବ ଅନୁଭବ କରିଥିଲେ ତା'ର ବହୁ ଦୃଷ୍ଟାନ୍ତ ରହିଛି ଏବଂ ଉପରୋକ୍ତ ଘଟଣାବଳୀରୁ ତାହାର ପ୍ରମାଣ ମଧ୍ୟ ମିଳୁଛି । ତେବେ ଊନବିଂଶ ଶତାବ୍ଦୀର ଶେଷ ଭାଗର ମଧୁସୂଦନଙ୍କ ଜୀବନୀର ଗୋଟିଏ ଘଟଣାର ବିବରଣୀ ପ୍ରତ୍ୟେକ ଓଡ଼ିଆର ପ୍ରାଣରେ ସୃଷ୍ଟି କରିବ ଗର୍ବ ଓ ସ୍ୱାଭିମାନ । ସେ ସମୟରେ ମଧୁସୂଦନ ବିଲାତ ଭ୍ରମଣରେ ଯାଇଥିଲେ । ୧୮୯୭ ଅଗଷ୍ଟ ୭ ତାରିଖରେ ଉତ୍କଳ ଦୀପିକାରେ ତାଙ୍କର ଗୋଟିଏ ପତ୍ର ପ୍ରକାଶିତ ହୋଇଥିଲା । ସେହି ଦିନଟି ତାଙ୍କ ଜୀବନରେ ଏକ ସ୍ମରଣୀୟ ଦିବସ ବୋଲି ସେ ମନେ କରୁଥିଲେ, ସେ ଲେଖିଥିଲେ "ମୁଁ ରେଭେନ୍‌ସା ସାହେବଙ୍କୁ ଦେଖି ନ ଥିଲି । ମୁଁ ଓଡ଼ିଶାକୁ ଫେରିବା ପୂର୍ବରୁ ସେ ଏଠାରୁ ଅବସର ନେଇ ପଳାଇ ଯାଇଥିଲେ । ମୁଁ ଇଂଲଣ୍ଡରେ ଷ୍ଟେସନରୁ ଓହ୍ଲାଇବା ସଙ୍ଗେ ସଙ୍ଗେ ଜଣେ ପକ୍ୱକେଶଧାରୀ, କ୍ଷୀଣକାୟ ବୃଦ୍ଧ ମୋ ନିକଟକୁ ଚାଲିଆସି ମିଃ ଦାସ ବୋଲି ସମ୍ବୋଧନ କରି ମୋ ସହିତ ଏପରି ଆନ୍ତରିକତା ସହକାରେ କର ମର୍ଦ୍ଦନ କରିଥିଲେ ଯେ ସତେ ଯେପରି ଆମେ ଦୁହେଁ ପରସ୍ପର ସହିତ ବହୁ ଆଗରୁ ପରିଚିତ ଓ ପୁରୁଣା ବନ୍ଧୁ । ମୁଁ କହିଥିଲି ମିଃ ରେଭେନ୍‌ସା ! ମୁଁ ବିଶେଷ ଦୁଃଖିତ ଆପଣ ମୋ ପାଇଁ ଏତେ ଦୂର ଆସିଛନ୍ତି । ମୁଁ ନିଶ୍ଚୟ ଆପଣଙ୍କ ପାଖକୁ ଯାଇଥାନ୍ତି ।" ସେ ଉତ୍ତରରେ କହିଥିଲେ "ତୁମଙ୍କୁ ଏଠାରେ ଆସି ଦେଖା କରିବା ମୁଁ ମୋର କର୍ତ୍ତବ୍ୟ ମନେ କରୁଛି ।" ଏପରି ଭାବରେ କିଛି ସମୟ କଥାବାର୍ତ୍ତା ହେବାପରେ ରେଭେନ୍‌ସା ପଚାରିଥିଲେ (Excuse me asking the question, Are you a genuine Oriya ?) ଏହି ପ୍ରଶ୍ନ ପାଇଁ କ୍ଷମା କରିବେ, ଆପଣ କ'ଣ ଜଣେ ଖାଣ୍ଟି ଓଡ଼ିଆ ? ମଧୁସୂଦନ ଗର୍ବର ସହିତ କହିଥିଲେ "Every drop of blood in me was of Oriya origin." ମୋ ଧମନୀରେ ପ୍ରବାହିତ ପ୍ରତ୍ୟେକ ରକ୍ତ ବିନ୍ଦୁରେ ଓଡ଼ିଆତ୍ୱ ରହିଛି । ଏହାପରେ ରେଭେନ୍‌ସା କହିଥିଲେ "I am very fond of your race and I would talk more freely to an Oriya than to any other man. "ରେଭେନ୍‌ସା ସାହେବ କହିଥିଲେ "ଓଡ଼ିଆମାନଙ୍କୁ ମୁଁ ଭାରି ଭଲପାଏ ଓ ସେମାନଙ୍କ ସହିତ ହିଁ ମୁଁ ମନ ଖୋଲି କଥାବାର୍ତ୍ତା କରି ପାରିବି ।" ଏହାପରେ ସେ ମଧୁବାବୁଙ୍କ ସହିତ ଓଡ଼ିଆରେ କଥାବାର୍ତ୍ତା କରି କେନ୍ଦୁଝର, ମୟୂରଭଞ୍ଜ ପ୍ରଭୃତି ରାଜ୍ୟରେ ତତ୍କାଳୀନ ଗଣ୍ଡଗୋଳ ସମ୍ପର୍କରେ ଅନୁସନ୍ଧାନ କରିଥିଲେ । ରେଭେନ୍‌ସା ସାହେବ ଓଡ଼ିଶାକୁ ଆସି ଲୋକଙ୍କର ସେବା କରିବା ପାଇଁ ବ୍ରିଟିଶ ସରକାରଙ୍କ

ତାଙ୍କୁ ଅନୁମତି ଦେଇ ନଥିଲେ, କିନ୍ତୁ ତାଙ୍କୁ ସେଥିପାଇଁ ଅନୁମତି ମିଳି ନ ଥିଲା ।

ଏ ସମସ୍ତ ଘଟଣାବଳୀର ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ ମଧୁବାବୁ ଥିଲେ ଜଣେ ଆତ୍ମଜାତ୍ୟସମ୍ପନ୍ନ, ସ୍ୱାଧୀନଚେତା, ସ୍ୱାଭିମାନୀ, ଉଚ୍ଚ ଶିକ୍ଷିତ ଦେଶସେବୀ ଯେ କି ପଣ୍ଡିତ ଜବାହରଲାଲଙ୍କ ପରି ବଡ଼ ବଡ଼ ରାଜା, ମହାରାଜା, ବ୍ରିଟିଶ ରାଜବଂଶୀୟ ଲୋକଙ୍କ ସହିତ ସମାନ ଭାବରେ ପାଦ ଚାଳନା କରି ଗର୍ବର ସହିତ ମୁଣ୍ଡ ଟେକି ନିଜ ଦେଶର, ଜାତିର ଓ ନିଜର ସ୍ୱାଭିମାନକୁ ବଜାୟ ରଖି ପାରିଥିଲେ । ଏପରି ନେତାମାନେ ଗାଁ ଗହଳଠାରୁ ଦୂରରେ ରହୁଥିଲେ ମଧ୍ୟ ଗାଁ ଗହଳର ଲୋକଙ୍କ ହୃଦୟରେ ସେମାନେ ସମ୍ମାନିତ ଆସନ ଲାଭ କରି ପାରିଥିଲେ ନିଜ ବ୍ୟକ୍ତିତ୍ୱର ବିଶାଳତା ଓ ନିଃସ୍ୱାର୍ଥପର ଦେଶ ସେବା ଯୋଗୁଁ ।

## ଗାନ୍ଧୀଜୀ ଓ ଗୋପବନ୍ଧୁ

ଏହି ପରିପ୍ରେକ୍ଷୀରେ ବିଚାର କଲେ ଦେଖାଯାଏ ଯେ ଗାନ୍ଧୀଜୀ ଓ ଗୋପବନ୍ଧୁ ପ୍ରଭୃତିଙ୍କର ଜୀବନର କାର୍ଯ୍ୟାବଳୀ ଓ ଦେଶସେବାର ଶୈଳୀ ଥିଲା ଭିନ୍ନ ଧରଣର । ଗାନ୍ଧୀ, ଗୋପବନ୍ଧୁ ଥିଲେ ଦରିଦ୍ର ଜନତାର ପ୍ରକୃତ ବନ୍ଧୁ, ସେମାନେ ଦରିଦ୍ର ଜନତାର ସୁଖ, ଦୁଃଖ, ଭଲ ମନ୍ଦରେ ନିଜକୁ ଓତପ୍ରୋତ ଭାବରେ ସମ୍ପୃକ୍ତ କରି ଦେଇ ପାରୁଥିଲେ । ଜନତାର ଦୁଃଖ ଦୁର୍ଦ୍ଦଶାରେ ଗୋପବନ୍ଧୁ କେବଳ ଯେ ସାହାଯ୍ୟ କରୁଥିଲେ ତା ନୁହେଁ କିନ୍ତୁ ସେଥିରେ ଭାଗୀଦାର ହେଉଥିଲେ । ଗୋପବନ୍ଧୁଙ୍କ ଜୀବନର ପ୍ରତ୍ୟେକ ଘଟଣା ଗୋଟିଏ ଗୋଟିଏ ମର୍ମସ୍ପର୍ଶୀ ଘଟଣା ହୋଇ ଇତିହାସରେ ରହିଛି ଓ ରହିଥିବ । ସେ ଦରିଦ୍ର ଜନତାର ସେବାପାଇଁ ଦରିଦ୍ର ଭାବରେ ଜୀବନ ଯାପନ କରୁଥିଲେ । ଗରିବର ସେବକ ଓ ଗରିବ ପ୍ରତିନିଧି ଭାବରେ ପରିଚିତ ହେବାକୁ ସେ କେବେ ପଶ୍ଚାତ୍‌ପଦ ନଥିଲେ ।

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ" ।

ଗୋପବନ୍ଧୁଙ୍କ ଏହି ସରଳ କ୍ଷୁଦ୍ର କବିତା ପଂକ୍ତିରେ କି ମହାନ୍ ଦର୍ଶନ ରହିଛି, ଦେଶ ଓ ଜନତାର ସେବା ପାଇଁ ପ୍ରାଣର କି ଆବେଗ ଓ ବ୍ୟାକୁଳତା ପ୍ରକାଶ ପାଇଛି ତାହା ଭାଷାର ବର୍ଣ୍ଣନାତୀତ । ଗୋପବନ୍ଧୁଙ୍କ ଏହି ପ୍ରାଣଭରା ଗୀତର ବହୁବର୍ଷ ପରେ ଜବାହରଲାଲନେହେରୁ ତାଙ୍କ ଶେଷ ଇଚ୍ଛାରେ ଏପରି ମାର୍ମିକ ଓ ହୃଦୟସ୍ପର୍ଶୀ ଭାବ ପ୍ରକାଶ କରି କହିଲେ "....I am proud of that great inheritance that has been, and is ours, and I am conscious that I too like all of us, am a link in that unbroken chain which goes back to the down of history in the immemorial past of India. That chain I would not break, for I treasure it and seek inspiration from it. And as witness of this desire of mine as my last homage to India's cultural inheritance. I am making the request that a handful of my ashes be thrown into Ganga at Allahabad to be carried away to the great ocean that washes India's shore. The major portion of my ashes should, however, I want be disposed of otherwise. I want these to be carried high up to the air in an aeroplane and scattered from that height over the fields where the peasant of India toil, s that they mingle with the dust and soil of India.......ପାଶ୍ଚାତ୍ୟ ଶିକ୍ଷା, ସଭ୍ୟତା, ରୁଚି ଏବଂ ହାରୋ ଓ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ପରିବେଶରେ ବିକଶିତ ଓ ପରିପୁଷ୍ଟ ଜବାହରଲାଲନେହେରୁ ଭାରତୀୟ ପରମ୍ପରା, ସଂସ୍କୃତି, ଜାତୀୟ ଭାବନା ଓ ଐତିହାସିକ ଗ୍ରନ୍ଥିରୁ ନିଜକୁ ବିଚ୍ଛିନ୍ନ କରିପାରି ନଥିଲେ । ସେ ମାନବ ଧର୍ମ ବ୍ୟତୀତ କୌଣସି ସାମ୍ପ୍ରଦାୟିକ ଧର୍ମର ଉପାସକ ନ ଥିଲେ କିମ୍ବା ତାଙ୍କ ଆଚାର ବ୍ୟବହାରରେ ଧର୍ମ କହିଲେ ଆମେ ସାଧାରଣତଃ ଯାହା ବୁଝୁ ତା'ର କୌଣସି ପ୍ରଭାବ ନ ଥିଲା । କିନ୍ତୁ ସେ ତାଙ୍କ ଶେଷ ଇଚ୍ଛାରେ ଲେଖି ଯାଇଛନ୍ତି: ମୋର ମୃତ୍ୟୁ ପରେ ମୋର ଚିତାଭସ୍ମର ସ୍ୱଳ୍ପାଂଶ ଏଲାହାବାଦଠାରେ ଗଙ୍ଗାରେ ବିସର୍ଜନ କରାଯିବ । କାରଣ ଗଙ୍ଗା ସେହି ଭସ୍ମକୁ ପ୍ରବାହିତ କରି ମହାସାଗର ବକ୍ଷର ଅନନ୍ତ ଜଳରାଶିରେ ମିଶାଇଦେବ । ମହାସାଗରର ସେହି ଜଳରାଶି ଦ୍ୱାରା ଭାରତର ତଟ ବିଧୌତ ହେଉଛି । ଏହାଛଡ଼ା ଚିତାଭସ୍ମର ଅଧିକାଂଶ ଭାଗ ଆକାଶମାର୍ଗରୁ ବିମାନଦ୍ୱାରା କୃଷୀର କ୍ଷେତ ଉପରେ ଫିଙ୍ଗି ଦିଆଯିବ ଯେଉଁଠାରେ କି ତାହା ଭାରତର ଧୂଳି ଓ ମାଟିରେ ମିଶିଯିବ ।

ଗୋପବନ୍ଧୁ ଓ ନେହେରୁଙ୍କ ଏହି ଚିନ୍ତାଧାରା ପଛରେ ଦେଶ ସେବାପାଇଁ ଆତ୍ମୋତ୍ସର୍ଗର ଭାରତୀୟ ପାରମ୍ପରିକ କାମନା ପ୍ରକଟିତ ହୋଇଛି । ପ୍ରାଚୀନ ଗଙ୍ଗାସ୍ତବରେ ମଧ୍ୟ ଏହି କଥା ହିଁ ବର୍ଣ୍ଣିତ ହୋଇଛି ।

"ସ୍ରୋତୋଭିଷ୍ଖଳିତଂ ତଟାଥୁଲ୍ଲଳିତଂ ଘୋଟଭି ସବୋଲିତଂ
ଦିବ୍ୟସ୍ତ୍ରୀକର ଗୃତ୍ନୁରୁମରମରୁଚ ସଂଖାଦ୍ୟମାନଃ
କଦା ଦ୍ରକ୍ଷେଽହଂପରମେଶ୍ୱରି! ଶି
ପଥମେଂ ଭଗୀରଥ ! ସ୍ୱଂ ବପୁଃ ।।"

ଗୋପବନ୍ଧୁ ଥିଲେ ଏହି ଭାରତୀୟ ଚିନ୍ତାଧାରାର ପରିପ୍ରକାଶ । ତାଙ୍କ ଜୀବନରେ ଯାହା କିଛି କରି ଯାଇଛନ୍ତି ସେ ସବୁ ଦେଶ ଓ ଜାତିପାଇଁ, ନିଜ ପାଇଁ କିଛି ନୁହେଁ । ତାଙ୍କର ରହିବାପାଇଁ କୋଠାଘର ନ ଥିଲା ବା ଶୋଇବା ପାଇଁ ପଲଙ୍କ ନଥିଲା ବା ଭଲ ଖାଇବାର ସାଧନାଦି ତାଙ୍କର ନ ଥିଲା । ସାକ୍ଷୀଗୋପାଳ ବନ ବିଦ୍ୟାଳୟ ଠାରୁ ଆରମ୍ଭ ଆଜିର ବିରାଟ 'ସମାଜ' ଅନୁଷ୍ଠାନକୁ ସେ ଜାତିପାଇଁ ଉତ୍ସର୍ଗ କରି ଯାଇଥିଲେ । ନିଜର ଉପାର୍ଜିତ ଧନ ସେ ଗରିବର ସେବାରେ ଲଗାଇଥିଲେ ।

ମଧୁସୁଦନଙ୍କ ପରାମର୍ଶକ୍ରମେ ସେ ମୟୂରଭଞ୍ଜ ମହାରାଜାଙ୍କ ଆଇନ୍ ପରାମର୍ଶଦାତା ଭାବରେ ଅଳ୍ପକାଳ ପାଇଁ ରହିଥିଲେ, କିନ୍ତୁ ତାଙ୍କୁ ରାଜା, ମହାରାଜା, ଜମିଦାର ଓ କ୍ଷମତାର ମୋହ ଘାରି ନଥିଲା । ମଧୁସୂଧନ ଯେପରି ବିହାର-ଓଡ଼ିଶାର ଲୋଭନୀୟ ଓ ବହୁ ଇପ୍‌ସିତ ମନ୍ତ୍ରୀପଦକୁ ଫିଙ୍ଗି ଦେଇ ନିଜ ସ୍ଥାନକୁ ଫେରି ଆସିଥିଲେ, ସେହିପରି ମୟୂରଭଞ୍ଜ ମହାରାଜାଙ୍କ ଆଇନ୍ ପରାମର୍ଶଦାତା ପଦ ତ୍ୟାଗକରି ଓଡ଼ିଶାର ଦରିଦ୍ର ଜନତାର ସେବାପାଇଁ ଗୋପବନ୍ଧୁ ଫେରି ଆସିଥିଲେ । ତୁଳସୀ ପତ୍ରରେ ସ୍ଥାନ ବଡ଼ ବିସ୍ତାର କରିବାର ଅବକାଶ ନାହିଁ ! ରାଜାଙ୍କ ପ୍ରାସାଦରେ ଥିବା ତୁଳସୀ ଗଛ ଧୂପ, ଦୀପ, ନୈବେଦ୍ୟ ଆଡ଼ମ୍ବର ମଧ୍ୟରେ ରହିଥିଲେ ମଧ୍ୟ ଗରିବର ଦ୍ୱାର ମୁହଁରେ ଥିବା ମାଟି ଚଉରାର ତୁଳସୀ ଗଛ ତା ଠାରୁ ମାହାତ୍ମ୍ୟରେ କମ୍ ନୁହେଁ । ଏଠାରେ ଦରିଦ୍ର ଜନତାର ଐକାନ୍ତିକ ଭକ୍ତି ପ୍ରକଟିତ ହୋଇଥାଏ ।

ଆବାଲ୍ୟରୁ ଗୋପବନ୍ଧୁ ଦେଶ ସେବା ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ । ୧୯୦୪ ରେ ରେଭେନ୍ସା କଲେଜରୁ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ୧୯୦୫ରେ ଆଇନ୍ ପଢ଼ିବାପାଇଁ ସେ କଲିକତା ଗଲେ ଏବଂ ୧୯୦୬ରେ ବି. ଏଲ୍. ଡ଼ିଗ୍ରୀ ହାସଲ କରିଥିଲେ । କିନ୍ତୁ ଯେଉଁଦିନ ସେ ବି. ଏଲ୍. ଡିଗ୍ରୀ ହାସଲ କରିବାର ଶୁଭ ସମ୍ବାଦ କଟକଠାରେ ପାଇଥିଲେ ସେହିଦିନ ପ୍ରାୟ ସେହି ସମୟରେ ତାଙ୍କ ପତ୍ନୀ ବିୟୋଗର ଦାରୁଣ ଦୁଃସମ୍ବାଦ ମଧ୍ୟ ପାଇ-ଥିଲେ । ତରୁଣ ଜୀବନର ଯାତ୍ରା ଆରମ୍ଭ କରିବା ସମୟରେ ସେ ସାଥୀହରା ହୋଇ ପଡ଼ିଥିଲେ । ଘର ଭାଙ୍ଗିଗଲା । ଘର ଆଉ ତୋଳିଲେ ନାହିଁ । ସାଧାରଣ ମତରେ ଏହା ହୁଏତ ଏକ ଅଭିଶାପ ରୂପେ ପରିଗଣିତ ହୋଇ ପାରେ, କିନ୍ତୁ ଦେଶବନ୍ଧୁଙ୍କ ଗୋପବନ୍ଧୁ ବ୍ୟକ୍ତିଗତ ଜୀବନର ସୁଖ ସମ୍ଭୋଗର ଯବନିକାପାତକୁ ଈଶ୍ୱରଙ୍କ ଆଶୀର୍ବାଦ ରୂପେ ହୁଏତ ଗ୍ରହଣ କରି ନେଇ 'ଉଦାର ଚରିତାନାଂ ତୁ ବସୁଧୈବ କୁଟୁମ୍ବକମ୍", ଏହି ମନ୍ତ୍ରରେ ଏକାକୀ ଯାତ୍ରା ଆରମ୍ଭ କରିଥିଲେ । ତାଙ୍କର ଅବାରିତ ଗତିପଥରେ ପ୍ରତିବନ୍ଧକ ବୋଲି ଆଉ କିଛି ନଥିଲା । ପାରିବାରିକ ବନ୍ଧନ, ମୋହରୁ ସେ ସମ୍ପୂର୍ଣ୍ଣ ମୁକ୍ତ । "ନମଂ କର୍ମାଣି ଲିମ୍ପନ୍ତି ନମେ କର୍ମ ଫଳେ ସ୍ପୃହା" । ଗୀତାର ଏହି ବାଣୀ ବୋଧହୁଏ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲେ । କର୍ମ ଫଳରେ ତାଙ୍କର ସ୍ପୃହା ନ ଥିଲା, କେବଳ ଲୋକଙ୍କ ପାଇଁ କର୍ମ କରି ଚାଲିଥିଲେ ।

ଏହି ସମୟରେ ତାଙ୍କର ବନ୍ଧୁ ଶ୍ରୀ ବ୍ରଜସୁନ୍ଦର ଦାସଙ୍କ ସହାୟତାରେ ରେଭେନ୍ସା କଲେଜରେ 'Central Young Utkal Association' କେନ୍ଦ୍ରୀୟ ଯୁବ ଉତ୍କଳ ଆସୋସିଏସନ ଗଠନ କରିଥିଲେ । ରେଭେନ୍ସା କଲେଜର ପ୍ରିନ୍ସିପାଲ ଏଡ୍‌ୱାର୍ଡ଼ ଏକ୍ସ-ଅଫିସିଓ ସଭାପତି ଓ ପଣ୍ଡିତ ଗୋପବନ୍ଧୁ ସାଧାରଣ ସମ୍ପାଦକ ଭାବରେ କାର୍ଯ୍ୟାରମ୍ଭ କରିଥିଲେ । ସାହିତ୍ୟ, ଶାରୀରିକ ଶିକ୍ଷା, ସାମାଜିକ ଓ ଆର୍ଥିକ ଦିଗରେ ପରିଚାଳନା ପାଇଁ ବିଭିନ୍ନ ଶାଖା ଓ ସେକ୍ରେଟାରୀ ମଧ୍ୟ ନିଯୁକ୍ତ ହୋଇଥିଲେ । ୧୯୦୭ରେ ପ୍ରବଳ ବନ୍ୟା ଯୋଗୁଁ କେନ୍ଦ୍ରାପଡ଼ା' ସବ୍‌ଡିଭିଜନ ଯାଜପୁରର ବ୍ୟାପକ ଅଞ୍ଚଳ କ୍ଷତିଗ୍ରସ୍ତ ହେଲା ଏବଂ ହଜାର ହଜାର ଲୋକ ଉଦ୍‌ବାସ୍ତୁ ବିପନ୍ନ ହୋଇ ପଡ଼ିଥିଲେ । ସେତିକି ବେଳେ ଏହି ଆସୋସିଏସନର ସ୍ୱେଚ୍ଛାସେବକମାନେ ଚୂଡ଼ା, ଗୁଡ଼, ଲୁଗା ଇତ୍ୟାଦି ନେଇ ବିପନ୍ନ ଲୋକଙ୍କ ମଧ୍ୟରେ ବଣ୍ଟନ କଲେ ଏବଂ ଆଉ ଦଳେ ସ୍ୱେଚ୍ଛାସେବୀ ଲୋକଙ୍କଠାରୁ ଦାନ ସଂଗ୍ରହ କରିବାରେ ଲାଗିଲେ । ଏହି ଆସୋସିଏସନର କାର୍ଯ୍ୟ ପ୍ରସାରପାଇଁ ପ୍ରତି ରବିବାର ଦିନ ଟାଉନ ହଲ୍‌ରେ ସଭା କରାଯାଉଥାଏ । କ୍ରମଶଃ ଏହି ଆସୋସିଏସନର କାର୍ଯ୍ୟ ବିଭିନ୍ନ ସ୍କୁଲ କଲେଜକୁ ସମ୍ପ୍ରସାରିତ ହୋଇଥିଲା । ଏତିକି ବେଳେ ପଣ୍ଡିତ ଗୋପବନ୍ଧୁ ନୀଳଗିରି ଯାଇ ସେଠାରେ ଗୋଟିଏ ହାଇସ୍କୁଲର ହେଡ଼ମାଷ୍ଟର ଭାବରେ କାର୍ଯ୍ୟାରମ୍ଭ କଲେ ଏବଂ ଉକ୍ତସ୍କୁଲ୍ ଠିକ୍ ଭାବରେ ଦୃଢ଼ଭିତ୍ତିରେ ସଂସ୍ଥାପିତ ହେବା ପରେ ମଧୁସୂଦନଙ୍କ ନିର୍ଦ୍ଦେଶକ୍ରମେ ସେ ମୟୂରଭଞ୍ଜର ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓଙ୍କ ଷ୍ଟେଟ୍ ପ୍ଲିଡ଼ର ଭାବରେ ଯୋଗ ଦେଇଥିଲେ ।

## ସତ୍ୟବାଦୀ ଏମ୍. ଇ. ସ୍କୁଲ

ସେ ମୟୂରଭଞ୍ଜରୁ ଫେରି ଆସି ୧୯୦୯ ଅଗଷ୍ଟ ୧୨ ତାରିଖରେ ସତ୍ୟବାଦୀ ମିଡ଼ଲ ସ୍କୁଲ ଆରମ୍ଭ

କଲେ । ମାତ୍ର ୧୯ ଜଣ ଛାତ୍ର ଏହି ସ୍କୁଲରେ ପ୍ରଥମେ ଭର୍ତ୍ତି ହୋଇଥିଲେ । ପଣ୍ଡିତ ନୀଳକଣ୍ଠ କଲିକତାରୁ ଏମ୍. ଏ. ଡିଗ୍ରୀ ଲାଭ କରିବା ପରେ ୧୯୧୧ ମସିହା ଅକ୍ଟୋବର ୧୧ ତାରିଖରେ ଏହି ସ୍କୁଲର ଶିକ୍ଷକ ଭାବରେ ଯୋଗ ଦେଲେ । ୧୯୧୨ରେ ହାଇସ୍କୁଲର ନିମ୍ନ ଶ୍ରେଣୀ ଏହି ସ୍କୁଲରେ ଖୋଲାଗଲା । ସେହି ବର୍ଷ ଶ୍ରୀ ରାମଚନ୍ଦ୍ର ରଥ ମଧ୍ୟ ଯୋଗ ଦେଲେ । ଏହି ସ୍କୁଲର ସମାଜ ସଂସ୍କାରମୂଳକ ଶିକ୍ଷା ବ୍ୟବସ୍ଥା ଅନେକାଂଶ ରକ୍ଷଣଶୀଳ ବ୍ରାହ୍ମଣମାନଙ୍କର ଚକ୍ଷୁଶୂଳ ହୋଇ ପଡ଼ିଲା । ଏହା ପରେ ଦେଖାଗଲା ଯେ ୧୯୧୨ ମସିହା ମାର୍ଚ୍ଚ ୨୨ ତାରିଖଦିନ ସ୍କୁଲ ଘରେ ନିଆଁ ଲାଗି ସ୍କୁଲର ଚାଳଘର ଓ ମୂଲ୍ୟବାନ ଲାଇବ୍ରେରି ପୋଡ଼ିଗଲା । କିନ୍ତୁ ଏହା ପରେ ପରେ ଲୋକଙ୍କଠାରୁ ଅଯାଚିତ ଦାନ ସ୍କୁଲ ଗୃହ ନିର୍ମାଣପାଇଁ ଓଡ଼ିଶାର ଚାରିଆଡ଼ୁ ଆସି ପହଞ୍ଚିଲା । ଅଗ୍ରଣୀ ହରିହର ପ୍ୟାରୀମୋହନ ଏକାଡେମୀର ଶିକ୍ଷକତା ଛାଡ଼ି ଏ ସ୍କୁଲର ଶିକ୍ଷକ ଭାବରେ ଯୋଗ ଦେଲେ । ୧୯୧୩ରେ ମାଟ୍ରିକ୍ ସେକେଣ୍ଡ କ୍ଲାସ ଓ ଥାର୍ଡକ୍ଲାସ ଖୋଲାଗଲା । ସେହି ବର୍ଷ ମଇ ୧ ତାରିଖ ଦିନ ପଣ୍ଡିତ ଗୋଦାବରୀଶ ମିଶ୍ର ଏମ୍. ଏ. ପାସ୍ କରିସାରି ଏହି ସ୍କୁଲରେ ଆସି ଯୋଗ ଦେଲେ. କିନ୍ତୁ ବକୁଳ ବନର ମୁକ୍ତାକାଶ ତଳେ ଏହି ସ୍କୁଲ ଚାଲିଥିଲା ।

## ସତ୍ୟବାଦୀ ଶିକ୍ଷା ବ୍ୟବସ୍ଥା

ଗାନ୍ଧୀଜି, ସାର୍ ଆଶୁତୋଷ ମୁଖାର୍ଜି, ବିହାର ଏବଂ ଓଡ଼ିଶାର ଲେଫ୍ଟେନାଣ୍ଟ ଗଭର୍ଣ୍ଣର ସାର୍ ଏଡ୍ ଓ୍ୱାର୍ଡ ଗେଟ୍ ପ୍ରମୁଖ ଏହି ସ୍କୁଲ ପରିଦର୍ଶନ କରି ସତ୍ୟବାଦୀ ଶିକ୍ଷା ବ୍ୟବସ୍ଥାର ବିଶେଷ ପ୍ରଶଂସା କରିଥିଲେ । ୧୯୨୦ ପର୍ଯ୍ୟନ୍ତ ଏପରି ଭାବରେ ଏହି ସ୍କୁଲ ଜାତୀୟ ଭାରତର ଦେଶପ୍ରେମୀ ନାଗରିକ ଗଠନ କରିବାରେ ସହାୟକ ହେଲା । ୧୯୨୧ର ଗାନ୍ଧୀଜିଙ୍କ ଅସହଯୋଗ ଆନ୍ଦୋଳନ ସମଗ୍ର ଦେଶରେ ଏକ ନବ ଉଦ୍‌ବେଳନ ସୃଷ୍ଟି କରିଥିଲା । ସେତିକିବେଳେ ୧୯୨୧ ଜାନୁଆରୀ ୨୨ ତାରିଖ ଦିନ ଗୋପବନ୍ଧୁଙ୍କ ଏହି ସ୍କୁଲ ଏକ ଜାତୀୟ ଶିକ୍ଷା କେନ୍ଦ୍ରରେ ପରିଣତ ହେଲା । କିନ୍ତୁ ଗୋପବନ୍ଧୁ ଛାତ୍ର ଓ ସେମାନଙ୍କ ଅଭିଭାବକମାନଙ୍କ ସହିତ ଆଲୋଚନା କରିବା ପରେ ଏହି ପଦକ୍ଷେପ ନେଇଥିଲେ । ପଣ୍ଡିତ ଲିଙ୍ଗରାଜ ମିଶ୍ର ମଧ୍ୟ ଏହି ସ୍କୁଲ ସହିତ ସମ୍ପୃକ୍ତ ଥିଲେ । ଏପରି ଭାବରେ ୧୯୨୩ ପର୍ଯ୍ୟନ୍ତ ଚାଲିବା ପରେ ଜାତୀୟ କଲେଜରେ ଏହା ପରିଣତ ହୋଇଥିଲା । କିନ୍ତୁ ବିଶ୍ୱବିଦ୍ୟାଳୟ ନାନା ସର୍ତ୍ତ ସେହି ସ୍ୱୀକୃତ ନ ଦେବା ଯୋଗୁଁ ୧୯୨୬ରେ ଏହି ଅନୁଷ୍ଠାନ ବନ୍ଦ ହୋଇଗଲା । କିନ୍ତୁ ଗୋପବନ୍ଧୁ ଏହାକୁ ଏକ ଆଶ୍ରମରେ ପରିଣତ କରି ସେଠାରେ ଅଧିକାଂଶ ସମୟ ଅତିବାହିତ କରିଥିଲେ ।

## ସତ୍ୟବାଦୀ ପତ୍ରିକା

୧୯୧୫ରେ ଗୋପବନ୍ଧୁ ସତ୍ୟବାଦୀ ନାମକ ମାସିକ ପତ୍ରିକା ପ୍ରକାଶକରି ପ୍ରାଚୀନ ଭାରତର ସଂସ୍କୃତିର ପ୍ରଚାର କରିଥିଲେ । ଏହି ପତ୍ରିକା ପ୍ରଥମେ ବ୍ରହ୍ମପୁର 'ଆଶା' ପ୍ରେସରୁ ପ୍ରକାଶ ପାଉଥିଲା ।

## ଗୋପବନ୍ଧୁଙ୍କ ବ୍ୟବସ୍ଥାପକ ଜୀବନ

ମଧୁସୂଦନ ବିହାର ଓଡ଼ିଶା ବିଧାନ ପରିଷଦରୁ ଅବସର ନେବା ପରେ ଗୋପବନ୍ଧୁ ୧୯୧୭ରେ ସେଠାକୁ ନିର୍ବାଚିତ ହୋଇଗଲେ । ମଧୁସୂଦନ ଗୋପବନ୍ଧୁଙ୍କୁ ନିର୍ବାଚିତ କରି ପଠାଇବାକୁ ବିଶେଷ ଉଦ୍ୟମ କରିଥିଲେ । ସେ ବିଧାନ ପରିଷଦକୁ ସଭ୍ୟ ନିର୍ବାଚିତ ହେବା ପରେ କଟକ ଇଞ୍ଜିନିୟରିଂ ସ୍କୁଲ ଓ ରେଭେନ୍‌ସା କଲେଜରେ ଏମ୍. ଏ ଓ ବି. ଏଲ୍. କ୍ଲାସ ଖୋଲିବାପାଇଁ ସେଠାରେ ପ୍ରବଳ ଦାବୀ କରିଥିଲେ । ବିଧାନ ପରିଷଦରେ ପଣ୍ଡିତ ଗୋପବନ୍ଧୁ ଓଡ଼ିଶାର ବନ୍ୟା ସମସ୍ୟା, ଚିଲିକାରେ ଲବଣ ଉତ୍ପାଦନ ଇତ୍ୟାଦି ସମ୍ପର୍କରେ ଯେଉଁ ଉପାଦେୟ ପରାମର୍ଶ ଦେଇଥିଲେ ସେଗୁଡ଼ିକ ସେତେବେଳର ବ୍ରିଟିଶ ଶାସକମାନଙ୍କୁ ମଧ୍ୟ ଆକୃଷ୍ଟ କରିଥିଲା ।

## ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷା

ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳରେ ଓଡ଼ିଆ ଶିକ୍ଷା ଦେବା ଏବଂ ଓଡ଼ିଆ ସାହିତ୍ୟ, ଭାଷା ଓ ସଂସ୍କୃତିକୁ ଅକ୍ଷୁର୍ଣ୍ଣ ରଖିବା ଲାଗି ସେ ବରାବର ଉଦ୍ୟମ କରୁଥିଲେ । ତେଣୁ ପଣ୍ଡିତ ଗୋଦାବରୀଶଙ୍କୁ ହେଡ୍ ମାଷ୍ଟର ରୂପେ ଅବସ୍ଥାପିତ କରି ସିଂହଭୂମ ଜିଲାର ଚକ୍ରଧରପୁରଠାରେ ଓଡ଼ିଆ ହାଇସ୍କୁଲ ଆରମ୍ଭ କଲେ । ଧଲଭୂମି ଅଞ୍ଚଳରେ ବାହାଡ଼ାଗୁଡ଼ା ଠାରେ ଗୋଟିଏ ଏମ୍. ଇ. ସ୍କୁଲ ମଧ୍ୟ ଆରମ୍ଭ କଲେ । ଏହା ପରେ ଓଡ଼ିଆ ଭାଷାର ପ୍ରଚାରପାଇଁ ୧୯୧୯ ଅକ୍ଟୋବର ୪ ତାରିଖରେ ସାପ୍ତାହିକ ସମାଜ ପ୍ରକାଶ କରିଥିଲେ ।

## ବନ୍ୟାବିପନ୍ନଙ୍କ ପାଇଁ ବ୍ୟାକୁଳତା

୧୯୧୮ରେ ପୁରୀ ଜିଲ୍ଲାରେ ମରୁଡ଼ି ପରେ ପରେ ପ୍ରବଳ ବନ୍ୟା ଯୋଗୁଁ ଘୋର ଦୁର୍ଭିକ୍ଷ ପରିସ୍ଥିତି ସୃଷ୍ଟି ହୋଇଥିଲା । ପୁରୀ ଜିଲ୍ଲାର ବାଲିଅନ୍ତା, ଗୋପ ଓ ବାଣପୁର ଅଞ୍ଚଳକୁ ଦୁର୍ଭିକ୍ଷ ଅଞ୍ଚଳ ଘୋଷଣା କରିବାପାଇଁ

ଉତ୍କଳ ସମ୍ମିଳନୀ ପକ୍ଷରୁ ଏକ ବୃହତ୍ ସଭାରେ ଦାବୀ ହୋଇଥିଲା । କିନ୍ତୁ ସରକାର ଉତ୍ତରରେ ଜଣାଇଥିଲେ ଯେ କମିଶନର ଓ କଲେକ୍ଟର ଯଦି ସୁପାରିଶ କରନ୍ତି ତାହାହେଲେ ଦୁର୍ଭିକ୍ଷ ଅଞ୍ଚଳ ଘୋଷଣା କରାଯିବ । କମିଶନର ଗ୍ରୁଣ୍ଡା କଡ଼ର କେତେକ ଅଞ୍ଚଳ ପରିଦର୍ଶନ କରି ଉତ୍କଳ ସମ୍ମିଳନୀର ଦାବୀ ମିଥ୍ୟା ବୋଲି ରିପୋର୍ଟ ଦେଲେ । ଏହା ପରେ ଗୋପବନ୍ଧୁ ସାଧାରଣଙ୍କଠାରୁ ଚାନ୍ଦା ସଂଗ୍ରହ କରି ଲୋକଙ୍କୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ୧୯୨୦ ରେ ବିହାର-ଓଡ଼ିଶା ବିଧାନ ପରିଷଦର ମାର୍ଚ୍ଚ ଅଧିବେଶନରେ ଏହି ପ୍ରଶ୍ନ ଉତ୍ଥାପନ କରିଥିଲେ । ଲୋକେ ବଣରୁ ଯେଉଁ କନ୍ଦମୂଳ, ଶାଗପତ୍ର ଖାଉଥିଲେ ତାହା କାଉନ୍ସିଲରେ ସଦସ୍ୟମାନଙ୍କୁ ଦେଖାଇବା ସଙ୍ଗେ ସଙ୍ଗେ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କ ଅସ୍ଥିକଙ୍କାଳସାର ଫଟୋ ମଧ୍ୟ ପ୍ରଦର୍ଶନ କରିଥିଲେ । ସେତେବେଳେ ଓଡ଼ିଆ ଡିଭିଜନର କମିଶନର ମିଃ ଗ୍ରୁନ୍ଂ କାଉନ୍ସିଲରେ ସରକାରୀ ଦଳର ଏକ୍ସଅଫିସିଓ ସଭ୍ୟ ଭାବରେ ଗୋପବନ୍ଧୁଙ୍କ ବିବୃତିର ଖଣ୍ଡନ କରି ପରିସ୍ଥିତି ସେପରି ଗୁରୁତର ନୁହେଁ ଏବଂ ମାତ୍ର ଦୁଇ ହଜାର ଲୋକ ଏଥିରେ ପ୍ରପୀଡ଼ିତ ହୋଇଛନ୍ତି ବୋଲି ଯୁକ୍ତି ବାଢ଼ି ସେ ନିଜେ ଅବସ୍ଥା ଦେଖି ଆସିଥିବା କଥା ଜଣାଇଥିଲେ । ସେ କହିଥିଲେ ଯେ ବିପନ୍ନ ଲୋକମାନଙ୍କୁ କଲେକ୍ଟର ସାହାଯ୍ୟ କରୁଛନ୍ତି । ଗୋପବନ୍ଧୁ କମିଶନରଙ୍କ ଉକ୍ତିକୁ ଦୃଢ଼ ଭାବରେ ଖଣ୍ଡନ କରି ଦର୍ଶାଇ ଥିଲେ ଯେ ପ୍ରକୃତରେ କମିଶନର ଗ୍ରୁନ୍ଂ ବିପନ୍ନ ଅଞ୍ଚଳକୁ ଯାଇ ନାହାନ୍ତି-ସେ ମାତ୍ର ଗ୍ରୁଣ୍ଡାକଡ଼ରେ ଅଳ୍ପ କେତେକ ଅଞ୍ଚଳ ଦେଖିଛନ୍ତି । ଏହା ପରେ ବିହାର ଓଡ଼ିଶାର ଲେଫ୍ଟନାଣ୍ଟ ଗଭର୍ଣ୍ଣର ଗୋପବନ୍ଧୁଙ୍କ ଉକ୍ତି ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରି ୧୯୨୦ ଅପ୍ରେଲ ୭ ତାରିଖ ଦିନ ବିପନ୍ନ ଅଞ୍ଚଳ ନିଜେ ଦେଖିଯିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ଏବଂ ସେ ପ୍ରତିଶ୍ରୁତି ପାଳନ କରି ବିପନ୍ନ ଅଞ୍ଚଳଗୁଡ଼ିକ ଦେଖିବା ପାଇଁ ଆସିଥିଲେ । ଏହାହିଁ ଥିଲା ଗୋପବନ୍ଧୁଙ୍କ ନିଷ୍ଠାମୂଳ ବ୍ୟକ୍ତିତ୍ୱର ନିଦର୍ଶନ । ଏହା ପରେ ମହାତ୍ମାଗାନ୍ଧୀ ଗୋବିନ୍ଦ ମିଶ୍ରଙ୍କଠାରୁ ଖବର ପାଇ ଠକର ବାପାଙ୍କୁ ଓଡ଼ିଶା ପଠାଇଥିଲେ । (ଏକ ସମୟରେ ଗୋବିନ୍ଦ ମିଶ୍ର ଥିଲେ ଗାନ୍ଧୀଜୀଙ୍କ ଆଶ୍ରମର ଜଣେ ବିଶିଷ୍ଟ ବ୍ୟକ୍ତି ଓ ଗାନ୍ଧୀଜୀଙ୍କର ପରମ ଭକ୍ତ । ଆଜି ଓଡ଼ିଶାରେ ସେ ବିସ୍ମୃତି ଗର୍ଭରେ ଲୀନ ହୋଇ ଯାଇଛନ୍ତି)

## ଅସହଯୋଗର ବାର୍ତ୍ତାବହ

୧୯୨୦ ଜୁଲାଇରେ କଲିକତାଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଅସହଯୋଗ ଆନ୍ଦୋଳନର କାର୍ଯ୍ୟକ୍ରମ ଗୃହୀତ ହୋଇଥିଲା । ପଣ୍ଡିତ ଗୋପବନ୍ଧୁ ଏହି କାର୍ଯ୍ୟକ୍ରମକୁ ଗ୍ରହଣ କରି ଅସହଯୋଗର ବାର୍ତ୍ତା ପ୍ରଚାର କରିବାପାଇଁ ପୁରୀଠାରେ ଜିଲ୍ଲା କଂଗ୍ରେସ କମିଟି ଗଠନ କଲେ । ଏହାପରେ ୧୯୨୦ ଡିସେମ୍ବର ମାସରେ ନାଗପୁରଠାରେ କଂଗ୍ରେସ ଅଧିବେଶନରେ ଅସହଯୋଗ ଆନ୍ଦୋଳନପାଇଁ ପ୍ରସ୍ତାବ ଚୂଡ଼ାନ୍ତ ଭାବରେ ଅନୁମୋଦିତ ହେଲା । ଏହାର କିଛିଦିନ ପରେ ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ଅଧିବେଶନରେ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ, ଆଭିମୁଖ୍ୟ ଓ ନୀତିରେ କେତେକ ମୌଳିକ ପରିବର୍ତ୍ତନ ଆଣି ସମ୍ମିଳନୀକୁ କଂଗ୍ରେସର ନୀତିବାହକ ରୂପେ କାର୍ଯ୍ୟ କରିବାପାଇଁ ଗୋପବନ୍ଧୁ ପ୍ରଭାବିତ କରିଥିଲେ । ଗୋପବନ୍ଧୁଙ୍କ ଆହ୍ୱାନରେ ଓଡ଼ିଶାର ଚାରିଆଡ଼େ ଅସହଯୋଗ ଆନ୍ଦୋଳନରେ ମୁକ୍ତ ସମାଜ ସାଥ ଦେଇଥିଲେ । ଛାତ୍ରମାନେ ସ୍କୁଲ କଲେଜ ପରିତ୍ୟାଗ କଲେ । ଆଇନଜ୍ଞମାନେ ଆଇନ ବ୍ୟବସାୟ ବର୍ଜନ କଲେ । ସାଧାରଣ ଲୋକେ ବିଦେଶୀ ବସ୍ତ୍ର ବର୍ଜନ କଲେ । ଗାଁ ଗଣ୍ଡାରେ ଅ[illegible] ଗୃହୀଲ । ସତ୍ୟବାଦୀ ସ୍କୁଲ ଓ ଚକ୍ରଧରପୁର ସ୍କୁଲକୁ ଜାତୀୟ ସ୍କୁଲରେ ପରିଣତ କରି ଯାଇଥିଲା ।

## ଗାନ୍ଧୀଜୀଙ୍କ ଓଡ଼ିଶା ଆଗମନ

୧୯୨୧ ମାର୍ଚ୍ଚରେ ମହାତ୍ମାଗାନ୍ଧୀ ଓଡ଼ିଶା ଆସିଥିଲେ । ଏହା ଗୋପବନ୍ଧୁଙ୍କ ପ୍ରତି ଗାନ୍ଧୀଜୀଙ୍କ ଶ୍ରଦ୍ଧା ଓ ସମ୍ମାନର ନିଦର୍ଶନ । ଗାନ୍ଧୀଜୀଙ୍କ ଓଡ଼ିଶା ଆଗମନ ଯୋଗୁଁ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ବ୍ୟାପି ଯାଇଥିଲା । ଏହାପରେ ବ୍ରିଟିଶ ଶାସନ କର୍ତ୍ତୃପକ୍ଷ ଗୋପବନ୍ଧୁଙ୍କ ଉପରେ ୧୪୪ଧାରା ଜାରି କରିଥିଲେ ।

## ସତ୍ୟ ହୋଇଥିଲେ ସାଙ୍ଘାତିକ

ପୁରୀ ଜିଲ୍ଲା ବେଗୁନିଆ ଥାନାର ଏକ ଗ୍ରାମର ଜଣେ ସ୍ତ୍ରୀ ଲୋକ ପ୍ରତି ପୁଲିସର ଉଚ୍ଛୃଙ୍ଖଳ ବ୍ୟବହାର ସମ୍ପର୍କରେ ବର୍ଣ୍ଣନା କରି "ସତ୍ୟ ହୋଇଥିଲେ ସାଙ୍ଘାତିକ" ଶିରୋନାମାରେ ଏକ ଲେଖା ପଣ୍ଡିତ ଗୋପବନ୍ଧୁ ୧୯୨୧ ଅଗଷ୍ଟ ୧୩ ତାରିଖ ଦିନ ସମାଜରେ ପ୍ରକାଶ କରିଥିଲେ । ଏହା ପରେ ଭାରତୀୟ ପିଙ୍ଗଲ କୋର୍ଡ଼ର ୫୦୦ଧାରା ଅନୁଯାୟୀ ତାଙ୍କ ବିରୁଦ୍ଧରେ ସରକାରୀ ମକଦ୍ଦମା ହେଲା । ଖୋର୍ଦ୍ଧାର ଡେପୁଟି ମାଜିଷ୍ଟ୍ରେଟ୍ ଶ୍ରୀ ଏସ୍. ଡି. ବୋଷ (ନେତାଜୀ ସୁଭାଷଙ୍କ ନଡ଼ିଭାଇ) ଏହି ମକଦ୍ଦମାର ବିଚାର କରି ଗୋପବନ୍ଧୁଙ୍କୁ ନିର୍ଦ୍ଦୋଷରେ ଛାଡ଼ି ଦେଇଥିଲେ । ସରକାରଙ୍କ ପକ୍ଷରୁ ପାଟଣା ହାଇକୋର୍ଟରେ ମାଜିଷ୍ଟ୍ରେଟଙ୍କ ଏହି ଆଦେଶ ବିରୁଦ୍ଧରେ ଅପିଲ ହେଲା । କିନ୍ତୁ

ହାଇକୋର୍ଟ ମାଜିଷ୍ଟ୍ରେଟଙ୍କ ଆଦେଶକୁ କାଏମ୍ ରଖି ଗୋପବନ୍ଧୁଙ୍କୁ ଦୋଷମୁକ୍ତ ବୋଲି ଘୋଷଣା କରିଥିଲେ । ତେଣୁ ସରକାରୀ କର୍ତ୍ତୃପକ୍ଷଙ୍କ କୋପ ଦୃଷ୍ଟି ଗୋପବନ୍ଧୁଙ୍କ ଉପରେ ଯେ ପଡ଼ିଥିଲା ତା ନୁହେଁ, ମାଜିଷ୍ଟ୍ରେଟ୍ ବୋଷଙ୍କ ଉପରେ ମଧ୍ୟ କର୍ତ୍ତୃପକ୍ଷଙ୍କ ବକ୍ରଦୃଷ୍ଟି ପଡ଼ିଲା । ଏହା ପରେ ଶ୍ରୀ ବୋଷ ଚାକିରିରୁ ଇସ୍ତଫା ଦେଇଥିଲେ ।

## କନିକା ଆନ୍ଦୋଳନ

ଏହି ସମୟରେ କନିକା ଜମିଦାରୀରେ ଖଜଣା ବୃଦ୍ଧି ଓ ବିଭିନ୍ନ ପ୍ରକାର କର ବୃଦ୍ଧି ଯୋଗୁଁ ଲୋକଙ୍କ ମଧ୍ୟରେ ତୀବ୍ର ପ୍ରତିରୋଧ ଭାବ ପ୍ରକାଶ ପାଇଥିଲା । ଲୋକେ ବର୍ଦ୍ଧିତ ହାରରେ ଖଜଣା ଦେବାକୁ ବିରୋଧ କରିଥିଲେ । ରାଜାଙ୍କ ପକ୍ଷରୁ ପୁଲିସ୍ ସାହାଯ୍ୟରେ ନାନା ଅତ୍ୟାଚାର ପ୍ରଜାଙ୍କ ଉପରେ କରାଯାଇଥିଲା । କନିକା ଅତ୍ୟାଚାର ସମ୍ପର୍କରେ ଗୋପବନ୍ଧୁ ବହୁତ ଲେଖା ପ୍ରକାଶ କରିଥିଲେ । ତେଣୁ ତାଙ୍କ ବିରୁଦ୍ଧରେ ମାନହାନି ମକଦମା କରା-ଯାଇଥିଲା । କଟକ ଓ ବାଲେଶ୍ୱର ଜିଲ୍ଲାରେ ସେ କୌଣସି ସଭାରେ ଭାଷଣ ଦେଇ ପାରିବେ ନାହିଁ ବୋଲି ତାଙ୍କ ଉପରେ ନିଷେଧାଦେଶ ଜାରି କରାଯାଇଥିଲା ।

୧୯୨୨ ମଇ ୧୪ ତାରିଖ ଦିନ ସେ ବାଲେଶ୍ୱର ଜିଲ୍ଲା ସମ୍ମିଳନୀରେ ଯୋଗଦେଇ କନିକା ଅତ୍ୟାଚାର ସମ୍ପର୍କରେ ସବିଶେଷ ଅନୁସନ୍ଧାନ ପାଇଁ ପ୍ରସ୍ତୁତ କରିଥିଲେ । ସେଠାରୁ ସେ ଫେରିବା ବାଟରେ ୧୭ ତାରିଖ ଦିନ ଭଦ୍ରଖଠାରେ ଏକ ସଭାରେ ଭାଷଣ ଦେଇଥିଲେ । ଏହା ପରେ ଭଦ୍ରଖର ଏସ୍. ଡି. ଓ. ଙ୍କ ଆଦେଶ ବଳରେ ୧୪୪ ଧାରାରେ ତାଙ୍କୁ ନୋଟିସ୍ କରାଯାଇଥିଲା । କ୍ରିମିନାଲ୍ ଲ ଏମେଣ୍ଡମେଣ୍ଟ ଆଇନର ୧୭ ଧାରା ଅନୁଯାୟୀ କଟକ ଜିଲ୍ଲା ମାଜିଷ୍ଟ୍ରେଟ୍ ଜାରି କରିଥିବା ଆଦେଶବଳରେ ତାଙ୍କୁ ପୁରୀରେ ଗିରଫ କରାଯାଇ କଟକ ଅଣାଯାଇଥିଲା ଏବଂ କଟକରେ ତାଙ୍କର ବିଚାର କରାଯାଇ ତାଙ୍କୁ ଦୁଇ ବର୍ଷ ଅଶ୍ରମ କାରାଦଣ୍ଡ ଏବଂ ଭଦ୍ରଖ ମକଦମାରେ ୬ ମାସ ଅଶ୍ରମ କାରାଦଣ୍ଡ ଦିଆଗଲା । କନିକା ମାନହାନୀ ମକଦମା ବିଚାରାଧୀନ ଥିବା ଯୋଗୁଁ ତାଙ୍କୁ କଟକ ଜେଲରେ ୧୯୨୩ ଜାନୁଆରୀ ୨୪ ତାରିଖ ପର୍ଯ୍ୟନ୍ତ ଅଟକ ରଖାଗଲା । ତା ନ ହେଲେ ରାଜନୈତିକ ବନ୍ଦୀ ଭାବରେ ତାଙ୍କୁ ହଜାରୀବାଗ ଜେଲକୁ ପଠାଯାଇଥାନ୍ତା । ଏହାପରେ କନିକା ରାଜା ମାନହାନୀ ମକଦମା ପ୍ରତ୍ୟାହାର କରି ନେଲେ । କାରଣ ମକଦମା ଚାଲିଲେ ଅତ୍ୟାଚାରର ବହୁତ ତଥ୍ୟ ପ୍ରକାଶ ପାଇବ ବୋଲି ଆଶଙ୍କା କରାଯାଉଥିଲା । ୧୯୨୩ ଜୁଲାଇ ୨୪ ତାରିଖରେ ତାଙ୍କୁ ହଜାରୀବାଗ ଜେଲକୁ ପଠାଗଲା ୧୯୨୪ ଜୁଲାଇ ୨୬ ତାରିଖରେ ସେ ଜେଲରୁ ଖଲାସ ହୋଇ କଟକ ଫେରି ଆସି ସଙ୍ଗେ ସଙ୍ଗେ କଟକଠାରେ ପ୍ରାଦେଶିକ ସମ୍ମିଳନୀରେ ଯୋଗ ଦେଇଥିଲେ । ଏହି ସମ୍ମିଳନୀ ଡାକ୍ତର ପି. ସି. ରାୟଙ୍କ ଅଧ୍ୟକ୍ଷତାରେ ହୋଇଥିଲା ଏବଂ ଏହି ସମ୍ମିଳନୀରେ ଡାକ୍ତର ପି. ସି. ରାୟ ଗୋପବନ୍ଧୁଙ୍କୁ 'ଉତ୍କଳମଣି' ବୋଲି ସମ୍ବୋଧନ କରିଥିଲେ । ଗୋପବନ୍ଧୁ ଉପାଧି ପ୍ରେମୀ ନ ଥିଲେ । ସେ ଉପାଧି ପ୍ରେମୀ ହୋଇଥିଲେ ସରକାରଙ୍କଠାରୁ ଏବଂ ଲୋକଙ୍କଠାରୁ ବହୁ ଉପାଧି ଲାଭ କରି ପାରିଥାଆନ୍ତେ ।

## ଉପାଧି

ଏଠାରେ ଲକ୍ଷ୍ୟ କରିବାର କଥା ଯେ ମଧୁସୂଦନଙ୍କୁ ମଧ୍ୟ ଓଡ଼ିଶାର ଜନସାଧାରଣ ଶ୍ରଦ୍ଧା, ଭକ୍ତି ଓ ସମ୍ମାନର ନିଦର୍ଶନ ସ୍ୱରୂପ 'ଉତ୍କଳ ଗୌରବ' ଉପାଧିରେ ଭୂଷିତ କରିଥିଲେ, କିନ୍ତୁ ବ୍ରିଟିଶ ସରକାର ମଧ୍ୟ ତାଙ୍କୁ ୧୯୦୪ରେ ସି. ଆଇ. ଇ. ଉପାଧିରେ ଭୂଷିତ କରିଥିଲେ । ମଧୁସୂଦନ ସେ କାଳରେ ସରକାରଙ୍କର ଜଣେ ସହଯୋଗୀ ଭାବରେ ଓଡ଼ିଶାର ନିର୍ମାତାରୂପେ କାର୍ଯ୍ୟ କରୁଥିଲେ ।

## ଅସହଯୋଗୀ ଗୋପବନ୍ଧୁ

ଗୋପବନ୍ଧୁ ଥିଲେ ବିଦେଶୀ ସରକାରର ଅସହଯୋଗୀ । ସେ ଦେଶର ସ୍ୱାଧୀନତା ପାଇଁ ବିଦେଶୀ କବଳରୁ ଦେଶର ଜନତାକୁ ମୁକ୍ତ କରିବା ପାଇଁ ସଂଗ୍ରାମ କରୁଥିଲେ । ସେ ଜନତାର ନେତା ଥିଲେ ସତ, କିନ୍ତୁ ସେ ଥିଲେ ପ୍ରକୃତରେ ଜନତାର ସେବକ । ଗୋପବନ୍ଧୁ ଗୀତା ଧର୍ମ ଓ ଗୀତା ତତ୍ତ୍ୱ ଅନୁସାରେ ଥିଲେ ପ୍ରକୃତ ତ୍ୟାଗୀ ପୁରୁଷ । ସେ ଭୋଗ, ସୁଖ ସମ୍ଭୋଗ, ବ୍ୟକ୍ତିଗତ ଜୀବନରେ ଆମୋଦ ଓ ବିଳାସଠାରୁ ବହୁ ଦୂରରେ ଥିଲେ । ସେ ଥିଲେ ଅଶ୍ରମବାଦୀ । ପ୍ରାସାଦରେ ବାସ କରିବା ସୁଖ ସମ୍ଭୋଗ, ବିଳାସମୟ ଜୀବନ ଯାପନ କରିବା ପାଇଁ ତାଙ୍କର ଯଥେଷ୍ଟ ସୁଯୋଗ ଥିଲା । କିନ୍ତୁ ଓଡ଼ିଶାର ଦରିଦ୍ର ଜନତାର ସେ ଥିଲେ ମୂର୍ତ୍ତିମନ୍ତ ପ୍ରତୀକ ।

## ଗାନ୍ଧୀଜୀ ଓ ଗୋପବନ୍ଧୁଙ୍କ ଆଦର୍ଶ

ଗାନ୍ଧୀଜୀ ୧୯୩୧ ଅଗଷ୍ଟ ମାସରେ ଇଂଲଣ୍ଡ ବକିଂହାମ୍ ରାଜପ୍ରାସାଦକୁ ରାଜାଙ୍କ ସହିତ ଚା ଭୋଜିରେ ଯୋଗଦେବା ପାଇଁ ଯେତେବେଳେ ଗଲେ ସେତେବେଳେ ତାଙ୍କର ସେହି ଦୈନନ୍ଦିନ ପୋଷାକ ଅଣ୍ଟୁ ପର୍ଯ୍ୟନ୍ତ ଖଦଡ଼ଲୁଗା ଓ ଚପଲ ପିନ୍ଧି ସେଠାକୁ ଯାଇଥିଲେ । ଗାନ୍ଧୀଜୀଙ୍କୁ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ଏକ ସମୟରେ Half-naked Fakir' ଅର୍ଦ୍ଧ ନଗ୍ନ ଫକୀର ବୋଲି ଆଖ୍ୟା ଦେଇ ତାଙ୍କ ସହିତ ଦେଖାକରିବାକୁ ମନା କରି

ଦେଇଥିଲେ । ସେହି ଅର୍ଦ୍ଧନଗ୍ନ ଫକୀର ବକିଂହାମ୍ ରାଜପ୍ରାସାଦକୁ ଯିବା ବେଳର ଦୃଶ୍ୟ ବର୍ଣ୍ଣନା କରି ଜଣେ ବିଦେଶୀ ଲେଖକ ଲେଖିଯାଇଛନ୍ତି : —

"... ..To the astonishment of a watching British nation, Mahatma Gandhi walked into **Buckingham** palace to take tea with the King Emperor dressed in a loincloth and sandals.. .later, when questioned on the appropriateness of his apparel, Gandhi replied with a smile, the king was wearing enough for both of us" ଗାନ୍ଧିଜୀ ଯେପରି ପୋଷାକ ପରିଚ୍ଛଦ, ଆହାର ବ୍ୟବହାରରେ ସରଳ ଥିଲେ ଓ ଜୀବନର ଆଦର୍ଶରେ ଅଟଳ ରହିଥିଲେ ସେହିପରି ଥିଲେ ଦରିଦ୍ରର ବନ୍ଧୁ ଗୋପବନ୍ଧୁ । ଗାନ୍ଧିଜୀଙ୍କ ଆଖିରେ ଥିଲା ସମଗ୍ର ଭାରତର ଦାରିଦ୍ର୍ୟ ଓ ଅଜ୍ଞାନର କରୁଣଛବି । ଗୋପବନ୍ଧୁଙ୍କ ଆଖିରେ ଥିଲା କେବଳ ଓଡ଼ିଶାର ଦାରିଦ୍ର୍ୟ ଓ ଅଜ୍ଞାନର ଛବି । ମାତ୍ର ଜାତୀୟ ଚେତନାରେ ଗୋପବନ୍ଧୁ ଥିଲେ ମହାତ୍ମାରଗୀୟ ଓ ଗାନ୍ଧୀଜୀଙ୍କ ପରି ଜଣେ ବିଶିଷ୍ଟ ମାନବବାଦୀ ନେତା ।

ଓଡ଼ିଶାକୁ ପୂର୍ଣ୍ଣ ନେତୃତ୍ୱ ଦେବା ଲାଗି ଗୋପବନ୍ଧୁ ବେଶୀ ଦିନ ବଞ୍ଚିନଥିଲେ । ମାତ୍ର ଗୋପବନ୍ଧୁଙ୍କ ଆଦର୍ଶ ହିଁ ଓଡ଼ିଆ ଜାତିର ସର୍ବଶ୍ରେଷ୍ଠ ସମ୍ବଳ ହୋଇ ରହିଛି । ମଧୁସୂଦନ ଓଡ଼ିଆଙ୍କୁ ଦେଇଗଲେ ବଞ୍ଚିବାର ଗୌରବ— ଗୋପବନ୍ଧୁ ଓଡ଼ିଆଙ୍କୁ ଦେଇଗଲେ—ବଞ୍ଚିବାର ଆଦର୍ଶ । ଦୁହେଁ ଆମର ପ୍ରାତଃସ୍ମରଣୀୟ ।

ସମ୍ପାଦକ ଓଡ଼ିଶା ଟାଇମ୍‌ସ
ବୁଦ୍ଧମାଗୌଡ଼, କଟକ



ଗତ ସେପ୍ଟେମ୍ବର ୨୬ ତାରିଖରେ ଦିଲ୍ଲୀରେ ଅନୁଷ୍ଠିତ ହୋଇଥିବା ରାମଲୀଳା ବାଲେର ଶିଳ୍ପୀମାନଙ୍କ ଗହଣରେ ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ

# ସେଇ ଆଦ୍ୟ ଶପଥଟି.....

"କିରେ ! ପାଟିରେ କ'ଣ ମଡ଼ା ଗେଞ୍ଜା ହୋଇଛି ନା ! କେତେ ତତେ ପରେ ଗିରସ୍ତା ପଢ଼ିବା ପାଇଁ, ପୋଥି ନଥା ଦେଲୁ । ରୁ ସ୍ୱାଡୁ ଟ୍ୟା'ଡୁ କ'ଣ ଗୁଡ଼ାଏ ଗାଉଛୁ କରେ ! ବ୍ୟାପ ହାତରେ ପାଠ ହେବନି ।"

ନିର୍ଭୀକ, ନିରାଡ଼ମ୍ବର ବାଳକ ଗୋପବନ୍ଧୁ ଜନ୍ମରୁ ମାତା ସ୍ୱର୍ଣ୍ଣମୟୀଙ୍କୁ ହରାଇ ନିଦ୍‌ଟୋର ହୋଇଯାଇଛନ୍ତି । ପିତା-ଦେବତ ସ୍ୱୟଂ ବିନୋଦବିହାରୀଙ୍କୁ କାଖରେ କାଖେଇ, ମୁଣ୍ଡରେ ମୁଣ୍ଡାଇ ବଙ୍ଗଦେଶରୁ ତାଙ୍କ ଘରକୁ ଆଣିଥିଲେ ପୂଜିବା ପାଇଁ । କୁଆଡ଼େ କନ୍ଦେଇ ସ୍ୱପ୍ନେଇଥିଲେ ତାଙ୍କୁ, ତାଙ୍କ ହାତର ଭୋଗ ସବୁଦିନେ ଖାଇବା ପାଇଁ ମନ ବଳାଇ । ସେଥିରେ ତ ଓଡ଼ିଆ ଭାଗବତ ଶୁଣିବାଇ ତାଙ୍କର ଶ୍ରେୟ ହୋଇଥିଲା । ପିତା ଦୈତ୍ୟାରି ମିଶ୍ରଙ୍କ ସହ ସବୁଦିନ ବଢ଼ାର ମନକୁ ମନ ଭାଗବତ ଯାହା ବୋଲନ୍ତି ଭଗବତ-ପ୍ରେମୀ ବାଳକ ଗୋପବନ୍ଧୁ ପାଖରେ ବସି ତାହା ଶୁଣୁଥାଆନ୍ତି । କି ଅଦ୍ଭୁତ ଶ୍ରବଣ ଶକ୍ତି ଓ ଧୀ-ଶକ୍ତି ! ତହିଁ ଆରଦିନ ଶ୍ନାନ ଗୃଷ୍ଟ ହୋଇ ମୁଆଣ୍ଡ ଗା ମୁଣ୍ଡ ବୃନ୍ଦାଳୀର ନାହକ ଅବଧାନଙ୍କ ପାଖରେ ପହଞ୍ଚି ତାଙ୍କ ପଦ ପୋଥିରେ ଅରେ ଲେଖି ପକାନ୍ତି ଗତ ରାତିରେ ପିତାଙ୍କ ସ୍ୱରରେ ବୋଲାଯାଇଥିବା କେତେକ ଭାଗବତ ପଦ । ଯେଉଁଠାରେ ପଦପାତ ହୁଏ ନାହିଁ ସେଠାରେ ମନ ମଧ୍ୟରୁ ସ୍ୱତଃ ବାହାରି ଆସେ ଉପଯୁକ୍ତ ପଦାବଳୀ । ଅବଧାନଙ୍କ ଏକା ଜିଦ୍, ମୋ ଛାତ୍ର ପିଲାର ପୁଅ ଗିରସ୍ତା ଆଗେ ପଢ଼ିବ । ତା' ହୋଇ ପାରେ ନାହିଁ, ଆଜି ସେଥିପାଇଁ ପିତା ନିକଟରେ ପୁଅ ନାମରେ ବହୁ ଅଭିଯୋଗ ।

× × ×

"ଆରେ କଣ୍ଠ, ଏଥର ଛୁଟିରେ ଆମେ ଯିବାଟି ଦାଦେ ଅପଣଙ୍କ ଗାଁକୁ ? ସେ ପରା କହି ଯାଇଥିଲେ କେବେହେଲେ ନିଶ୍ଚେ ଆସିବାକୁ !"

ଶ୍ରୀ ନୂର ମିଶ୍ର

"ହଁ ମ ହରି ଭାଇନା ! ଆମେ ସମସ୍ତେ ତ ଗାଁକୁ ଯିବା, ଆଉ ସେଉଠୁ ବାଟ କେତେ ଯେ !"

ବି. ଏ. ଛାତ୍ର ଗୋପବନ୍ଧୁ । ଆଗୁଆ ହରିହର ଦାସ ଏଫ୍. ଏ. ଛାତ୍ର । ଦୁହେଁ ଏକା ବୋର୍ଡିଂରେ କଟକରେ ରହୁଥାନ୍ତି । ଆଉ ଦୁହିଁଙ୍କ ଭିତରେ ନିବିଡ଼ ବନ୍ଧୁତ୍ୱ । ଏ ଦୁହିଁଙ୍କଠାରୁ ସାତ ଆଠ ବର୍ଷ ସାନ ପଣ୍ଡିତ ନୀଳକଣ୍ଠ ଦାସ । କଟକରେ ଛାତ୍ରଥିବା ସମସ୍ତଙ୍କ ବ୍ୟକ୍ତିଗତ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଓ ସମସ୍ୟାରେ ଏ ତିନିହେଁ କେହି କାହାକୁ କେବେହେଲେ ଛାଡ଼ି ନାହାନ୍ତି । ସେ ଦିନ ଗୋପବନ୍ଧୁ ଦାସ ହରିହରଙ୍କୁ ଏବଂ କଣ୍ଠକୁ ଛୁଟିରେ ତାଙ୍କ ଗାଁକୁ ଆସିବା ପାଇଁ କହିଥିଲେ । ଏମାନେ ଗୋପବନ୍ଧୁଙ୍କୁ ସଖା ଶ୍ରୀକୃଷ୍ଣ ପରି ଭଲ ପାଉଥିଲେ, ଭକ୍ତି ବି କରୁଥିଲେ । ଗୋପବନ୍ଧୁ ଗାଁରେ ଭାଗବତ ସପ୍ତାହ କରି ଖୁବ୍ ଖ୍ୟାତି ପାଇଥିଲେ । କଣ୍ଠଙ୍କୁ ଏହା ସୁବିଦିତ । ସେ ତେଣୁ ଭାଗବତ ସପ୍ତା କିପରି ହୁଏ ଦେଖିବାକୁ ଆଗ୍ରହୀ ହୋଇଥିଲେ । ଏ ହେଉଛି ୧୯୦୨-୦୩ ମସିହାର ଘଟଣା ।

ବାଲ୍ୟ ବିବାହିତ ଗୋପବନ୍ଧୁଙ୍କର ସେତେବେଳେ ପୁଅଟିଏ ଓ ଝିଅଟିଏ ଥାଆନ୍ତି । ସେ ଗାଁକୁ ଛୁଟିରେ ଆସିଛନ୍ତି । ଠିକ୍ ଦିନ ଦେଖି ହରିହର ଦାସେ ତାଙ୍କର ସାନ ଶଳା ଅନନ୍ତ ମିଶ୍ରଙ୍କ ସହ ନୀଳକଣ୍ଠଙ୍କ ଗାଁରେ ହାଜର । ତିନିହେଁ ମିଳି ଭାର୍ଗବୀ ନଦୀ ଉପରେ ଥିବା ସୁଆଣ୍ଡୋ ଗାଁକୁ ଚାଲିଲେ ଦାସେ ଅପଣେଙ୍କ ସପ୍ତାହ ମଜଲିସ ପାଇଁ ।

ଶ୍ରୀରାମଚନ୍ଦ୍ରପୁର ଗାଁରୁ ସୁଆଣ୍ଡୋ ମାତ୍ର ୫ ମାଇଲ ବାଟ । ତିନିହେଁ ଗପି ଗପିକା ସକାଳୁ ସକାଳୁ ଚାଲିଥାଆନ୍ତି ସୁଆଣ୍ଡୋ ଆଡ଼େ ।

ସୁଆଣ୍ଡୋ ଗାଁ ମୁଣ୍ଡରେ ଭାର୍ଗବୀନଦୀ ଉପରେ ଗାଁ ଦେବତା ନାଗେଶ୍ୱରଙ୍କ ମନ୍ଦିର । ଭାଗବତ ପ୍ରେମୀ ଯୁବକ ଗୋପବନ୍ଧୁ ସକାଳୁ ସକାଳୁ ନିତ୍ୟକର୍ମ ସାରି ଠାକୁରାଣୀଙ୍କ ପାଖରେ ମଠାଟିଏ ପିନ୍ଧି ଚକାପକାଇ ଖେଦୋଏ ଜଗନ୍ନାଥ ଦାସଙ୍କ ଭାଗବତ ପୋଥିଧରି ଅପୂର୍ବ ସ୍ୱରରେ ଗାଇ ଚାଲିଛନ୍ତି ଭାଗବତ । ସେ ଦିନକରି ଭାଗବତ ସରିଲେ ଯାଇଁ ହବିଷାନ୍ନ ଭୋଜନ କରି ମନ୍ଦିରରେ ହିଁ ବିଶ୍ରାମ ନେବାକୁ ହେବ ।

ସମାଜ ରକ୍ଷଣଶୀଳ ! ଓଡ଼ିଆ ଜଗନ୍ନାଥ ଦାସଙ୍କ ଭାଗବତ ପୁଣି ଘରେ ପଢ଼ାହେବ ! ଓଡ଼ିଆ ବ୍ରାହ୍ମଣ ପୁଣି ଏହାକୁ ଅନୁକୃତ କରିବ ? ଅସମ୍ଭବ ! ଗାଁ ଲୋକେ ତାହା କଦାପି କରାଇଦେବେ ନାହିଁ । ତେଣୁ ତାଙ୍କୁ ତାଙ୍କର ଓଡ଼ିଆ ଭାଷାର ପ୍ରଣୀତ ପୋଥି ପଢ଼ିବାକୁ ହୋଇଥାଏ ଏକାନ୍ତରେ, ଆଉ ଘର, ତଥା ଗାଁ ବାହାରେ । ସେଥିଁ ସାତଦିନ ଭାଗବତ ପଢ଼ା ହେବ ତହିଁ ମଧ୍ୟରେ ସ୍ତ୍ରୀ ସଂସର୍ଗ ବାରଣ । ମାତ୍ର ଏକବେଳେ ହବିଷ୍ୟ କରି ଏକନିଷ୍ଠ ଭାବେ ଭାଗବତ ପଢ଼ିବା ଗୋପବନ୍ଧୁଙ୍କ ଅଭିଳାଷ । ତେଣୁ ତାଙ୍କୁ ସେହି ସାତଦିନ ମନ୍ଦିରରେ ହିଁ ରହିବାକୁ ହୋଇଥାଏ । ଯୁବକଟିଙ୍କ ଏକନିଷ୍ଠ ଭାଗବତ ପ୍ରେମ ! !

ହରିହର, ନୀଳକଣ୍ଠ ଓ ଅନନ୍ତ ତିନିହେଁ ନାଗେଶ୍ୱର ମନ୍ଦିରରେ ପହଞ୍ଚି ଦାସେ ଅପଣଙ୍କ ଅଦ୍ଭୁତ ସ୍ୱର ଲହରୀ ଶୁଣି ତଟସ୍ଥ ହୋଇ ରହିଗଲେ । ବାଲେଶ୍ୱର ଚନ୍ଦ୍ରା-ଘାଟରୁ ଯାହା ଚନ୍ଦ୍ରକା ଥିଲା ମନ୍ଦିର ମାଳାଙ୍କ ଅଭ୍ୟାଗତ ସତ୍କାର କଲେ । ଏମାନେ କିନ୍ତୁ ମନେମନେ ଗୁରୁରୂପେ ବରଣ କରିଥିବା ଗୋପବନ୍ଧୁଙ୍କ ତାଙ୍କ ପ୍ରକୃତ ଗୁରୁ ରୂପରେ ଦେଖି ଆତ୍ମହରା ହୋଇଯାଇଥାଆନ୍ତି ।

ଉପରବେଳା, ସଂଧ୍ୟା ହେବାକୁ ପ୍ରହରେ ବାକିଅଛି, ସେ ଦିନର ଭାଗବତ ପଢ଼ା ସରିଲା ଗୋପବନ୍ଧୁଙ୍କର । ପୋଥିକୁ ମୁଣ୍ଡିଆ ମାରି ରଖି ସେ ହସି ହସି ଅଭ୍ୟର୍ଥନା କଲେ ନିଜର ଅନୁଜପ୍ରତିମ ସଖାମାନଙ୍କୁ । ଖୁବ୍ ହସ ଖୁସିରେ ଉଆଁଭାତ, ଡାଲି ଓ ହବିଷ୍ୟ ତରକାରି କଦଳୀପତ୍ର ମାନଙ୍କରେ ବଢ଼ାଗଲା । ଖିଆ ଆରମ୍ଭ !

ସମସ୍ତେ ବ୍ରାହ୍ମଣ । ସେ ସମୟରେ ବଡ଼ ହୋଇଥିବା ବ୍ରାହ୍ମଣ ପୁଅ ପୁଣି ଚଡ଼ୁ ନ କରି ଅନ୍ନସେବନ କରିବ ? ଏମାନେ ଚଡ଼ୁ କରିବାକୁ ପାଣି ମଗାଉଛନ୍ତି ଏଇ ସମୟରେ ଦାସେ ଅଧଣେ ବାରଣ କଲେ । ଭାଗବତ ପାରାୟଣରେ ଭୋଗ ଲାଗିଥିବା ଅନ୍ନ ତାଙ୍କ ମତରେ ମହାପ୍ରସାଦ ସଦୃଶ ପବିତ୍ର । ଏହାକୁ କ'ଣ ଚଡ଼ୁ କରାଯାଏ ? ଭଗବାନ ତ ସ୍ୱୟଂ ଆଗରୁ ପାଇ ସାରିଛନ୍ତି ।

ପ୍ରତ୍ୟେକ ସମୟରେ ରକ୍ଷଣଶୀଳ ପ୍ରତି ସଂସ୍କାର । ଦାସେ ଆପଣଙ୍କୁ ତ କେହି କିଛି କହି ପାରିଲେନି, କିନ୍ତୁ ଯାହା ଖାଇଲେ ସେ ଖାଦ୍ୟ ଅପକ୍କକମାନଙ୍କ ପେଟକୁ ନ ଯାଇ ଅଧ ବାଟରେ କେଉଁଠି ରହି ଯାଇଥାଏ । କିନ୍ତୁ ସେଥିପ୍ରତି ଗୋପବନ୍ଧୁଙ୍କର ଦୃଷ୍ଟି ନ ଥାଏ । ଅଯଥା ରକ୍ଷଣଶୀଳତାକୁ ସମାଜରୁ ହଟାଇବାକୁ ପଡ଼ିବ । ଅସ୍ପୃଶ୍ୟ ଜଗନ୍ନାଥ ଦାସଙ୍କ ଭାଗବତକୁ ଉଦାର, ନିଷ୍କପଟ ଦୃଷ୍ଟିରେ ଦେଖି ତାକୁ ଆମ ସମସ୍ତଙ୍କୁ ଜଣେ ଓଡ଼ିଆର କୃତି ବୋଲି ମଣି ଗ୍ରହଣ କରିବାକୁ ପଡ଼ିବ । ଜାତିଭେଦ ପ୍ରଥା ହିଁ ଆମ ଦେଶ ଜାତିର କାଳ । ଏ ସବୁଠାରୁ ହିନଭାବ ଆଉ ନାହିଁ । ହିନ୍ଦୁ ସମାଜକୁ ଏ ସବୁକୁ ଦୂର କରିବାକୁ ବିଂଶବର୍ଷ ତଳେ ବି ସେ ସେମିତି ବଦ୍ଧପରିକର ଥିଲେ ! ଧନ୍ୟ ଗୋପବନ୍ଧୁ ! ଧନ୍ୟ ତୁମର ବିଶ୍ୱାସ !

ବିଲୁଅଙ୍କ ବିକଟାଳ ରଡ଼ି ! କେଁ କାଁ କେଁ ଭା ଶବ୍ଦ ମଝିରେ ମଝିରେ କାନ ଅସ୍ଥିର କରି ଦେଉଥାଏ । ଶାଗୁଣା ମାନଙ୍କ ଖେଁଚେରେ ଖେଁଚେରେ ଶବ୍ଦ ଦାମ୍ଭିକ ହୃଦୟରେ କ୍ଷଣକେ ପାଇଁ ଭୟ ଓ ସଂଶୟ ସୃଷ୍ଟି କରି ଦେଉଥାଏ ।

ଭାର୍ଗବୀ ନଦୀ ବନ୍ଧର ଜାଗେଶ୍ୱରୀ ମନ୍ଦିରଠୁ କିଛି ବାଟ ବନ୍ଧ ଉପରେ ଉପରେ ଗଲେ ସେ ଯେଉଁ ଝଙ୍କାଳିଆ ବରଗଛଟି ଦେଖାଯାଏ ତାହାରି ଅନତି ଦୂରରେ ନଈବାଲି ହୋଇଥାଏ ବଳପୁର ଗାଁର ଶ୍ମଶାନ । ବଳପୁର ସୁଆଣ୍ଡୋର ପାଖ ଗାଁ । ବଳପୁରରେ ହଇଜା ମଡ଼କ ପଡ଼ିଛି । ଘଡ଼ିଏ ଘଡ଼ିଏ ଅନ୍ତରରେ ମଡ଼ା ବୁହା ଚାଲିଛି ଶ୍ମଶାନକୁ । କିଏ ପୋଡୁଛି, କିଏ କିଏ ଦରପୋଡା ଛାଡ଼ି ଚାଲି ଯାଉଛି । ସଂଧ୍ୟା ପବନରେ ମଡ଼ା ବୁହା ଲୁଗା ଇତଃସ୍ତତ ଉଡ଼ିବାବେଳେ ମଡ଼ା ଖୁମ୍ପୁଥିବା ଶାଗୁଣା ଗୁଡ଼ିକ ଚମକି ପଡ଼ି ଖେଚେରେ ଖେଚେରେ ବିକଟାଳ ଶବ୍ଦ କରୁଛନ୍ତି । ବିଲୁଆମାନେ ତ ଭୋଜିରେ ବ୍ୟସ୍ତ ।

ଗୋପବନ୍ଧୁ ତାଙ୍କର ତିନି ଆତ୍ମୀୟଙ୍କୁ ନେଇ ସନ୍ଧ୍ୟାରେ ବୁଲି ବୁଲିକା ଆସି ଏଇ ବରଗଛ ମୂଳରେ ବସିଗଲେ । ତିନି ସହଚର ତାଙ୍କ ପାଖରେ ବି ମନ୍ତ୍ରମୁଗ୍ଧ ପରି ଉପ-ନିବେଶିତ । ସଂଧ୍ୟାବେଳେ ଜହ୍ନ ଉଠି ଭାର୍ଗବୀ ନଦୀ ଜଳଧାରାରେ ନାଚି ନାଚିକା ଅରି ପାଖକୁ ଚାଲି ଗଲେଣି । କୁଆଡୁ ଟୋକେ ବୃହତ୍ ଚଲାବାଦଲ ଜହ୍ନକୁ ଲୁଚାଇ ସଂସାରକୁ ଅନ୍ଧକାରମୟ କରି ଦେବ ବୋଲି ବସିଥାଏ । ନଡ଼ିଆ ଚେପେଡା ଉପରେ ବାପେ ଆପଣେ ଗମ୍ଭୀର ହୋଇ ବସି ଅନ୍ଧାରରେ ଅନ୍ୟ ତିନି ସଙ୍ଗୀଙ୍କୁ ଦେଖିବାରେ ଲାଗି ଥାଆନ୍ତି । ଜନ୍ତୁ ଜାନ୍ତାଙ୍କ ଶବ୍ଦରେ ପ୍ରଥମେ ପ୍ରଥମେ ଆଗନ୍ତୁକମାନଙ୍କୁ ଡ଼ର ମାଡୁଥାଏ । କିନ୍ତୁ ଗୋପବନ୍ଧୁଙ୍କ ସୌମ୍ୟ ଗମ୍ଭୀର ନିର୍ଭୀକ ମୂର୍ତ୍ତି ପାଖରେ ଥିବାରୁ ଡ଼ର ବି ସେମାନଙ୍କୁ ଛାଡ଼ି ପଳାଇ ଯିବାକୁ ବାହାରିଥାଏ ।

ନଦୀ ବନ୍ଧରେ ବୁଲୁଥିବା ସମୟରେ ଗୋପବନ୍ଧୁ ତାଙ୍କର ଏନୁକ ପ୍ରଥମ ସଙ୍ଗୀମାନଙ୍କୁ ନାନା ପ୍ରକାର ଗପ କହି କହି ଏ ଯାଏଁ ଆଣିଥାଆନ୍ତି । ଗପ ମାଧ୍ୟମରେ ଦେଶର ପରିସ୍ଥିତି, ଜାତିର ପରିସ୍ଥିତି, ଭାଷାର ପରିସ୍ଥିତି, ଧର୍ମ, ରକ୍ଷଣଶୀଳତା, କବିତା, ଆଉ ଆଉ କେତେକଥା ହୋଇ ଚାଲିଥାଏ । ଏଠାରେ ସହସ୍ର କଣ୍ଠ ନୀରବ ରହି ପୁଣି ଗୋପବନ୍ଧୁ ତାଙ୍କର ଗପ ଆରମ୍ଭ କଲେ । ଗୋପବନ୍ଧୁ ଥରେ ଗପ ଆରମ୍ଭ କଲେ ବାଟରେ ଯାଉଥିବା ଲୋକ ବି କ୍ଷଣେ ଠିଆହୋଇ କଥା ନ ସରିବା ପର୍ଯ୍ୟନ୍ତ ଶୁଣିବାକୁ ଅଟକି ଯାଏ । ସମ୍ଭବତଃ ଏମାନେ ତ ତାଙ୍କଠୁ ଶୁଣିବା ପାଇଁ ଆସିଛନ୍ତି । ସଂଧ୍ୟା କ୍ରମେ ରାତି ହେଲା । ରାତି ମଧ୍ୟ ସକାଳ ହୋଇଗଲା । ଏକନିଷ୍ଠ ଭାବେ ସମସ୍ତେ ଧ୍ୟାନମଗ୍ନ ପରି ବସିଥାନ୍ତି । ପୂର୍ବ ଆକାଶରେ ସୁନ୍ଦର ଫାଟିଲା । ଚାରିଆଡ଼ ଆଲୁଅ ଦେଖାଗଲା । ସମସ୍ତେ ଉଠିଲେ ଭାର୍ଗବୀ ପାଣି ଆଡ଼କୁ । ମୁହଁ, ଗୋଡ ହାତ ଧୋଇ ମନ୍ଦିର ଅଡ଼େ ଯିବେ ।

ଠିକ୍ ଆଞ୍ଜୁଳେ ଆଞ୍ଜୁଳେ ଭାର୍ଗବୀ ପାଣି ଉଠାଇ ସମସ୍ତେ ତନ୍ମାଚ୍ଛନ୍ନ ଓ ବିହ୍ୱଳ ଭାବେ ମୁହଁ ଆଡ଼କୁ ନେଉଛନ୍ତି— ଏଇ ସମୟରେ ଆଞ୍ଜୁଳେ ପାଣି ହାତରେ ଧରି, ଭାର୍ଗବୀର ପାଣିରେ ଦୁଇ ଗୋଡ଼ ବୁଡାଇ ଅଣ୍ଟାଏଙ୍କି ଠିଆ ହୋଇଥିବା ଗୋପବନ୍ଧୁ ଧୀରସ୍ଥିର ସ୍ୱରରେ କହି ଉଠିଲେ —

"ଚାଲ ହରିହର ! ଆଜି ମାତା ଭାର୍ଗବୀ ବୁକୁରେ ଠିଆ ହୋଇ ଆମେ ଚାରିଜଣ ଶପଥ ନେବା !"

ହଠାତ୍ ଗୋପବନ୍ଧୁଙ୍କ ଏ କଥା ଶୁଣି ତନ୍ମୟ ଶ୍ରୋତା-ମାନେ କ୍ଷଣେ ବାକ୍ରୁଦ୍ଧ ହୋଇ ଠିଆହୋଇଗଲେ । ଗୋପବନ୍ଧୁ ସମସ୍ତଙ୍କୁ ଥରେ ଚାହିଁ ଦେଇ କହିଲେ —

"ଶପଥ କର ନୀଳକଣ୍ଠ, ହରିହର, ଅନନ୍ତ ! ଜନ୍ମ-ବେଳେ ଦେଶକୁ ଯାହା ଦେଖିଥାଇଁ ତା'ଠାରୁ ଉନ୍ନତ ଦେଖି ମରିବା । ଆମେ ପାଠପଢ଼ି ସରକାରୀ ଚାକିରୀ କରିବା ନାହିଁ, ଦେଶ ପାଇଁ କିଛି କରିବା ।"

ସଙ୍ଗେ ସଙ୍ଗେ ପ୍ରତିଜ୍ଞା କରାଗଲା । ନଦୀ ବକ୍ଷରେ ଚାରିବାର ତିନି ତିନି ଆଞ୍ଜୁଳା ଜଳ ନିକ୍ଷେପ କରାଗଲା । ସେହି-ଦିନୁ କଥା ରହିଗଲା—ଅଭୁଲା ସେ ଭାର୍ଗବୀ ପ୍ରତିଜ୍ଞା ।" ଅଦ୍ଭୁତ ମଧ୍ୟ ସେହି ମାହେନ୍ଦ୍ର ମୁହୂର୍ତ୍ତଟି !

ବାଲୁ ବଜାର, କଟକ—୨

# ଓଡ଼ିଶାରେ ଗାନ୍ଧୀନୀତିର ପ୍ରବର୍ତ୍ତକ

# ଗୋପବନ୍ଧୁ

ଶ୍ରୀ ବଳରାମ ମହାନ୍ତି

ମହାତ୍ମାଗାନ୍ଧୀ ଭାରତବାସୀଙ୍କୁ ସ୍ୱାଧୀନତା ସଂଗ୍ରାମରେ ନେତୃତ୍ୱ ଦେବା ପୂର୍ବରୁ ସ୍ୱାଧୀନତା ସଂଗ୍ରାମର ସୈନିକମାନଙ୍କୁ ବ୍ୟକ୍ତିଗତ ତାଲିମ କରାଇଥିଲେ । ସେଥିପାଇଁ ପ୍ରତ୍ୟକ୍ଷ ସଂଗ୍ରାମ ନିରବଚ୍ଛିନ୍ନ ଭାବରେ ଚାଲୁନଥିଲା । ପର୍ଯ୍ୟାୟକ୍ରମେ ଏହା ଚାଲୁଥିଲା ଏବଂ ମଝିରେ ମଝିରେ ବନ୍ଦ ହେଉଥିଲା । ଏହି ସଂଗ୍ରାମ ଥିଲା ସଶସ୍ତ୍ର ସଂଗ୍ରାମଠାରୁ ସମ୍ପୂର୍ଣ୍ଣ ଭିନ୍ନ, ସଶସ୍ତ୍ର ସଂଗ୍ରାମ ନିରବଚ୍ଛିନ୍ନ ଭାବରେ ଅନେକକାଳ ଲାଗିରହେ ଏବଂ ସେଥିରେ ଗୋଟିଏ ପକ୍ଷର ବିଜୟ ହୁଏ ଏବଂ ଅପର ପକ୍ଷ ପରାସ୍ତ ହୁଏ । ତା'ପରେ ସଂଗ୍ରାମର ଅବସାନ ଘଟେ । ମାତ୍ର ମହାତ୍ମାଗାନ୍ଧୀ ଏ ଦେଶବାସୀଙ୍କୁ ନେଇ ଏକ ଅଭିନବ ସଂଗ୍ରାମ ଆରମ୍ଭ କରିଥିଲେ । ଯେଉଁ ସଂଗ୍ରାମ ଏକାଦିକ୍ରମେ ଅନେକଦିନ ଲାଗିରହି ଶେଷ ହୋଇପାରିବାର ନୁହେଁ । କେବଳ ଆତ୍ମଶକ୍ତି ବଳରେ ଗୋଟାଏ ନିରସ୍ତ୍ର ଜାତିକୁ ନେଇ ସେହି ସଂଗ୍ରାମ ଚାଲିଥିଲା । ତେଣୁ ସେହି ସଂଗ୍ରାମର ସୈନିକମାନଙ୍କୁ ସଶସ୍ତ୍ର ସଂଗ୍ରାମର ସୈନିକମାନଙ୍କଠାରୁ ଅଧିକ କଠୋର ତାଲିମ ନେବାକୁ ପଡୁଥିଲା । ଏହିଭଳି ତାଲିମପାଇଁ ଗାନ୍ଧିଜୀ କେତେଗୁଡ଼ିଏ ରଚନାତ୍ମକ ବା ଗଠନମୂଳକ କାର୍ଯ୍ୟକ୍ରମ ଦେଶବାସୀଙ୍କ ଆଗରେ ଉପସ୍ଥାପିତ କରିଥିଲେ ଓ ସେଥିରେ ଅଗଣିତ କର୍ମୀଙ୍କୁ ତାଲିମ ଦିଆଯାଇଥିଲା । ସେ ଜାଣିଥିଲେ ଯେ ଅସଂଗଠିତ ଗୁଡ଼ିଏ ଲୋକଙ୍କୁ ନେଇ ଗୋଟିଏ ଦୁର୍ଦ୍ଧର୍ଷ ଶକ୍ତି ବିରୁଦ୍ଧରେ ଲଢ଼ି ସେମାନଙ୍କୁ ହଟାଇବା ସମ୍ଭବ ନୁହେଁ ।

ମହାତ୍ମା ଗାନ୍ଧୀ ଦୃଢ଼ଭାବରେ ଉପଲବ୍ଧି କରିଥିଲେ ଯେ ଆମ ଦେଶରେ ବନ୍ଧନଭାବରେ ଯେଉଁ ସଙ୍କୀର୍ଣ୍ଣତା, ଆଞ୍ଚଳିକତା, ଅସ୍ପୃଶ୍ୟତା ଜାତିଭେଦପ୍ରଥା ରହିଛି ତାହା

ଦୂର ନ ହେଲେ ଦେଶବାସୀ ଏକମନ ଓ ଏକପ୍ରାଣ ହୋଇ ଆଜି ସ୍ୱାଧୀନତା ସଂଗ୍ରାମରେ ଆନ୍ତରିକତା ସହ ଯୋଗ ଦେବେ ନାହିଁ । ସେମାନେ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ପାରିବେ ନାହିଁ । ସେଥିପାଇଁ ସେ ଯେଉଁ ରଚନାତ୍ମକ କାର୍ଯ୍ୟକ୍ରମ ଉପସ୍ଥାପିତ କରିଥିଲେ ସେଥିରେ ଏହିଭଳି ଅଞ୍ଚଳକତା, ସଙ୍କୀର୍ଣ୍ଣତା ଅସ୍ପୃଶ୍ୟତା ତଥା ଜାତିଗତ ଭେଦଭାବ ବିରୁଦ୍ଧରେ ଜନମତ ସଂଗଠନ କରିବାକୁ ଚାହିଁଥିଲେ । ଭାରତର ବିଭିନ୍ନ ପ୍ରାନ୍ତର କେତେକ ବିଶିଷ୍ଟ ପରୀକ୍ଷିତ ଜନନାୟକଙ୍କୁ ସେ ଏଥିପାଇଁ ବାଛିଥିଲେ । ବିଶିଷ୍ଟ ନିଷ୍ଠାପର ଦେଶପ୍ରେମୀଙ୍କ ଉପରେ ସେ ଏହି ବିରାଟ ଦାୟିତ୍ୱ ନ୍ୟସ୍ତ କରିଥିଲେ । ଏହି ଉଦ୍ଦେଶ୍ୟରେ ଗାନ୍ଧିଜୀ ଓଡ଼ିଶା ପାଇଁ ଉତ୍କଳମଣି ଗୋପବନ୍ଧୁଙ୍କୁ ବାଛିଥିଲେ ।

## ସ୍ୱାଧୀନତା ସଂଗ୍ରାମକୁ ସତ୍ୟବାଦୀ ବନ ବିଦ୍ୟାଳୟର ଅବଦାନ

ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ନେବା ପୂର୍ବରୁ ଉତ୍କଳମଣି ଗୋପବନ୍ଧୁ ନିଜକୁ, ନିଜର ବହୁ ବିଶିଷ୍ଟ ସହଯୋଗୀ ଯୁବକମାନଙ୍କୁ ଏଥିପାଇଁ ପ୍ରସ୍ତୁତ କରିଥିଲେ । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତରେ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେବାର ଦଶ ବର୍ଷ ପୂର୍ବରୁ ଗୋପବନ୍ଧୁଙ୍କ ଉଦ୍ୟମରେ ସତ୍ୟବାଦୀ-ଠାରେ ଯେଉଁ ବନ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା ତାହାହିଁ ଥିଲା ଜାତୀୟ ସଂଗ୍ରାମ ପ୍ରସ୍ତୁତିପାଇଁ ପ୍ରଶସ୍ତ କ୍ଷେତ୍ର । ଗୋପବନ୍ଧୁ କୌଣସି ଜାଣିଶୁଣି ସତ୍ୟବାଦୀକୁ ଏହି ବିଦ୍ୟାଳୟ ସ୍ଥାପନପାଇଁ ବାଛିଥିଲେ । ସତ୍ୟବାଦୀ ସେତେବେଳେ ରକ୍ଷଣଶୀଳ ବ୍ରାହ୍ମଣ ସମାଜର କେନ୍ଦ୍ରସ୍ଥଳ ଥିଲା ତେଣୁ ଏଠା ରକ୍ଷଣଶୀଳତା, ଅସ୍ପୃଶ୍ୟତା ଓ ଜାତିଭେଦ ବିରୁଦ୍ଧରେ ସଂଗ୍ରାମ ଘୋଷଣାପାଇଁ ଉପଯୁକ୍ତ କ୍ଷେତ୍ର ହେବ ବୋଲି ସେ ଜାଣିଥିଲେ । ତାଙ୍କ ସହଯୋଗୀରୂପେ ସେ ବାଛିଥିଲେ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର ଓ ଆଚାର୍ଯ୍ୟ ହରିହର ଦାସ ପ୍ରମୁଖଙ୍କୁ— ସେମାନେ ସେତେବେଳେ ଓଡ଼ିଶାର ବିଶିଷ୍ଟ ବୁଦ୍ଧିଜୀବୀ ଓ ବିଦ୍ୱାନ୍ ଭାବରେ ସମ୍ମାନିତ ବ୍ୟକ୍ତି ଥିଲେ ଏବଂ ସେମାନେ ସେହି ରକ୍ଷଣଶୀଳ ସମ୍ପ୍ରଦାୟରୁ ଆସିଥିଲେ । ତେଣୁ ସେହିମାନଙ୍କ ସହଯୋଗରେ ରକ୍ଷଣଶୀଳତା, ସଙ୍କୀର୍ଣ୍ଣତା, ଅସ୍ପୃଶ୍ୟତା ତଥା ଜାତିଗତ ଭେଦଭାବ ବିରୁଦ୍ଧରେ ସଂଗ୍ରାମ ଚଳାଇବାପାଇଁ ସେମାନେ ହିଁ ଥିଲେ ଯଥାର୍ଥରେ ଉପଯୁକ୍ତ ବ୍ୟକ୍ତି ।

ସତ୍ୟବାଦୀ ବନ ବିଦ୍ୟାଳୟ ଯାହାକି ପରେ ଭାରତର ଜାତୀୟ ସଂଗ୍ରାମବେଳେ ଦେଶରେ ଅନ୍ୟତମ ଜାତୀୟ ବିଦ୍ୟାଳୟରେ ପରିଣତ ହୋଇଥିଲା, ସେଠାରେ କୌଣସି ରକ୍ଷଣଶୀଳତା, ଅସ୍ପୃଶ୍ୟତା ତଥା ଜାତିଭେଦର ସ୍ଥାନ ନ ଥିଲା । ତେଣୁ ଭାରତରେ ଅସହଯୋଗ ଆନ୍ଦୋଳନ ପୂର୍ବରୁ ଦେଶରେ ଯେଉଁ ଦେଶପ୍ରେମ ଓ ଜାତୀୟତାର ପ୍ରବାହ ଆରମ୍ଭ ହୋଇଥିଲା, ଗୋପବନ୍ଧୁ ତହିଁରେ ଉଦ୍‌ବୁଦ୍ଧ ହୋଇ ଏହି ବନ ବିଦ୍ୟାଳୟ ଜରିଆରେ ହିଁ ସମଗ୍ର ଓଡ଼ିଶାବାସୀଙ୍କୁ ଉଦ୍‌ବୁଦ୍ଧ କରିଥିଲେ । ଏହି ଜାତୀୟ ବିଦ୍ୟାଳୟରୁ ଯେଉଁ ଛାତ୍ରମାନେ ଉତ୍ତୀର୍ଣ୍ଣ ହୋଇଥିଲେ ସେମାନେ ପରବର୍ତ୍ତୀ ଜୀବନରେ ରାଜନୀତି କ୍ଷେତ୍ରରେ, ସାମାଜିକ ସେବା କ୍ଷେତ୍ରରେ, ଶିକ୍ଷା ଓ ପ୍ରଶାସନିକ କ୍ଷେତ୍ରରେ ଦକ୍ଷତା, ଯୋଗ୍ୟତା ଓ ବ୍ୟକ୍ତିଗତ ନିଷ୍ଠାର ଦୃଷ୍ଟାନ୍ତ ହୋଇଛନ୍ତି ।

ସର୍ବୋପରି ସ୍ୱାଧୀନତା ସଂଗ୍ରାମର ସୈନିକମାନଙ୍କ ପାଇଁ ମହାତ୍ମା ଗାନ୍ଧୀ ଯେଉଁ ଗଠନମୂଳକ କାର୍ଯ୍ୟକ୍ରମ ପ୍ରବର୍ତ୍ତନ କରିଥିଲେ ଏବଂ ସେଥିରେ ସେମାନଙ୍କୁ ତାଲିମ କରିବାପାଇଁ ତାଲିମ କେନ୍ଦ୍ରମାନ ସ୍ଥାପନ କରାଯାଇଥିଲା ତାର ଦଶ ବର୍ଷ ପୂର୍ବରୁ ଏହି ଗଠନମୂଳକ କାର୍ଯ୍ୟକ୍ରମର ମୌଳିକ ନୀତି ଉପରେ ଉତ୍କଳମଣି ଗୋପବନ୍ଧୁ ସତ୍ୟବାଦୀ ବନ ବିଦ୍ୟାଳୟକୁ ଏକ ତାଲିମ ଅନୁଷ୍ଠାନ ଭଳି ପରିଚାଳନା କରିଥିଲେ । ଏଠାରେ ସ୍ୱାଧୀନତା ସଂଗ୍ରାମ ପାଇଁ କ୍ଷେତ୍ର ପ୍ରସ୍ତୁତ କରାଯାଇଥିଲା । ଏହାର ପ୍ରଭାବ ସମଗ୍ର ଓଡ଼ିଶାର ବୁଦ୍ଧିଜୀବୀମାନଙ୍କୁ ପ୍ରଭାବିତ କରିଥିଲା । ଏହି ବନ ବିଦ୍ୟାଳୟ ପରିଚାଳନା ସହଜ ବ୍ୟାପାର ନଥିଲା । ଏଥିପାଇଁ ଗୋପବନ୍ଧୁ ତଥା ତାଙ୍କ ସହକର୍ମୀମାନଙ୍କୁ ରକ୍ଷଣଶୀଳ ତଥା ବ୍ରିଟିଶ ଶାସନର ସମର୍ଥକମାନଙ୍କଠାରୁ ବହୁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥିଲା । କିନ୍ତୁ ସେହି ବାଧାବିଘ୍ନ ସେମାନଙ୍କୁ ନିରୁତ୍ସାହିତ ନକରି ଅଧିକ ଶକ୍ତି ଓ ସାହସ ଦେଇଥିଲା ।

## ଗୋପବନ୍ଧୁ ଓ ମଧୁସୂଦନ

ଗୋପବନ୍ଧୁ ସତ୍ୟବାଦୀ ବନ ବିଦ୍ୟାଳୟରେ ଜାତୀୟ ସଂଗ୍ରାମ ପାଇଁ ଯେତେବେଳେ କ୍ଷେତ୍ର ପ୍ରସ୍ତୁତ କରୁଥିଲେ ଓଡ଼ିଶାର ଅନ୍ୟତମ ବରପୁତ୍ର କୁଳବୃଦ୍ଧ ମଧୁସୂଦନଙ୍କ ସାଧନା ସେ ସମୟରେ ତାଙ୍କ କାର୍ଯ୍ୟର ପରିପୂରକ ହୋଇଥିଲା । ଭାରତର ଅନ୍ୟାନ୍ୟ ଅଞ୍ଚଳପରି ଓଡ଼ିଶାର ମୃତପ୍ରାୟ ବିଖ୍ୟାତ କୁଟୀରଶିଳ୍ପଗୁଡ଼ିକୁ ଉଦ୍ଧାର କରିବା ନିମନ୍ତେ ମଧୁସୂଦନଙ୍କ ଅବିଶ୍ରାନ୍ତ ଉଦ୍ୟମ ଓଡ଼ିଶାରେ, ଜାତୀୟତା ଓ ଦେଶପ୍ରେମର ପ୍ରବାହ ଖେଳାଇଦେଇଥିଲା । ମଧୁସୂଦନ ନିଜେ ଏକ ଜୋତା କାରଖାନା ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ତାରକସି କାମ, ଶିଙ୍ଗ କାମ ଓ ହସ୍ତତନ୍ତ୍ରର ପୁନରୁଦ୍ଧାର ଓ ପ୍ରଚାର ନିମନ୍ତେ ଉଦ୍ୟମ କରିଥିଲେ । ମହାତ୍ମା ଗାନ୍ଧୀଙ୍କ ଗଠନମୂଳକ କାର୍ଯ୍ୟକ୍ରମର ଏହା ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ । ଓଡ଼ିଆ ଭାଷାର ବିକାଶ ନିମନ୍ତେ ଗୋପବନ୍ଧୁ ଓ ମଧୁସୂଦନ ଓଡ଼ିଶାବାସୀଙ୍କୁ ଉଦ୍‌ବୁଦ୍ଧ କରିଥିଲେ । ଏହିପରି-

ସ୍ୱବର୍ଗେ ଉତ୍କଳମଣି ଗୋପବନ୍ଧୁ ଓ ମନସ୍ୱୀ ମଧୁସୂଦନ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେବା ପୂର୍ବରୁ ସେଥିପାଇଁ ଓଡ଼ିଶାବାସୀଙ୍କୁ ପ୍ରସ୍ତୁତ କରିଥିଲେ ।

## ଉତ୍କଳ ସମ୍ମିଳନୀ ପୀଠରେ ଗୋପବନ୍ଧୁଙ୍କ ଆହ୍ୱାନ

ଉତ୍କଳମଣି ଗୋପବନ୍ଧୁ ସତ୍ୟବାଦୀ ବନ ବିଦ୍ୟାଳୟ ପ୍ରତିଷ୍ଠା କରିବା ପୂର୍ବରୁ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଆନ୍ଦୋଳନ ଚଳେଇବା ନିମନ୍ତେ ଗଠିତ ଉତ୍କଳ ସମ୍ମିଳନୀ ଥିଲା ଓଡ଼ିଶାର ବୁଦ୍ଧିଜୀବୀମାନଙ୍କର ଶ୍ରେଷ୍ଠ କର୍ମକେନ୍ଦ୍ର । ସେତେବେଳେ ଯୁବକ ଗୋପବନ୍ଧୁ ଏହି ଅନୁଷ୍ଠାନପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ଯେ କାର୍ଯ୍ୟ କରିଥିଲେ । ଏହି ଉଦ୍ଦେଶ୍ୟରେ ସେ ସମସ୍ତ ଓଡ଼ିଆଭାଷୀ ବିଚ୍ଛିନ୍ନାଞ୍ଚଳ ଭ୍ରମଣ କରି ସେଠାରେ ଓଡ଼ିଆ ଶିକ୍ଷା ଓ ସଂସ୍କୃତିର ପ୍ରଚାର ଓ ପ୍ରସାର ଦିଗରେ ନିଷ୍ଠାର ସହିତ କାର୍ଯ୍ୟ କରିଥିଲେ । ମାତ୍ର ଗୋପବନ୍ଧୁ ଯେତେବେଳେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କଲେ ଏବଂ ପରେ ମହାତ୍ମା ଗାନ୍ଧୀଙ୍କ ପ୍ରେରଣାରେ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ନେବା ପାଇଁ ନିଷ୍ପତ୍ତି କଲେ ସେତେବେଳେ ଅନୁଭବ କରିଥିଲେ ଯେ ଓଡ଼ିଶାର ବୁଦ୍ଧିଜୀବୀମାନେ କେବଳ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ କାର୍ଯ୍ୟରେ ନିଜକୁ ସୀମାବଦ୍ଧ ନରଖି ଭାରତର ଜାତୀୟ ସଂଗ୍ରାମରେ ଉପଯୁକ୍ତ ଅଂଶ ଗ୍ରହଣ କରିବା ବାଞ୍ଛନୀୟ । ସେଥିପାଇଁ ଉତ୍କଳ ସମ୍ମିଳନୀ ଓଡ଼ିଶାରେ ମଧ୍ୟ ଜାତୀୟ ସଂଗ୍ରାମର ନେତୃତ୍ୱ ନେଉ ବୋଲି ଗୋପବନ୍ଧୁ ଚାହିଁଥିଲେ ।

୧୯୨୦ରେ ଓଡ଼ିଶାରେ ଜାତୀୟ ସଂଗ୍ରାମର ପ୍ରଚାର ଓ ପ୍ରସାର ପାଇଁ ଉତ୍କଳମଣି ଗୋପବନ୍ଧୁ ସମସ୍ତ ଶକ୍ତି ଦେଇ କାର୍ଯ୍ୟ କରିବା ନିମନ୍ତେ ନିଷ୍ପତ୍ତି କରିବା ପରେ ସେହି ବର୍ଷ ଉତ୍କଳ ସମ୍ମିଳନୀର ଚକ୍ରଧରପୁର ବାର୍ଷିକ ଅଧିବେଶନରେ ଭାରତର ସ୍ୱାଧୀନତା ହାସଲ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ବୋଲି ପ୍ରସ୍ତାବ ଆଗତ କରିଥିଲେ ଏବଂ ଅଧିକାଂଶ ସଭ୍ୟଙ୍କ ମତରେ ତାହା ଗୃହୀତ ହୋଇଥିଲା । ସେତେବେଳେ ଉତ୍କଳ ସମ୍ମିଳନୀ ଅନୁଷ୍ଠାନର ସଂଖ୍ୟାନ୍ୟୂନ ପ୍ରଭାବଶାଳୀ ନେତୃବୃନ୍ଦଙ୍କର ଦୃଢ଼ ମତ ଥିଲା ଯେ ଓଡ଼ିଶା ବାସୀଙ୍କ ପାଇଁ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନହିଁ ସର୍ବାପେକ୍ଷା ଜରୁରୀ ଓ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଏବଂ ଏଥିପାଇଁ ଓଡ଼ିଶାବାସୀ ବ୍ରିଟିଶ ସରକାରଙ୍କର ପ୍ରତ୍ୟକ୍ଷ ବିରୋଧ କରିବା କୌଶଳ ଦୃଷ୍ଟିରୁ ବାଞ୍ଛନୀୟ ହେବ ନାହିଁ । ମାତ୍ର ଗୋପବନ୍ଧୁ ଅନୁଭବ କରିଥିଲେ ଯେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ଯେତେ ଜରୁରୀ ହେଲେ ମଧ୍ୟ ସେଥିପାଇଁ ଓଡ଼ିଶା ମହାଭାରତୀୟ ଜାତୀୟ ସ୍ରୋତରୁ ନିଜକୁ ଅଲଗା କରି ରଖି ନ ପାରେ । ଶେଷରେ ଉତ୍କଳ ସମ୍ମିଳନୀ ଜରିଆରେ ସ୍ୱାଧୀନତା ସଂଗ୍ରାମ ପରିଚାଳନା କରିବା ସମ୍ଭବ ହେବ ନାହିଁ ବୋଲି ଅନୁଭବକରି ଗୋପବନ୍ଧୁ ଏକ ସ୍ୱତନ୍ତ୍ର ସଂଗଠନ ପ୍ରତିଷ୍ଠା କଲେ । ଏହିପରିପ୍ରେକ୍ଷୀରେ ଗୋପବନ୍ଧୁଙ୍କ ନେତୃତ୍ୱରେ ୧୯୨୦ ମସିହା ଫେବୃଆରୀ ମାସରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ପ୍ରତିଷ୍ଠିତ ହେଲା ।

ଗୋପବନ୍ଧୁ ଓଡ଼ିଶାରେ କଂଗ୍ରେସ ଅନୁଷ୍ଠାନ ପ୍ରତିଷ୍ଠା କରିବା ପୂର୍ବରୁ ଓଡ଼ିଶାର ବହୁ ବୁଦ୍ଧିଜୀବୀ ସେତେବେଳର ରକ୍ଷଣଶୀଳ ଉଦାରପନ୍ଥୀମାନଙ୍କ ଦ୍ୱାରା ଗଠିତ ଜାତୀୟ କଂଗ୍ରେସ ଅନୁଷ୍ଠାନପ୍ରତି ଆକୃଷ୍ଟ ହୋଇଥିବା ଜଣାଯାଏ । ଭାରତୀୟ ଜାତୀୟ କଂଗ୍ରେସ ୧୮୮୫ ମସିହାରେ ପ୍ରତିଷ୍ଠିତ ହେଲା । ଏହାର ସ୍ୱଳ୍ପ ବର୍ଷ ପୂର୍ବରୁ ୧୮୮୨ ରେ ଓଡ଼ିଶାରେ ଉତ୍କଳ ସଭା ନାମରେ ଓଡ଼ିଶାର ବୁଦ୍ଧିଜୀବୀମାନଙ୍କର ଏକ ଅନୁଷ୍ଠାନ କାର୍ଯ୍ୟ କରୁଥିଲା । ଏହି ଅନୁଷ୍ଠାନ ବିଚ୍ଛିନ୍ନାଞ୍ଚଳ ଓଡ଼ିଆଭାଷୀଙ୍କ ଅସୁବିଧା, ସେତେବେଳର ଓଡ଼ିଶା ଜନସାଧାରଣଙ୍କର ଉନ୍ନତି ପ୍ରଭୃତି ଦିଗରେ କାର୍ଯ୍ୟକରୁଥିଲେ । ମାତ୍ର ଜାତୀୟ କଂଗ୍ରେସ ଅନୁଷ୍ଠାନ ଗଠିତ ହେବାପରେ ଉତ୍କଳସଭାର ବିଶିଷ୍ଟ ସଭ୍ୟମାନେ ପ୍ରଥମ କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ ଏବଂ କଂଗ୍ରେସ ଅଧିବେଶନରେ ଗୃହୀତ ହୋଇଥିବା ପ୍ରସ୍ତାବ ଉତ୍କଳ ପ୍ରିଣ୍ଟିଂ କମ୍ପାନୀଠାରେ ଅନୁଷ୍ଠିତ ବୈଠକରେ ଉତ୍କଳସଭା ଗ୍ରହଣ କରି ନେଇଥିଲେ ଓ ଓଡ଼ିଶାରେ ତାହା ପ୍ରଚାର କରିବାପାଇଁ ଉଦ୍ୟମ କରିଥିଲେ । କଂଗ୍ରେସର ପ୍ରସ୍ତାବଗୁଡ଼ିକ ଓଡ଼ିଶାବାସୀଙ୍କ ଭିତରେ ସେତେବେଳେ ଉତ୍ସାହ ଓ ଉନ୍ମାଦନା ସୃଷ୍ଟି କରିଥିବା "ଉତ୍କଳ ଦୀପିକା" ରେ ପ୍ରକାଶିତ ସଂବାଦରୁ ପ୍ରମାଣ ମିଳେ ।

ଯେ ଯାହାହେଉ ଜାତୀୟ କଂଗ୍ରେସ ଯେତେବେଳେ ସଂଗ୍ରାମୀ ଭୂମିକା ଗ୍ରହଣ କଲା ସେତେବେଳେ ଉତ୍କଳମଣି ଗୋପବନ୍ଧୁ ହିଁ ତାର ନେତୃତ୍ୱ ନେଲେ ଏବଂ ତାଙ୍କ ପ୍ରେରଣାରେ ଓଡ଼ିଶାର ବହୁ ବୁଦ୍ଧିଜୀବୀ ସରକାରୀ ଚାକିରି ଓ ଓକିଲାତି ଆଦି ଛାଡ଼ି ଏହି ଆନ୍ଦୋଳନରେ ଅଗ୍ରଣୀ ହୋଇ-ଥିଲେ । ଗୋପବନ୍ଧୁ ଏଥିପାଇଁ ପୂର୍ବରୁ କ୍ଷେତ୍ର ପ୍ରସ୍ତୁତ କରିଥିଲେ । ତାହା ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ସଫଳତାପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲା ।

ପବ୍ଲିସିଟି ଅଫିସର
ଉଠାଜଳସେଚନ କର୍ପୋରେସନ୍ ଭୁବନେଶ୍ୱର ।

# ପୁଣ୍ୟଶ୍ଳୋକ

ଉତ୍କଳମଣି ଗୋପବନ୍ଧୁ ଆଜି ଆମ ଦୃଷ୍ଟିରେ ଜଣେ ବ୍ୟକ୍ତି ନୁହନ୍ତି; ସେ ସମସ୍ତ ଆଦର୍ଶମୟ ବ୍ୟକ୍ତିତ୍ୱର ଗୋଟିଏ ଜୀବନ୍ତ ଅନୁଷ୍ଠାନ । ସେ ଥିଲେ ଏକାଧାରରେ ଜଣେ ଜାତୀୟ ନେତା, ସ୍ୱରାଜ୍ୟ ସଂଗଠକ, ଜନସେବକ, କର୍ମୀ ଓ ସର୍ବୋପରି ଉତ୍କଳୀୟ ତଥା ଭାରତୀୟ ସଂସ୍କୃତିର ଜଣେ ନିଷ୍ଠାପର ଉପାସକ । ତାଙ୍କର କର୍ମମୟ ଜୀବନ ଦେଶ ଓ ଦଶର ସେବାରେ ଅହରହ ବ୍ୟସ୍ତ ଥିଲା । ଫଳରେ ଜନତା ଜନାର୍ଦ୍ଦନର ସେବାରେ ଉତ୍ସର୍ଗୀକୃତ ନିଜର ସୀମିତ ଜୀବନ ମଧ୍ୟରେ ସେ ସେହି ଅସୀମ ଜୀବନ ସତ୍ତାର ଅନନ୍ତ ପ୍ରାଣମୟ ଅନୁଭୂତି ଉପଲବ୍ଧି କରିଥିଲେ ଏବଂ ସେ ନିଜର ଜ୍ଞାନଦୀପ୍ତ ଦିବ୍ୟ ଚକ୍ଷୁରେ ମଣିଷର ହୃଦ କାନ୍ଦ, ଦୁଃଖ ଦୈନ୍ୟ, ଅଭାବ ଅନାଟନର ଯେଉଁ କରାଳ ଦୃଶ୍ୟ ଦର୍ଶନ କରିଥିଲେ, ସେ ସବୁର ବାସ୍ତବ ଚିତ୍ରଗୁଡ଼ିକ ଅତି ସ୍ୱାଭାବିକ ଭାବରେ ତାଙ୍କ ଗୀତିଗୁଚ୍ଛରେ ଆତ୍ମପ୍ରକାଶ କରିଛନ୍ତି । ସେଥିପାଇଁ ଗୋପବନ୍ଧୁଙ୍କ ରଚିତ କବିତାରେ କଳ୍ପନା ବିଳାସୀ କବିର ମୋହମୁଗ୍ଧ ଚଟୁଳ ପରିକଳ୍ପନା ନାହିଁ କି ନିଛକ କାବ୍ୟାନନ୍ଦ ପ୍ରାପ୍ତି ପାଇଁ ପାଠକମାନଙ୍କ ଆଗରେ ସେ କଳ୍ପଲୋକର ଚମତ୍କାର ଚିତ୍ର ଉପସ୍ଥାପିତ କରିନାହାନ୍ତି । ନିଜ ରଚନାର ଅନାବିଳ ଆଭିମୁଖ୍ୟ ପ୍ରକାଶ କରି ସେ ଲେଖିଛନ୍ତି—

"ଅଳପ ବୟସେ ମୋର ବହୁ ଅନୁଭବ
ହୃଦ ନିଷ୍ପେଷିତ ମୋର ବିରହ କଷଣେ,
ଲୁଚିଛି ମୋ କଳ୍ପନାର ବିଳାସ ବୈଭବ
ଦେଖେ ମୁଁ ଜୀବନ ଗତି ବାସ୍ତବ ନୟନେ ।"

ସାହିତ୍ୟ ରଚନା ଓ ଚର୍ଚ୍ଚା ଦିବ୍ୟ ଦୃଷ୍ଟିର ଅପେକ୍ଷା ରଖେ । ଗୋପବନ୍ଧୁଙ୍କର ତାହା ପ୍ରଚୁର ମାତ୍ରାରେ ଥିଲା । ତାହାରି ଫଳରେ ସେ ତାଙ୍କର ପାରିପାର୍ଶ୍ୱିକ ଜୀବନକୁ ଯେତେ ନିକଟରୁ ଦେଖି ପାରିଛନ୍ତି ଏବଂ ଯେତେ ନିବିଡ଼ ଭାବରେ ଅନୁଭବ କରିପାରିଛନ୍ତି, ତାହାର ସମଧର୍ମୀ ଦୃଷ୍ଟାନ୍ତ ଓଡ଼ିଆ ସାହିତ୍ୟରେ କ୍ୱଚିତ୍ ଦେଖିବାକୁ ମିଳେ । ସେ ଥିଲେ ଜଣେ ଦରଦୀ କବି । ସମାଜର କରୁଣ କ୍ରନ୍ଦନ ଓ ଦାରୁଣ ଦୁର୍ବିପାକ, ଦାରିଦ୍ର୍ୟ ଓ ବୁଭୁକ୍ଷା ଜନିତ ବହୁ ନିର୍ମମ ପରିସ୍ଥିତି ଓ ପରିଣତି, ନିରବଚ୍ଛିନ୍ନ ବନ୍ୟା ଓ ବ୍ୟାଧିଗ୍ରସ୍ତ

ଡକ୍ଟର ବନମାଳୀ ରଥ

ଜୀବନର ବହୁ କରୁଣ ଦୃଶ୍ୟ, ତାଙ୍କୁ ଅହରହ ବିଚଳିତ କରିଛି ଏବଂ ସେଗୁଡ଼ିକର ଆଭ୍ୟନ୍ତରିକ ଅନୁଭୂତିହିଁ କବିତା ଆକାରରେ ରୂପ ନେଇଛି । ସେଥିରେ କାହାପ୍ରତି କଟାକ୍ଷ ନାହିଁ କି କାହାପ୍ରତି ବ୍ୟଙ୍ଗ ନାହିଁ । ସବୁ ସାଦା ସିଧା ଓ ସମ୍ପୂର୍ଣ୍ଣ ମାନବିକତାବାଦୀ ଚିନ୍ତାଧାରା । ସେଥିରେ ଅଛି ଐତିହ୍ୟ ସମ୍ପନ୍ନ ବୀର ଓଡ଼ିଆ ଜାତିର ଅଧଃପତନର ଗୋଟିଏ କରୁଣ ଦୃଶ୍ୟ ଓ ତାହାର ସ୍ୱାଭାବିକ ବିଶ୍ୱାସମୟ ବର୍ଣ୍ଣନା । କିନ୍ତୁ ଏହି ସ୍ୱଚ୍ଛନ୍ଦ କବିତାଗୁଡ଼ିକ ଦରଦୀ କବିର ଆନ୍ତରିକ ସହାନୁଭୂତି ନେଇ ଆତ୍ମପ୍ରକାଶ କରିଥିବାରୁ ତାହା ପ୍ରାଣ-ପ୍ରାଚୁର୍ଯ୍ୟର ବିପୁଳ ସମ୍ଭାରରେ ଯେପରି ବୈଚିତ୍ର୍ୟମୟ ସେପରି ରସୋତ୍ତୀର୍ଣ୍ଣ ହୋଇଛନ୍ତି । ସେଥିପାଇଁ ଆଜି ଗୋପବନ୍ଧୁଙ୍କର ପ୍ରତ୍ୟେକଟି କବିତା ପାଠକ ମହଲରେ ଏତେ ପ୍ରାଣସ୍ପର୍ଶୀ ଓ ଏତେ ଆପଣାର ହୋଇପାରିଛି ।

ଗୋପବନ୍ଧୁଙ୍କ ସମଗ୍ର ସାହିତ୍ୟିକ ରଚନା ବିଶ୍ଳେଷଣ କଲେ, ସେଥିରେ ସାଧାରଣତଃ ଦୁଇଟି ପ୍ରମୁଖ ଆଭିମୁଖ୍ୟ ଦେଖିବାକୁ ମିଳେ । ପ୍ରଥମତଃ ଏ ଜାତିର ମହାନ ଗରିମାମୟ ପରମ୍ପରା ପ୍ରତି ତାଙ୍କର ସଂଭ୍ରମ ଦୃଷ୍ଟି ଓ ଦ୍ୱିତୀୟତଃ ପ୍ରତ୍ୟେକ କଥାରେ ଓ କାର୍ଯ୍ୟରେ ଧର୍ମଚେତନାଦୀପ୍ତ କ୍ଷେମମୟ ଆଧ୍ୟାତ୍ମିକତାର ଅନାବିଳ ଅଭିବ୍ୟକ୍ତି ।

କବିତା ଲେଖିବା କେବେହେଲେ ତାଙ୍କର ବିଳାସ ନଥିଲା । ସେ ଥିଲେ ଜଣେ ମାନବିକତାବାଦୀ ନୀରବ କର୍ମୀ । ଗାନ୍ଧୀଜୀଙ୍କ ଚିନ୍ତା ଓ ଚରିତ୍ରରେ ସେ ଥିଲେ ଏକାନ୍ତ ତନ୍ମୟ । ସ୍ୱରାଜ୍ୟ ଆନ୍ଦୋଳନ ଥିଲା ତାଙ୍କ ଜୀବନର ଦୀକ୍ଷା । ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର କର୍ଣ୍ଣଧାରଭାବେ ସେ ବହୁ ସାମାଜିକ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ସ୍ୱରାଜ୍ୟ ଆନ୍ଦୋଳନରେ ଜନତାକୁ ଅନୁପ୍ରାଣିତ କରୁ କରୁ ନିଜେ ସେମାନଙ୍କର ମହନୀୟତାରେ ଅନୁପ୍ରାଣିତ ହୋଇଛନ୍ତି । ଜୀବନ ସହିତ ଜୀବନମିଶି ହୋଇଛି ଏକାକାର । ନିର୍ବୈୟକ୍ତିକତାର ମଧୁର ଆସ୍ୱାଦନରେ ବ୍ୟକ୍ତିସତ୍ତା ହୋଇଛି ସମ୍ପୂର୍ଣ୍ଣ ନିଶ୍ଚିହ୍ନ, 'ଆବର୍ଜନାମୟ ଏ ସଂସାର ଜଞ୍ଜାଳ'ରୁ ମୁକ୍ତ । ସେଥିପାଇଁ ତ ସେ ନିଜର ଏକମାତ୍ର ପୁଅକୁ ମୃତ୍ୟୁ ମୁଖକୁ ଠେଲି ଦେଇ ଓଡ଼ିଶାର ଅଗଣିତ ସନ୍ତାନଙ୍କୁ ବନ୍ୟା କବଳରୁ ରକ୍ଷା କରିବା ପାଇଁ ନିର୍ବିକାର ଚିତ୍ତରେ ଧାଇଁ ଯାଇଥିଲେ ସେମାନଙ୍କ ନିକଟକୁ । ସ୍ୱରାଜ୍ୟ ଆନ୍ଦୋଳନ ତାଙ୍କ ପାଇଁ ଗୋଟିଏ ସ୍ୱାର୍ଥ ପ୍ରଣୋଦିତ ଚିନ୍ତା ନ ଥିଲା । ଭାରତୀୟ ତ୍ୟାଗପୂତ ପରମ୍ପରାର ମହନୀୟ ଆଦର୍ଶ ଓ ତାହାର ଚରମୋତ୍କର୍ଷ ଏହି ଆନ୍ଦୋଳନ ମଧ୍ୟରେ ନିହିତ ଥିଲା । ସ୍ୱାଧୀନ ବ୍ରିଟିଶ୍ ଜାତି ଯେପରି ପୃଥିବୀବ୍ୟାପୀ ଶୋଷଣରେ ଲିପ୍ତ ଥିଲା, ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ପଛରେ ସେହି ନାରକୀୟ ଚିନ୍ତାର ଆଭାସ ସୁଦ୍ଧା ନଥିଲା । ଭାରତୀୟ ଜନତାର ସ୍ୱାଧୀନତା ବିଶ୍ୱବାସୀର କଲ୍ୟାଣପାଇଁ । ସେଥିପାଇଁ ଗୋପବନ୍ଧୁ ଗାଇଛନ୍ତି—

"ସ୍ୱରାଜ୍ୟ ସାଧନେ ରହୁ ମୋର ଧ୍ୟାନ
ଭାରତେ ସ୍ୱରାଜ୍ୟ ଜଗତ କଲ୍ୟାଣ" ।

ସେ ଅନୁଭବ କରିଥିଲେ, ପରାଧୀନତାର ନିଗଡ଼ ବନ୍ଧନରେ ପଡ଼ି ଗୋଟାଏ କୃଷ୍ଟିସମ୍ପନ୍ନ ଜାତି ଛାରଖାର ହୋଇଯାଉଛି; ତା'ର ସମସ୍ତ ଐତିହ୍ୟ ନଷ୍ଟଭ୍ରଷ୍ଟ ହେବାରେ ଲାଗିଛି । ମୃତ୍ୟୁର ଏହି କରାଳ କବଳରୁ ଜାତିକୁ ରକ୍ଷା କରିବାକୁ ହେଲେ ତାହାର ଆତ୍ମ-ସମ୍ମାନ ଜାଗ୍ରତ କରିବାକୁ ହେବ । ତାହାର ନିଜ ସ୍ୱରୂପ ବିଷୟରେ ସେ ସଚେତନ ହେଲେ ବଳେ ବଳେ ସ୍ୱାଧୀନତା ହସ୍ତଗତ ହେବ । ଆତ୍ମ-ଚେତନା ଦୀପ୍ତ ଦୁର୍ବାର ଶକ୍ତି ନିକଟରେ ଅନ୍ୟାୟ ଓ ଅତ୍ୟାଚାର ଉପରେ ପ୍ରତିଷ୍ଠିତ 'ଶ୍ୱେତ ରାଜଶକ୍ତି' ଶରଣ ପଶିବ । ସେଥିପାଇଁ ସେ ବେଦ ଉପନିଷଦ, ଗୀତା ଓ ବିଭିନ୍ନ ପୁରାଣରୁ ଏ ଜାତିର ପରମ୍ପରାପୁଷ୍ଟ ଜୀବନାଦର୍ଶ ସଂଗ୍ରହକରି ସେଗୁଡ଼ିକୁ ତାଙ୍କ ସାହିତ୍ୟର ଛନ୍ଦେ ଛନ୍ଦେ ଏପରି ପ୍ରାଣ ପ୍ରାଚୁର୍ଯ୍ୟର ସହିତ ଉପସ୍ଥାପିତ କରିଛନ୍ତି ଯେ, ତାହା ପଢ଼ିଲାବେଳେ ପ୍ରତ୍ୟେକ ଓଡ଼ିଆ ଦେହରେ ଶିହରଣ ସୃଷ୍ଟି ହୁଏ, ମନରେ ସ୍ୱାଭିମାନର ଗଭୀର ରେଖାପାତ ହୁଏ । ସମଗ୍ର ଭାରତୀୟ ସଂସ୍କୃତି ଓ ପରମ୍ପରାର ମୂଳମନ୍ତ୍ର ଆତ୍ମଶୁଦ୍ଧି । ଆତ୍ମଶୁଦ୍ଧି ଉପଲବ୍ଧ ହେଲେ ଦୁନିଆରେ ସେହି ସତ୍ୟାନୁସନ୍ଧିତ୍ସୁ ନିକଟରେ ଅସମ୍ଭବ ବୋଲି ଆଉକିଛି ନଥାଏ । ଗୋପବନ୍ଧୁ ନିଜେ ଏହି ଅଗ୍ନି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କୋଟି ଜନତା ଭିତରେ ନିଜକୁ ଆବିଷ୍କାର କରିବା ପାଇଁ ନିଜକୁ ନିଜେ ପଚାରିଛନ୍ତି—

"ମୁଁ କି ଦୋଷୀ ? ପଚାରିଲେ ଅନ୍ତରେ ଅନାଇଁ
ଅନ୍ତରୁ ଉତ୍ତର ଆସେ ନାହିଁ ନାହିଁ ନାହିଁ ।
ନୁହେଁ ନରହନ୍ତା କିବା ପରଧନାହାରୀ
ପରଶି ନାହିଁ ଏ ତନୁ କେବେ ପରନାରୀ ।
ଜ୍ଞାତସାରେ ଦେଇ ନାହିଁ ପର ପ୍ରାଣେ ପୀଡ଼ା
ଅପରାଧେ ଅନ୍ୟ ପାଶେ ହୋଇନାହିଁ ଛଡ଼ା ।
କରିନାହିଁ ପରନିନ୍ଦା ଈର୍ଷା ସହକାରେ
ଅପରାଧେ କଳୁଷିତ କେବେ କି ପ୍ରକାରେ ।"

ଏହି ଆତ୍ମ ନିରୀକ୍ଷା ମଧ୍ୟରେ ଭାରତୀୟ ମାନବିକତାବାଦୀ ଚିନ୍ତା ଓ ସାଧନାର ସକଳ ତଥ୍ୟ ନିହିତ । ବ୍ୟକ୍ତିଗତ ଜୀବନର ଚିନ୍ତା ଓ ଚରିତ୍ରରେ ଶୁଦ୍ଧି ସମ୍ପାଦିତ ହେଲେ, ଜାତୀୟ ଜୀବନର ମହତ୍ତ୍ୱ ଉପଲବ୍ଧ କରିହୁଏ । ଏଣୁ ଗୋପବନ୍ଧୁଙ୍କ ସମଗ୍ର ସାହିତ୍ୟରେ ବ୍ୟକ୍ତିଗତ ଜୀବନର ସଂକୀର୍ଣ୍ଣତା ଓ ଜାତୀୟ ଜୀବନର ମହନୀୟତା ବହୁ ଦୃଷ୍ଟାନ୍ତ ମାଧ୍ୟମରେ ପ୍ରତିପାଦିତ । ଏହିପରି ଅନନ୍ତ ସାହିତ୍ୟିକ-ଇଙ୍ଗିତ ମଧ୍ୟରୁ

ଗୋଟିଏ ପ୍ରଶ୍ନ "କାରଣ ବଡ଼େଇରେ କାଷ୍ଟ କି ସୁଅରେ କାଷ୍ଟ" ? ଏ ପ୍ରଶ୍ନର ସମାଧାନ 'ଧର୍ମପଦ'ରେ ପଢ଼ିଲାବେଳେ ଯେ କୌଣସି ପାଠକ ଲୋତକାପ୍ଲୁତ ନୟନରେ ଏହି ମହନୀୟ ଆଦର୍ଶକୁ ନିବିଡ଼ ଭାବରେ ଅନୁଭବ କରେ । ଏହି 'ଧରମା'ଟି ଅଉ କେହି ନୁହେଁ; ସେ ଗୋଟିଏ ଓଡ଼ିଆ ପୁଅ । ସେହି ଗୋଟିଏ ଧରମା ଯେତେବେଳେ କୋଟିଏ ଓଡ଼ିଆଙ୍କ ମଧ୍ୟରେ ଆତ୍ମପ୍ରକାଶ କରିଥିଲା, ସେତେବେଳେ ସେମାନେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । ପୁରୀ ଓ କୋଣାର୍କ ମନ୍ଦିର ନିର୍ମାଣ କରିଥିଲେ । ସଂସ୍କୃତି ଓ କଳା ସବୁ କ୍ଷେତ୍ରରେ ମହନୀୟତାର ପଦଚିହ୍ନ ରଖି ଯାଇଥିଲେ । ସେହି ଦୁର୍ଦ୍ଧର୍ଷ ଶକ୍ତିର ବଂଶଧର ଆଜି ଏତେ ଦୀନ, ହୀନ, ଦଳିତ ଓ ନିଷ୍ପେଷିତ ହୋଇ ରହିପାରେ କି ? ଏହି ଗୋଟିଏ ପ୍ରଶ୍ନର ବହୁ ବୈଚିତ୍ର୍ୟରେ ତାଙ୍କର ସମସ୍ତ ସୃଷ୍ଟି ହୋଇ ଉଠିଛି ବର୍ତ୍ତୁଳ ଓ ଭାସ୍ୱର—

"ପୁଣ୍ୟ ଜନ୍ମ ମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ଆଶେ କଲେ ତନୁ କ୍ଷୟ ।
ମାନବ ଜୀବନ ହୁଅଇ ସଫଳ
ଏ ମହା ଦୀକ୍ଷା କି ବୁଝିବ ଉତ୍କଳ ?"

ଆତ୍ମଶୁଦ୍ଧିର ସହିତ ଆତ୍ମଶକ୍ତି ଉପରେ ନିର୍ଭର କରି କର୍ମକ୍ଷେତ୍ରରେ ଅଗ୍ରସର ହେବାକୁ ହେଲେ ଅଟଳ ଭଗବତ୍ ବିଶ୍ୱାସରେ ଆସ୍ଥାବାନ ହେବାକୁ ପଡ଼ିବ । କର୍ତ୍ତବ୍ୟ କର୍ମରେ ଆଧ୍ୟାତ୍ମିକତାର ନିଦର୍ଶନହିଁ ସତ୍ୟାଗ୍ରହୀ ମନରେ ଦୃଢ଼ ମନୋବଳ ଓ ଅମିତ ଶକ୍ତି ସଂଗ୍ରହ କରେ । ଭାରତୀୟ ଜନତା ଯୁଗେ ଯୁଗେ ଆଧ୍ୟାତ୍ମିକ ଚେତନାପ୍ରାପ୍ତ ସ୍ୱାର୍ଥହୀନ ମାନବତାବାଦୀ କର୍ମ୍ମ କଳାପକୁ ପବିତ୍ର କର୍ତ୍ତବ୍ୟ ମନେକରି ଆସିଛି । ସ୍ୱରାଜ୍ୟ ଆନ୍ଦୋଳନ ଯେ, ଏହି ସମସ୍ତ କର୍ତ୍ତବ୍ୟ କର୍ମ ପ୍ରବାହର ଗୋଟିଏ ମୂଳାଧାର ଏବଂ ଏହାର ମଧ୍ୟରେ ବିଶ୍ୱବ୍ୟାପୀ କ୍ଷେମମୟ ପରିକଳ୍ପନା ଗୋଟି ଗୋଟି କରି ଗ୍ରନ୍ଥିତ ହୋଇ ରହିଛି, ଏ ସାର ସତ୍ୟର ବିକଚ ବିକାଶ ଗୋପବନ୍ଧୁଙ୍କ ସମଗ୍ର ସାହିତ୍ୟ ସୃଷ୍ଟିର ଛନ୍ଦେ ଛନ୍ଦେ ଦେଖିବାକୁ ମିଳେ । ଏଣୁ ସେ ସ୍ୱରାଜ୍ୟ ଆନ୍ଦୋଳନକୁ ବର୍ଣ୍ଣନାକରି ଲେଖିଛନ୍ତି—

"ଆଧ୍ୟାତ୍ମିକ ଭାବେ ଲାଗିଛି ଲଢ଼ାଇ
ଭାଙ୍ଗିବାକୁ ପଶୁ ବଳର ବଡ଼ାଇ ।"

ସମଗ୍ର ଜାତିର ପ୍ରାଣରେ ନୂତନ ଶକ୍ତି ସଞ୍ଚାର କରିବା ପାଇଁ କାୟମନୋବାକ୍ୟରେ ଜାତୀୟ ଚିନ୍ତା ପ୍ରକଟିତ କରିବା ପାଇଁ ଜାତୀୟ ସାହିତ୍ୟ ଗଠନର ଆବଶ୍ୟକତା ସେ ଉପଲବ୍ଧି କରିଥିଲେ । ତେଣୁ ସେ ହେଲେ ଲେଖକ ଓ କବି । ଗୋପବନ୍ଧୁ ନିଜର ପୁଷ୍କଳ ଜୀବନ, ଧର୍ମଧାରଣା, ଚିନ୍ତା ଚୈତନ୍ୟ ଓ ସତ୍ୟାଗ୍ରହୀ କର୍ମନିଷ୍ଠାର ଆଦର୍ଶକୁ ନିଜ କବିତାରେ ରୂପାୟିତ କରିଛନ୍ତି । ଏଠାରେ ଘଟିଛି ଆଦର୍ଶ ଓ ବାସ୍ତବର ନିବିଡ଼ ସମନ୍ୱୟ; ଦୁହିଁଙ୍କ ମଧ୍ୟରେ ନିବିଡ଼ ଆଶ୍ଳେଷ । ଗୋପବନ୍ଧୁଙ୍କ କବିତା ପଢ଼ିଲେ ତାଙ୍କର ଶାନ୍ତସ୍ନିଗ୍ଧ ଉଦାର ମହନୀୟ ବ୍ୟକ୍ତିତ୍ୱର ସ୍ପର୍ଶ ଅନୁଭବ କରିହୁଏ । ଏଠାରେ ଦେଖିବାର କଥା, ସେ ଥିଲେ ଜଣେ ଓଡ଼ିଆ । ଓଡ଼ିଆ ଜୀବନର ଦୁଃସ୍ଥିତି ତାଙ୍କୁ ଅହରହ ବିଚଳିତ କରିଛି । ସେ ଓଡ଼ିଆର ଗୌରବ ଗାଥା ଗାନ କରିବାରେ ଶତଜିହ୍ୱ ହୋଇ ଉଠିଛନ୍ତି; କିନ୍ତୁ ତାଙ୍କର ବିଶ୍ୱତୋମୁଖୀ ଚିନ୍ତା ଓଡ଼ିଶାର ସଂକୀର୍ଣ୍ଣ ସ୍ୱାର୍ଥ ସାଧନରେ ସୀମିତ ହୋଇ ନାହିଁ । ବସୁଧୈବ କୁଟୁମ୍ବକଂ ତାଙ୍କ ଜୀବନର ଆଦର୍ଶ । ଏଣୁ ସେ ମନ୍ଦ୍ର କଣ୍ଠରେ ଗାଇଛନ୍ତି—

"ଜାତୀୟ ମମତା ବିଶ୍ୱଜନ ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି ।"

× × ×

"ଜଗତ-ସରସେ ଭାରତ କମଳ
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।"

ତାଙ୍କ ଦୃଷ୍ଟିରେ ଆମେ ପ୍ରଥମେ ବିଶ୍ୱବାସୀ ମଣିଷ, ତା'ପରେ ଭାରତୀୟ ଓ ଶେଷରେ ଓଡ଼ିଆ । ଏଇ ଭାବ ପ୍ରତ୍ୟେକଙ୍କ ମନରେ ଜାଗ୍ରତ ନହେଲେ ମହାଜାତୀୟତାର ପରିକଳ୍ପନା ବ୍ୟର୍ଥ ହୋଇଯିବ । ମଣିଷ ଜୀବନର ବିକାଶ ବାଧାପ୍ରାପ୍ତ ହେବ । ପ୍ରତ୍ୟେକ କ୍ଷେତ୍ରରେ ବ୍ୟକ୍ତି-ସ୍ୱାତନ୍ତ୍ର୍ୟ କାମ୍ୟ ହେଲେ ମଧ୍ୟ ସୁସଂହତ ଜାତୀୟ ସ୍ଥିତିରେ ଦୃଢ଼ତା ନ ରହିଲେ ବ୍ୟକ୍ତିର ଭୂୟୋ ବିକାଶ ଅସମ୍ଭବ ହୋଇ ପଡ଼ିବ । ଏଣୁ ମହାଭାରତୀୟତାର ସୁଷ୍ଠୁ ପରିବର୍ଦ୍ଧନରେ ତଥା ବିଶ୍ୱବ୍ୟାପୀ ସାର୍ବଜନୀନ ମାନବିକତାର ସଂରକ୍ଷଣରେ ଓଡ଼ିଆ ଜାତୀୟତାର ଦୀପ୍ତି ପ୍ରକଟିତ ହେବ । ଏଣୁ କଲ୍ୟାଣକାମୀ ଯେ କୌଣସି ଓଡ଼ିଆ ପକ୍ଷରେ ଆନ୍ତର୍ଜାତିକତା, ମହା-ଭାରତୀୟତା ଓ ଉତ୍କଳୀୟତା ଏକାନ୍ତ କାମ୍ୟ । ଗୋଟିକର ଅଭାବରେ ଅନ୍ୟଟିର ସ୍ଥିତି ବିପଦସଙ୍କୁଳ ହୋଇପଡ଼େ । ସରସୀର ଅଭାବରେ ପଦ୍ମର ସ୍ଥିତି ଅସମ୍ଭବ । ପଦ୍ମ ନଥିଲେ କେଶରର ପରିକଳ୍ପନା ଅର୍ଥହୀନ । ଏଣୁ ଓଡ଼ିଶା ପ୍ରୀତି ଓଡ଼ିଆ ପକ୍ଷରେ ବିଶ୍ୱପ୍ରାଣତାର ପରିପନ୍ଥୀ ନୁହେଁ । ବରଂ ଉଦାର ସାର୍ବଜନୀନ ମାନବିକତାର ଅଭାବରେ ସଂକୀର୍ଣ୍ଣ ଦେଶାନୁରାଗ ବହୁ ଅନର୍ଥର କାରଣ ହୁଏ । ଓଡ଼ିଶାର କଲ୍ୟାଣ ସାଧନରେ ସର୍ବତୋଭାବେ ଭାରତୀୟ ଓ ବିଶ୍ୱ କଲ୍ୟାଣ ନିହିତ । ଅତଏବ ଗୋପବନ୍ଧୁଙ୍କ ଓଡ଼ିଆ ପ୍ରୀତି ଓ ଓଡ଼ିଶା ଜାତୀୟତା ସ୍ୱାର୍ଥପର ସଂକୀର୍ଣ୍ଣ ଚିନ୍ତାର ବହୁ ଊର୍ଦ୍ଧ୍ୱରେ । ଏହାର ଆଧ୍ୟାତ୍ମିକତା ଓ ଧର୍ମଧାରଣା ଉପରେ ଏହା ପ୍ରତିଷ୍ଠିତ । ସାର୍ବଜନୀନ ମୈତ୍ରୀ ଓ ସମତା ଏହି ଦେଶାନୁରାଗର ଆଧାର । ନୀଳାଚଳ ଏହି ବିଶ୍ୱତୋମୁଖୀ

ଧର୍ମଚେତନାର ପୀଠସ୍ଥଳୀ । ଏଣୁ ସେ ଦୃଢ ଚିତ୍ତରେ ସ୍ୱରାଜ୍ୟ ଆନ୍ଦୋଳନର ପ୍ରତ୍ୟେକ କାର୍ଯ୍ୟକୁ ବିଧିନିର୍ଦ୍ଦିଷ୍ଟ ଧର୍ମ-ସମ୍ମତ କର୍ତ୍ତବ୍ୟ କର୍ମ ଭାବରେ ବର୍ଣ୍ଣନା କରିଛନ୍ତି । ମଣିଷ ଜୀବନର କେତୋଟି ମହାସତ୍ୟ ମଧ୍ୟରୁ ସ୍ୱାତନ୍ତ୍ର୍ୟ ମଧ୍ୟ ମଣିଷର ଗୋଟିଏ ଜନ୍ମସିଦ୍ଧ ଅଧିକାର । ଏଣୁ ଅନ୍ୟାୟ ଭାବରେ ଯେଉଁମାନେ ଏହି ଈଶ୍ୱର ଦତ୍ତ ଅଧିକାରରୁ ତାକୁ ବଞ୍ଚିତ କରିବାରେ ଲାଗିଛନ୍ତି, ସେମାନେ ଧୂର୍ତ୍ତ, ପାଷାଣ୍ଡ ବର୍ବର । ସେହି ନରପିଶାଚମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଧର୍ମଯୁଦ୍ଧରେ ପ୍ରାଣପାତ କଲେ ମୁକ୍ତିର ମାର୍ଗ ପ୍ରଶସ୍ତ ହୁଏ । ଏହି ସୁଦୃଢ଼ ବିଶ୍ୱାସର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ହୋଇ ସେ ତାଙ୍କର ସଂଗ୍ରାମୀସହକର୍ମୀମାନଙ୍କୁ ଯେଉଁ ଉଦ୍‌ବୋଧନ ଦେଇଥିଲେ, ସେଥିରୁ ତାଙ୍କର ସତ୍ୟାଗ୍ରହ ଓ ଅଟଳ ଧର୍ମ ବିଶ୍ୱାସର ଯଥେଷ୍ଟ ସୂଚନା ମିଳେ । ସ୍ୱରାଜ୍ୟ ଆନ୍ଦୋଳନ ପରି ସତ୍‌କର୍ମ କୌଣସି ନେତାର ଅଭାବରେ ଅଟକେ ନାହିଁ । ଗୋଟିଏ ନେତାର ଅଭାବରେ ଭଗବାନ କୋଟିଏ ନେତାର ନେତୃତ୍ୱ ଦିଅନ୍ତି । ତାଙ୍କର ଭାଷାରେ—

"ନ ଅଟକେ କର୍ମ ନେତାର ଅଭାବେ
ଧର୍ମ ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ସ୍ୱୟଂ ନାରାୟଣ ।"

ସ୍ୱରାଜ୍ୟ ମଣିଷର ଗୋଟିଏ ଜନ୍ମସିଦ୍ଧ ଅଧିକାର । ଏହା ଆଜି ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଛି । ବିଂଶ ଶତାବ୍ଦୀର ଏହି ବିଶ୍ୱବ୍ୟାପୀ ଆନ୍ଦୋଳନ ବହୁ ଜାତିକୁ ପରାଧୀନତାର ନିଗଡ଼ ବନ୍ଧନରୁ ମୁକ୍ତ ଦେଇଛି । ଏହା ମଣିଷ ଜାତିର ଇତିହାସରେ ନବୀନତମ ଗୋଟିଏ ଆନ୍ତର୍ଜାତିକ ଆଦର୍ଶ ହେଲେ ମଧ୍ୟ ଗୋପବନ୍ଧୁ ଯେପରି ଭାବରେ ହଜାର ହଜାର ବର୍ଷ ଧରି ପ୍ରତିଷ୍ଠିତ ଭାରତୀୟ ପରମ୍ପରା ଓ ଧର୍ମ ଧାରଣା ସହିତ ଏହି ସଂଗ୍ରାମଶୀଳ ଆଦର୍ଶର ସାମଞ୍ଜସ୍ୟ ପ୍ରତିଷ୍ଠା କରି ନିଜର ବଳିଷ୍ଠ ବ୍ୟକ୍ତିତ୍ୱ ଓ ସାବଲୀଳ ସୃଷ୍ଟି ମାଧ୍ୟମରେ ଦଳିତ, ନିଷ୍ପେଷିତ, ଲାଞ୍ଛିତ ତଥା ଅବହେଳିତ ଜନତାକୁ ଯୁଗ ସଞ୍ଚିତ ଜଡ଼ତାରୁ ମୁକ୍ତ ଦେଇଛନ୍ତି, ତାହା ଏକାନ୍ତ ଭାବରେ ବିସ୍ମୟକର ଓ ପ୍ରଣିଧାନଯୋଗ୍ୟ ବିଷୟ ।

*ଅଧ୍ୟାପକ, ଖଲ୍ଲିକୋଟ କଲେଜ, ବ୍ରହ୍ମପୁର ।



ସେପ୍ଟେମ୍ବର ୪ ତାରିଖରେ ଶ୍ରୀମତୀ ପ୍ରତିଭା ମିଶ୍ର ତାଙ୍କର ସାହିତ୍ୟିକ ସ୍ୱାମୀ ସ୍ୱର୍ଗତ ରାମଚନ୍ଦ୍ର ମିଶ୍ରଙ୍କ ପାଇଁ ସାଂସ୍କୃତିକ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ଗଙ୍ଗାଧର ମହାପାତ୍ରଙ୍କ ହସ୍ତରୁ ମାନପତ୍ର ଓ ପୁରସ୍କାର ଗ୍ରହଣ କରୁଛନ୍ତି ।

# ଭାରତ ଜନତା ତରଫରୁ

ଶ୍ରୀ ନଟବର ସାମନ୍ତରାୟ

ଅଦିନ ବରଷା, ଘର କଣବଣ କହିଁ କହିଁ କାନ୍ଦ ଶୁଭଇ
ଗୁମୁରି ଗୁମୁରି କାନ୍ଦୁଅଛି ଜାଣି ନୁହଁଇ ।
ଅଂଧାର ଘର ନ ଦିଶଇ କା'କୁ କା ମୁଖ ।
ପିଲାଙ୍କ ଭିତରୁ କେହୁଟା ହେଲାକି ଅସୁଖ ?
ଝିପିରି ଝିପିରି ମେଘ ବରଷୁଛି ବିଜୁଳି
ମାରୁଛି, କାନ୍ଦଣା ବଢୁଛି ବିକଳ ଆତୁର ।

ହରିହର * ଆଉ ନପାରି ସଂଭାଳି, ଉଠିଲେ
ପାଖର ଲଣ୍ଠନ ତେଜି ଟିକେ ଧୀରେ ଦେଖିଲେ ।
ବୁହିଁ ଏଣେତେଣେ ନ ଦେଖି ସେଠାରେ କାହାରେ
କହିଁ କହିଁ କାନ୍ଦ, ଡାକ କୋଠରିରୁ ବାହାରେ ।
ଚମକି ଚକିତେ ଭିତରେ ପଶିଲେ ମହନେ
ବିଛଣାରେ ବସି କାନ୍ଦୁଛନ୍ତି "ଦାଏସ ଆପଣେ" ।
ଦେଖି ପଚାରିଲେ ଦେହ କି ଖରାପ ହୋଇଛି ?
କି କାରଣେ ଆଜ୍ଞା ନୟନରୁ ନୀର ବହୁଛି ?
କିଛି ନ କହନ୍ତି, ନ ଶୁଣିଲା ପରି "ଆପଣେ"
ଆଖି ଲୁହ କେନ୍ତୁ ଗଡୁଛି କାରଣ ନମାନେ
ବହୁ ଅନୁନୟ ହେଲେ ହରିହର, ଶେଷରେ
କାନ୍ଦ କାନ୍ଦ ସିଏ ଅଧୀର ହୋଇଣ କହିଲେ—

ଛଅମାସ ତଳେ ଦେଖିଥିଲି ବଢ଼ି ଅଞ୍ଚଳେ
କେତେ ଘର ଭାଙ୍ଗି ପଡ଼ିଥିଲା ତାହା ସେତେବେଳେ
ମସ୍ତମଣ୍ଡ କେବେ ସେସବୁ ନଥିବ ହୋଇତ
ବେଳାଏ ଜୁଟେନା, ସ୍ତ୍ରୀ ପିଲା ପେଟକୁ ଭାତ
ଆଜି ଏ ବରଷା କାଳକି ହୋଇବ ତାହାରେ
ପିଲାପିଲି ଯେବେ ପଡ଼ିଛନ୍ତି ସିଏ ବାହାରେ ।

କୋଳଛୁଆଁ, ଯୋଗୀ ଶାଶୁ ଓ ଶ୍ୱଶୁର ସାଥୀରେ
କୁଳବୋହୂ କିପରି କାନ୍ଦୁଥିବ ଆଜି ଘରରେ ?

ବରଷାର ଧାର ଭାଙ୍ଗିଦେଲା ନଦୀ ମୋହର
ଯେତିକି ଝରୁଛି ସେତିକି ପରାଣ ଅଧୀର ।

×　　　　×　　　　×

ଆଜି ବି ବରଷା ବରଷେ ଅଦିନେ ପ୍ରବଳ
ଆଜି ବି ବାହାରେ ପଡ଼ି ନର ହୁଏ ବିକଳ ।

ଆଜି ଭକ୍ତ କିଏ କାନ୍ଦୁଛି ଭାସଣ ନଦୀରେ
ମଣିଷର ପାଇଁ ଆଖିଲୁହ ଢାଳି ଶେଯରେ ।

ହୃଦୟକୁ ଦେଇ ଭଲ ପାଇଥିଲା ସେ ଜନ
ଉତ୍କଳମଣି ଗୋପବନ୍ଧୁ ଦାସ
ଆରତ ଜନତା ତରଫରୁ ଢାଳେ ପାଦତଳେ ତୁମ ପ୍ରଣାମ ।

ଗଭର୍ଣ୍ଣମେଣ୍ଟ ଟ୍ରେନିଂ କଲେଜ
ସମ୍ବଲପୁର



---

* ଆଗ୍ନର୍ଫି ହରିହର ଦାସ

ସତ୍ୟବାଦୀ ସ୍କୁଲରେ ଘଟିଥିବା ଘଟଣା । ଦିନେ ରାତିରେ ଦାଣ୍ଡ ବାରଣ୍ଡାରୁ ହରିହରଙ୍କ ନିଦ ଭାଙ୍ଗେ କାନ୍ଦ ଶୁଣି । ଉଠି ସେ ଦେଖନ୍ତି ଘରେ ପିଲାଙ୍କ ପାଖ କାନ୍ଦୁଛନ୍ତି ଗୋପବନ୍ଧୁ । କାରଣ ପଚାରିବାରୁ ଏଇ ଉତ୍ତର ମିଳିଥିଲା ।

---

୧୯୦୯ ମସିହା । ଗୋପବନ୍ଧୁ ଓକିଲାତି କରୁଥାନ୍ତି । ମନରେ ପାଞ୍ଚିଲେ ଦେଶସେବା କରିବା ଲାଗି ସେ ଗୋଟିଏ ଆଦର୍ଶ ଜାତୀୟ ବାହିନୀ ଗଢ଼ିବେ । ସେହି ଉଦ୍ଦେଶ୍ୟରେ ସେ ପଚିଶ ଜଣ ପର୍ଯ୍ୟନ୍ତ ଯୁବକଙ୍କୁ ଧରି କଟକରୁ ଧବଳେଶ୍ୱର ଗଲେ । ସେହି ଧର୍ମପୀଠରେ ଯୁବକମାନଙ୍କୁ ଜଣ ଜଣ ହୋଇ ଦେଶସେବା-ବ୍ରତରେ ନିଜ ନିଜକୁ ବଳିଦେବା ନିମନ୍ତେ ଶପଥ ଗ୍ରହଣ କରିବାକୁ ହେବ । ସେହି ଯୁବକମାନଙ୍କ ମଧ୍ୟରେ ଥିଲେ ପଞ୍ଚସଖା ଭିତରୁ ଅନ୍ୟତମ ବୀର ପଣ୍ଡିତ ଗୋଦାବରୀଶ ମିଶ୍ର । ସେ ତାଙ୍କର ଆତ୍ମଜୀବନୀରେ ପ୍ରତ୍ୟକ୍ଷ ବର୍ଣ୍ଣନା କରିଛନ୍ତି—

"ଦେବତା ସିଂହାସନରେ ବସିଥାନ୍ତି—ପୂଜକ ଗୋପବନ୍ଧୁ ପାଖେ ପାଖେ ରହିଥାନ୍ତି । ଆମ୍ଭେମାନେ ଜଣ ଜଣ ହୋଇ ଦେଶସେବା-ବ୍ରତରେ ନିଜକୁ ବଳି ଦେବାକୁ ଚାଲିଥାଉ । × × × ଆମ୍ଭେମାନେ ଗୋଟିଏ ଗୋଟିଏ ଗୁଣରେ ନିଜେ ନିଜକୁ ଦୀକ୍ଷିତ କରିବାକୁ ଚାହିଁଥିଲୁ । ସତ୍ୟ, ନିଷ୍ଠା, ସେବା, କ୍ଷମା, ସାହସ, ଅହିଂସା, ଆର୍ଜବ ଆଦି କେତେ ଗୁଡ଼ିଏ ଗୁଣ ସ୍ଥିର କରାଗଲା । ସବୁ ଗୁଣଗୁଡ଼ିକ ତ ମନୁଷ୍ୟର ଦରକାର । କିନ୍ତୁ ଜଣେ ଜଣେ ଗୋଟିଏ ଗୋଟିଏ ଗୁଣର ସମଧିକ ବୃଦ୍ଧି ନିଜ ଜୀବନରେ ସାଧନ କରିବାକୁ ସଂକଳ୍ପ ପାଇଁ ଯାଇଥିଲୁ । ମୁଁ ସତ୍ୟ ବାଛି ନେଇଥିଲି × × × କେହି କେହି ଏକାଧିକ ଗୁଣ ବରଣ କରି ନେଲେ । ଆମ୍ଭେମାନେ ମିଥ୍ୟା, କପଟ, ହିଂସା, ଖଳତାଦି ମନୁଷ୍ୟ ସୁଲଭ ଦୋଷଗୁଡ଼ାକ ସେ ପୁଣ୍ୟ ଯଜ୍ଞପୀଠରେ ବଳି ଦେଲୁ । ଗୋପବନ୍ଧୁ ଆମ୍ଭମାନଙ୍କପାଇଁ ପ୍ରାର୍ଥନା କଲେ ।"

# ନେତ୍ରୋତ୍ସବ




ନିତି ଦେଉଛ ନେତ୍ର ଆମର        ମହୋଦଧି କୂଳେ ଜଗନ୍ନାଥ
ବରଷକେ ଥରେ ତୁମର ନେତ୍ର-        ଉତ୍ସବ ପାଇଁ ଚାଲିଛ ଯାତ୍ର ।
କାଠ ପାଷାଣରେ ନିକଳ ପଟାରେ
ବରଷକେ ଥରେ ରଙ୍ଗ ଉଠାରେ,
ଭକ୍ତ ଟେକିଛ ତୁମର ଆଶାରେ        ସେଇ ଆଖି ପାଇଁ ଯୁଗଳ ହାତ ।

ଯେଦିନ ନେତ୍ର ଉତ୍ସବ୍ ଚାଲେ        ସେଦିନ ଅନ୍ଧ ହୋଇଛୁ ଆମେ;
ଏଇ ଆଷାଢ଼ର ବର୍ଷା-ମୁଖର        ଘନ ଅନ୍ଧାରେ ନିର୍ବାଜ ଯାମେ ।
ଡାକି ବୁଲୁ ନଦୀ-ସାଗର ତଟରେ
ଏଇ ଓଡ଼ିଶାର ମଶାଣି ପୀଠରେ
ଏଇ ବାଲି ଧୂଳି ପଙ୍କ କାଦୁଏ        କୋଟି ଭକ୍ତର ଆକୁଳ ଗାନେ ।

ଦିଅ ହେ ନେତ୍ର, ଦିଅ ବନ୍ଧନ,        ଅକୂଳ ସାଗରେ ନାଅ ହେ ଚାଳି
ମହାଶୂନ୍ୟର ରବି, ଚନ୍ଦ୍ରମା        ତାରକାରେ ଆମ ନୟନ ଖୋଲି ।
ଏଇ ଲାଞ୍ଛିତ, ଏଇ ବଞ୍ଚିତ,
ଜାତଟାରେ ଦିଅ କୃପା କଣ୍ଟିତ,
ହେ ଗୋପବନ୍ଧୁ, କରୁଣା ବନ୍ଧୁ,        ବରଷ ବରଷ ମାଗୁଛୁ ଖାଲି ।



## ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

ଆବିର୍ଭାବ ତା ୯-୧୦-୧୮୭୭ ତିରୋଭାବ ତା ୧୭-୬-୧୯୨୮

ଜନ୍ମ ଶତବାର୍ଷିକୀ ପାଳନ ଉପଲକ୍ଷେ 'ସମାଜ'ର ପ୍ରତିଷ୍ଠାତା ତଥା ନବ ଉତ୍କଳର ନିର୍ମାତାଙ୍କର ଅମର ଆତ୍ମା ଉଦ୍ଦେଶ୍ୟରେ ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ ।

# ସମାଜ

ଗୋପବନ୍ଧୁ ଭବନ : କଟକ : ଓଡ଼ିଶା

# ମହାଦୀପ ସେ ଅନିଭା ଜଳୁ

ଶ୍ରୀମତୀ ବୀଣାପାଣି ମହାନ୍ତି

ସେଇ କାହାଣୀ—ଅତି ସ୍ନେହ, ଅତି ହୃଦୟ-ହୀନତାର, ସ୍ୱାର୍ଥପରତାର ବୃତ୍ତାନ୍ତ । ତଥାପି କ'ଣ ଥାଏ କେଜାଣି ଶୁଣିବାକୁ ଭଲଲାଗେ, ହୃଦୟକୁ ହୃଦୟ ଛୁଇଁଯାଏ, ଆଖିକୁ ଆଖି ମିଶିଯାଏ । ଅଶ୍ରୁ ଲୁହରେ ଲୁହ ମିଶି ସବୁ ଏକାକାର ହୋଇଯାଏ । କୋଉ ଦୁଇଟି ମିଳନ ପ୍ରୟାସୀ ହୃଦୟକୁ ଏକାଠି କରିବା ପାଇଁ ଘୋର ଶୀତ ଓ ବରଫ ବୃଷ୍ଟି ଭିତରେ ସ୍ନେହ ଚଢ଼େଇ ବୁଲ୍‌ବୁଲ୍ ଗୋଲାପ ଗଛର କଣ୍ଟାରେ ତା'ର କଅଁଳ ଛାତିରୁ ରକ୍ତ ନିଗାଡ଼ି ସଫେଦ ପାଖୁଡ଼ାକୁ କରିଥିଲା ରକ୍ତ ରଞ୍ଜିତ, ଲୋଭନୀୟ, ଆକର୍ଷଣୀୟ । ରାତିର ଶେଷ ପ୍ରହରରେ ଗୋଲାପଟି କୁଆଡ଼େ କହୁଥିଲା ବୁଲ୍‌ବୁଲ୍ ଆଉଟିକେ ଫୋଡ଼ ହୋଇଯା—ଆଉଟିକେ ଜୋରରେ ତୋର ଛାତିରେ ମୋର କଣ୍ଟାକୁ ଚିପିଧର-ଗୋଲାପର ରଙ୍ଗ ଯେ ସଂପୂର୍ଣ୍ଣ ଲାଲ ହୋଇନାହିଁ........ ! ସୂର୍ଯ୍ୟର ପ୍ରଥମ ରଶ୍ମି ସେଦିନ ଲାଲରକ୍ତ ଟୁକୁଟୁକୁ ଗୋଲାପଟି ସହ ବୁଲ୍‌ବୁଲ୍‌ର ମୃତ ଶରୀରକୁ ଏକ ସମୟରେ ଚୁମ୍ବନ କରିଥିଲା ଏବଂ ତାହାପରର କାହାଣୀ ଆଉ ବର୍ଣ୍ଣନା କରି ଲାଭ ନାହିଁ ।

ଗୋପବନ୍ଧୁଙ୍କ ଜୀବନଟି ଏଇ ରକ୍ତଗୋଲାପ ଓ ବୁଲ୍‌ବୁଲର କାହାଣୀ । ତ୍ୟାଗ, ଆଦର୍ଶ, ସେବା, ସଂସ୍କାର ଇତ୍ୟାଦି କାର୍ଯ୍ୟ ତାଙ୍କପାଇଁ ସ୍ଲୋଗାନ ନଥିଲା, ଥିଲା ଜୀବନର, ହୃଦୟର, ପ୍ରାଣର ଆଚରିତ ବିଶ୍ୱାସ । ଆଖିର ଅଶ୍ରୁ, ହୃଦୟର ସଂବେଦନା ଓ ମନର ସମସ୍ତ ଆବେଗ ଦେଇ ସେ ଗଢ଼ିଥିଲେ ଦେଶ ଓ ଜାତିର ସର୍ବାଙ୍ଗୀନ ଉନ୍ନତି । ତ୍ୟାଗ ଓ ଆଦର୍ଶର ଧୂପକାଠି ପରି ଉତ୍କଳ ଭୂଖଣ୍ଡର ଶ୍ରୀବୃଦ୍ଧି ନିମନ୍ତେ ନୀରବରେ ନିଜକୁ ନିଃଶେଷ କରିବାକୁ ବୋଧହୁଏ ମନସ୍ଥ କରିଥିଲେ । ନିଜର ରକ୍ତ ଦେଇ, ଅଶ୍ରୁ ଦେଇ, ପ୍ରାଣର ନିର୍ଯ୍ୟାସ ଦେଇ ସେ

ନିହିତ ଥିଲେ ସମସ୍ତ ମାନବ ଜାତିର ସୁଖ ସୌଭାଗ୍ୟ । ସ୍ୱାମୀ ବିବେକାନନ୍ଦଙ୍କ ମହତ୍ ବାଣୀ—

"ତ୍ୟାଗ କର, ତ୍ୟାଗ ଛଡ଼ା କୌଣସି ମହତ କାର୍ଯ୍ୟ ସଂପନ୍ନ ହୋଇ ନପାରେ, ବୁକୁଚିର ହୃତପିଣ୍ଡ ବାହାର କରିବାକୁ ହେବ । ସେହି ରକ୍ତାକ୍ତ ହୃଦୟ ଜନଦେବତାର ବେଦୀମୂଳରେ ଉତ୍ସର୍ଗ କରିବାକୁ ହେବ । ମହତ କାର୍ଯ୍ୟ ନିମନ୍ତେ ମୂଲ୍ୟ ଦେବାକୁ ହେବ ।"

ଏହି କଥାକୁ ଜୀବନର ଏକ ମୂଳମନ୍ତ୍ର କରିଥିଲେ ଗୋପବନ୍ଧୁ । ସେଇଥିପାଇଁ, ଦଳିତ ନିପୀଡ଼ିତ ଭୂଖିଲା ଜନତା ଜନାର୍ଦ୍ଦନର ସେବା କଲାବେଳେ, ସତ୍ୟବାଦୀ ବକୁଳ ବନରେ ଛାତ୍ରମାନଙ୍କୁ ଶିକ୍ଷା ଦେଲାବେଳେ ବା ସ୍ୱାଧୀନତା ଆନ୍ଦୋଳନରେ ସଂଗ୍ରାମରତ ଥିଲାବେଳେ ଚକ୍ଷୁ ଦୁଇଟି ଥିଲା ତାଙ୍କର ସଦା ଅଶ୍ରୁପ୍ରଜଳ । ନିଜର ଅନ୍ତର୍ବେଦନାରେ ସେ ନିଜେ ଢାଳୁଥିଲେ ଲୋତକ ଦେଶ ମାତୃକାର ଚରଣ ତଳେ । ଧର୍ମ ଓ ନିଷ୍ଠାପୂତ ହୃଦୟର ଆବେଗ ମିଶିଯାଇଥିଲା ଜୁଡୁବୁଡୁ ହୋଇ । ନିଜକୁ ତିଳ ତିଳ କରି ଦାନ କରିଦେବାରେ, ନିଃଶେଷ କରିବାରେ ଥିଲା ଗୋପ ଜୀବନର ପରମ ଶାନ୍ତି । ଦେଶ, ଜାତି ଓ ସମାଜ ପାଇଁ, ସମସ୍ତ ଅବହେଳିତ ନିଷ୍ପେସିତ ମାନବ ସମାଜର ମଙ୍ଗଳପାଇଁ ଗୋପବନ୍ଧୁ ଥିଲେ ତାଙ୍କର ସମସ୍ତ ଜୀବନ ଉତ୍ସର୍ଗର—ଅତନ୍ଦ୍ର ଜ୍ୱଳନ୍ତ ଦୀପଶିଖାଟିଏ । ସେ ଜଳିଯାଇ ଅନ୍ୟକୁ ଆଲୋକିତ କରିବ । ଯାହାଙ୍କର ଜୀବନଥିଲା ଉତ୍ସର୍ଗୀକୃତ, ସେ ଜୀବନର ତ୍ୟାଗ ନିଷ୍ଠା ଓ ବ୍ୟକ୍ତିତ୍ୱର ମାନଦଣ୍ଡ କେବଳ ସେଇ ହୋଇ ପାରନ୍ତି ! ତାଙ୍କର ତୁଳନା କେବଳ ସେ ।

ନିଜର କଥା ...... ! ନାଁ ! ତାହା କେବେ ସମ୍ଭବ ହୋଇ ପାରେନା ସାଧାରଣ ରକ୍ତ ପିଣ୍ଡର ମଣିଷ ପକ୍ଷରେ । ସେ ଦିନର ସେଇ ମେଘଭରା ଆକାଶ, ମହାମାରୀ ମଡ଼କର ଆର୍ତ୍ତନାଦ, ଚତୁର୍ଦ୍ଦିଗରେ ବନ୍ୟାର ପ୍ରଳୟ ଭଙ୍ଗ ଅଟ୍ଟହାସ୍ୟ ଭିତରେ ନିଜ ଜୀବନକୁ ପାଣି ଛାଡ଼ିଛି, ନିଜର ଏକମାତ୍ର ବଂଶଧରକୁ ଅନ୍ତିମ ଶଯ୍ୟାରେ ଦେଖି ମଧ୍ୟ ସେ ଦେଶରେ କୋଟି କୋଟି ଅନାଥ ଶିଶୁଙ୍କ ମୁହଁରେ ହସ ଫୁଟାଇବା ପାଇଁ ବୁଲି ଯାଇଥିଲେ । ଏହି କିଛି ଛୋଟ କଥା ନୁହେଁ କି କାହାଣୀର କଳ୍ପନା ନୁହେଁ ତାଙ୍କର ମହାନ ତ୍ୟାଗୀ ବିଶ୍ୱପ୍ରାଣ ଗୋପବନ୍ଧୁଙ୍କର ଦୈନନ୍ଦିନ ଜୀବନର ଛୋଟ ଛୋଟ ଅସଂଖ୍ୟ ଘଟଣା ଏତ ପ୍ରାତଃସ୍ମରଣୀୟ ଯାହାଙ୍କ ଅଲୌକିକ ବୋଲି ସାଧାରଣ ମଣିଷ ଭାବି ନପାରେ

ଏହିପରି ଛୋଟ ବଡ଼ ହୋଇ ଅନେକ ଘଟଣା ଗୋପବନ୍ଧୁଙ୍କ ଜୀବନର ଧର୍ମ, ନିଷ୍ଠା ଓ ତ୍ୟାଗ ଉପରେ ଆଧାରିତ । ସେ ସବୁ ଶୁଣିଲେ ଦେହରେ ରୋମାଂଚ ସୃଷ୍ଟି ହୁଏ, ଆଖିରେ ଜାଗେ ଅଶ୍ରୁ, ପରିବେଶ ଭରିଯାଏ ଏକ ଶାନ୍ତ ସ୍ନିଗ୍ଧ ଶୀତଳତାରେ । କାହିଁକି ? ଦୁଇହାତ ଟେକିଦେଇ ଯୋଡ଼ିହୋଇ, ଅଣ୍ଟୁ ଲୁଗା ଲୁଗା ପିନ୍ଧି ଲୁହ ଢଳ ଢଳ ଆଖିରେ ସେହି ଲୋକଟି ସମଗ୍ର ଉତ୍କଳବାସୀଙ୍କ ହୃଦୟର ସାନ୍ତ୍ୱନା, ଜୀବନର ଅର୍ଘ୍ୟ ଆଉ ମଥାର ମଣି ହୋଇଥିଲା ସେ ଲୋକଟିର ବ୍ୟକ୍ତିତ୍ୱ ଥିଲା ମହାନ୍ ମହିମାବନ୍ତ । ଅନ୍ୟମାନେ ରାଜାହେବା କି ମନ୍ତ୍ରୀ ହେବାପାଇଁ ଦେଶ ସେବାକୁ ଏକ ପନ୍ଥା ବୋଲି ଗ୍ରହଣ କଲାବେଳେ ଗୋପବନ୍ଧୁଙ୍କ ଜୀବନର ବ୍ରତ, ଆରାଧନା ବା ଉପାସନା ଥିଲା ଜନସେବା । ତେଣୁତ ଗୋଟିକ ବଦଳରେ କୋଟିଏ ଜୀବନର ଆରାଧ୍ୟ ଦେବତା ହୋଇଥିଲେ ଗୋପବନ୍ଧୁ । ଏକର କ୍ଷୟରେ ଅନେକର ସର୍ବୋଦୟରେ ବିଶ୍ୱାସୀ ଓ କର୍ମବ୍ରତ ଥିଲେ ବୋଲି ଗୋପବନ୍ଧୁ "ଧର୍ମପଦ" କବିତାରେ ଗାଇଥିଲେ—

ଏକର ବିନାଶେ ଅନେକ ପ୍ରକାଶେ
ସୃଷ୍ଟିର ଏ ନିତ୍ୟବିଧି,
ଏକର ଯା କ୍ଷୟ ଅନେକ ଉଦୟ
ଅନେକ ଏକର ସିଦ୍ଧି ।

ଜୀବନର ଆଦ୍ୟ କାଳରୁ ଗୋପବନ୍ଧୁ ଦେଶ ଓ ଜାତିର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ଆତ୍ମୋତ୍ସର୍ଗ କରିଥିଲେ । ଏଥିରେ ନଥିଲା ଅହମିକା କିମ୍ବା ପ୍ରତିଦାନର ଆଶା । କବିର ସାମାଜିକ ଦାୟିତ୍ୱବୋଧ ତାଙ୍କ କବିତାର ସାରମର୍ମ ଏବଂ ଏହି ମର୍ମହିଁ ଥିଲା ତାଙ୍କ କର୍ମମୟ ଜୀବନର ଛନ୍ଦ । ସମାଜକୁ ବାଦ ଦେଇ କବିତା ରଚନାର ପକ୍ଷପାତୀ ନ ଥିଲେ ଗୋପବନ୍ଧୁ—ତେଣୁ ମାନବ ପ୍ରୀତିରେ ଉଦ୍‌ବୁଦ୍ଧ ହୋଇ ମଣିଷର ଦୁଃଖ ଦୁର୍ଦ୍ଦଶାରେ ବିଗଳିତ ହୋଇ ସମୂହ କଲ୍ୟାଣ ଉଦ୍ଦେଶ୍ୟରେ ଲେଖନୀ ପରିଚାଳନା କରିବା ନିମିତ୍ତ ସେ ସାହିତ୍ୟିକମାନଙ୍କୁ ପ୍ରତ୍ୟକ୍ଷ ଓ ପରୋକ୍ଷରେ ଉତ୍ସାହିତ କରୁଥିଲେ । ତାଙ୍କର ସମସ୍ତ ସାହିତ୍ୟ କୃତି ସମାଜପ୍ରଣୋଦିତ, ମାନବବାଦୀ, ସଂବେଦନଶୀଳ ତଥା ଗଭୀର ଦେଶପ୍ରେମର ସ୍ୱାକ୍ଷର । ପ୍ରତ୍ୟକ୍ଷ ଆନ୍ଦୋଳନରେ ଯୋଗଦେବା ସଙ୍ଗେ ସଙ୍ଗେ ଅପ୍ରତ୍ୟକ୍ଷ ଭାବରେ ଦେଶର ତତ୍କାଳୀନ ଶିକ୍ଷିତ ତରୁଣ ସମାଜକୁ ଅନୁପ୍ରାଣିତ, ଉତ୍ସାହିତ କରିବାକୁ ଯାଇ ଗୋପବନ୍ଧୁ ଲେଖିଥିଲେ ବନ୍ଦୀର ଆତ୍ମକଥାରେ—

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।

ଗୋପବନ୍ଧୁଙ୍କ ଅନ୍ତର୍ଚେତନା ଥିଲା ଗଭୀର ଭଗବତ୍ ବିଶ୍ୱାସୀ । ପିଲାଦିନରୁ ଗୀତା ଭାଗବତ ନିୟମିତ ଭାବରେ ଅଧ୍ୟୟନ କରି ଜୀବନର କର୍ମ କ୍ଷେତ୍ରକୁ ଅବତୀର୍ଣ୍ଣ ହୋଇଥିଲେ ସେ ଜଣେ ସଚ୍ଚୋଟ କର୍ମୀ ହିସାବରେ ଅବହେଳିତ ନିଷ୍ପେଷିତ ମାନବ ଜାତିର ସେବା କରିବାପାଇଁ । ନିଜକୁ ଜନତାର ଓ ଦେଶର ସେବକ ସର୍ବଦା ମନେ କରୁଥିବାରୁ ତାଙ୍କର ସମସ୍ତ ସମୟ ବ୍ୟସ୍ତ ହୋଇଥିଲା କଲ୍ୟାଣକର କାର୍ଯ୍ୟ ସଂପାଦନରେ । ସେହି ଅଳ୍ପ ସମୟ ସେ ପାଇଥିଲେ ଅବକାଶ ସେହି ସମୟ ମଧ୍ୟରେ ଓଡ଼ିଆ ସାହିତ୍ୟକୁ ତାଙ୍କର ଅବକାଶର ଅନୁଭୂତିମାନ ଦେଇ ଏକ ନୂତନ ପଥ ସେ ଦର୍ଶାଇଛନ୍ତି । ଗୋପବନ୍ଧୁଙ୍କ ସାହିତ୍ୟ କୃତି ତାଙ୍କର ସମସାମୟିକମାନଙ୍କଠାରୁ ପରିମାଣରେ କମ୍-ମାତ୍ର ତାର ଦ୍ୟୁତି ବହୁ ଦିଗ ପ୍ରସାରୀ । ଗୋପବନ୍ଧୁ ଥିଲେ ଏକାଧାରରେ କର୍ମୀ, ସେବକ, ଜନନାୟକ, ସାଂବାଦିକ ତଥା ଗଭୀର ଭଗବତ୍ ବିଶ୍ୱାସୀ । କେବଳ, ପାଠକକୁ ଆମୋଦ ଦେବାପାଇଁ କିମ୍ବା କପୋଳ କଳ୍ପନାରେ ଦେଶବାସୀଙ୍କୁ ନିମଜ୍ଜିତ କରିବାପାଇଁ ଯାହା କିଛି ଲେଖିଦେବାର ସେ ଘୋର ବିରୋଧୀ ଥିଲେ । ଜୀବନକୁ ସତ୍ୟ-ନିଷ୍ଠ କରି ଏକ ମହତ୍ତର ଚେତନାରେ ଉଦ୍‌ବୁଦ୍ଧ କରିବା ଥିଲା ତାଙ୍କ ସୃଷ୍ଟିର ଲକ୍ଷ୍ୟ । ସନାତନ ହିନ୍ଦୁ ଧର୍ମର ଉପାସକ ଗୋପବନ୍ଧୁ ଆଞ୍ଚଳିକ ଚେତନାରୁ ମୁକ୍ତ ହୋଇ ସମଗ୍ର ବିଶ୍ୱମାନବର ସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ସେବାକୁ ଜୀବନର ବ୍ରତ କରିପାରେ । ସମଗ୍ର ପୃଥିବୀକୁ ଏକ ପରିବାର ମନେକରିପାରେ, ବିଶ୍ୱାତ୍ମା ସହିତ ଏକୀଭୂତ ହୋଇ ନିଜକୁ ଉତ୍ସର୍ଗ କରିପାରେ ସେଇ ବ୍ୟକ୍ତି ଯାହାର ବ୍ୟକ୍ତିଗତ ସ୍ୱାର୍ଥନାହିଁ, ଲୋଭ ନାହିଁ, ଅହଂକାର ନାହିଁ—ଅଛି କେବଳ ଗୋଟିଏ ବାସନା—ଏକ ମହତ୍ତର ଚୈତନ୍ୟ ନିଜର ସତ୍ତାକୁ ବିଶ୍ୱସତ୍ତାରେ, ଦିବ୍ୟ ଚେତନାରେ ଅନୁଭବ କରିବାର ପ୍ରୟାସ । ସେଥିପାଇଁ ଉତ୍କଳର ନେତା ସ୍ୱୟଂ ନାରାୟଣ ବୋଲି ସେ ଉଦ୍‌ବୁଦ୍ଧ ହୋଇଥିଲେ ଏବଂ ଗାଇଥିଲେ ମୁକ୍ତ କଣ୍ଠରେ—

ନିଜ ସ୍ୱାର୍ଥ ଲାଗି ଜାତ ନୁହେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ ।

ଜୀବନଥିଲେ ତ ନିଶ୍ଚୟ ନାନା ଦୁଃଖ ଝଡ଼ଝଞ୍ଜା ଦେଇ ମନୁଷ୍ୟକୁ ଗତି କରିବାକୁ ହେବ । ଗୋପବନ୍ଧୁ ତାଙ୍କ ନିଜ ଜୀବନ କାଳରେ ନାନା ଘାତ ପ୍ରତିଘାତ ଭିତରେ ଭାଙ୍ଗି ପଡ଼ିନାହାନ୍ତି । ସତ୍ୟବାଦୀର ବକୁଳ ବନରେ ଶିକ୍ଷାଦାନ ବେଳେ ସେ ଯେପରି ଶାନ୍ତ କୋମଳ ପ୍ରାଣ ପ୍ରାଚୁର୍ଯ୍ୟରେ ଛଳ ଛଳ, ସେହିପରି ବଢ଼ି ମରୁଡ଼ି ମହାମାରୀରେ ଆକ୍ରାନ୍ତ ଜନତାର ସେବା କଲାବେଳେ ଅଫୁରନ୍ତ ସାନ୍ତ୍ୱନାର, ଜୀବନ-ଉତ୍ସର ଶାନ୍ତ କରୁଣ ପ୍ରତୀକ । ନିଜ ଅନ୍ତରର ଅଶ୍ରୁଧାର ଦେଇ କୋଟି ଅନ୍ତରକୁ ଆଲୋକିତ କରି ସେ ଶୁଣାଉଥିଲେ ଆଶା ଆଶ୍ୱାସନାର ବାଣୀ ଉତ୍କଳୀୟଙ୍କ ନୈରାଶ୍ୟମୟ ପ୍ରାଣରେ—

ନହୁଅ ନିରାଶ, ନହୁଅ ଦୁଃଖିତ
ଉତ୍କଳର ଦେଖି ଦୁଃଖମୟ ଚିତ୍ର
ସୁଖ-ଦୁଃଖ-ଚକ୍ର ଘୂରେ ନିରନ୍ତର
ଏକ ପରେ ଅନ୍ୟ ଆସିବ ମୁକର !

ନିଜେ ଗୋପବନ୍ଧୁ ଥିଲେ ସତ୍ୟ ଶିବ ସୁନ୍ଦରର ଉପାସକ । କ୍ଷୁଦ୍ର ସ୍ୱାର୍ଥ, ଅହଂଭାବରୁ ମୁକ୍ତ ଥିବାରୁ ଏବଂ ଗଭୀର ମାନବିକତାରେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ ହୋଇଥିବାରୁ ଓ ମନୁଷ୍ୟର ସେବାକୁ ସ୍ୱୟଂ ନାରାୟଣଙ୍କ ସେବାବୋଲି ଗ୍ରହଣ କରି ଥିବାରୁ ଦୁଃଖ ସୁଖ ଭିତରେ କୌଣସି ପ୍ରଭେଦ ଦେଖିପାରି ନଥିଲେ । ଅଜସ୍ର ଅଶ୍ରୁପାତ କରି ମଧ୍ୟ ସେ ବିଷାଦ ଯନ୍ତ୍ରଣାରେ କର୍ମବିଚ୍ୟୁତ ହୋଇ ନଥିଲେ ବରଂ କର୍ମ ସମ୍ପାଦନ କରିବାପାଇଁ ନବ ନବ ଉତ୍ସାହରେ ଅନୁପ୍ରାଣିତ ହୋଇଥିଲେ ।

ଗୋପବନ୍ଧୁଙ୍କର ବିରାଟ କର୍ମମୟ ଜୀବନ ଏକ ଏକ କବିତା । ବ୍ୟକ୍ତି, ସମାଜ, ରାଷ୍ଟ୍ର ତଥା ସମଗ୍ର ବିଶ୍ୱମାନବର କଲ୍ୟାଣପାଇଁ ଜୀବନକୁ ଉତ୍ସର୍ଗ କରିଥିଲେ ଧୂପପରି ଜଳିଯାଇ । ସେହି ବିରାଟ ବ୍ୟକ୍ତିତ୍ୱର ମହାମାନବର ଅନ୍ତଃସ୍ଫୂର୍ତ୍ତି ଥିଲା ଅଖଣ୍ଡ ଭଗବତ୍ ବିଶ୍ୱାସ ଏବଂ ସେହି ଦିବ୍ୟ ଚେତନାଦେଇ ଦେଶ ମାତୃକାର ସେବା ଓ ଉନ୍ନତ ସାଧନା । ଦେଶ ବନ୍ଦନା କରି ସେ ବହୁ କବିତା ଲେଖିଛନ୍ତି ଏବଂ ଅତୀତ ଗୌରବର ଅବକ୍ଷୟ ଅନୁଧ୍ୟାନ କରି ମଧ୍ୟ ମର୍ମାହତ ହୋଇଛନ୍ତି । ଅତୀତର ଭିତ୍ତି, ଯଶ ଓ କୀର୍ତ୍ତି ଉପରେ ବର୍ତ୍ତମାନ ଓ ଭବିଷ୍ୟତର ସମୃଦ୍ଧି ନିର୍ଭର କରେ ବୋଲି ଉତ୍କଳୀୟ ମାନଙ୍କ ମନରେ ଅତୀତ ପ୍ରତି ସମ୍ମାନ ପ୍ରଦର୍ଶନ କରିବାପାଇଁ ଏବଂ ଅତୀତ ସ୍ମୃତି ସଂରକ୍ଷଣପାଇଁ ଚେତନା ଜାଗ୍ରତ କରିବାକୁ ତାଙ୍କର ସମସ୍ତ ରଚନାରେ ଉତ୍କଳର ଐତିହାସିକ, ସାମାଜିକ ଓ ସାଧାରଣ ଲୋକ କୀର୍ତ୍ତିର ଭୂରି ଭୂରି ଆଲୋଚନା କରିଛନ୍ତି । ଉତ୍କଳ ପ୍ରକୃତିର ବିଭିନ୍ନ ଚିତ୍ର ତାଙ୍କର ଅନେକ କବିତାରେ ମଧ୍ୟ ଦେଖିବାକୁ ମିଳିଥାଏ ।

କେହି କେହି ସମାଲୋଚକ ଗୋପବନ୍ଧୁଙ୍କର 'କାରା କବିତା'କୁ ପାଠକରି ତାଙ୍କୁ ବିଷାଦବାଦୀ କବି ହିସାବରେ ଗଣନା କରିଥାନ୍ତି । କିନ୍ତୁ ଏମତ ଯୁକ୍ତିଯୁକ୍ତ ନୁହେଁ—କାରଣ ବିଷାଦ ଅପେକ୍ଷା ବନ୍ଦୀତ୍ୱରୁ ପାଇଥିବା

ଛଳନାରେ କବିଙ୍କର ଯେଉଁ ବେଦନା, ଯେଉଁ କ୍ଷୋଭକମ୍ପନ ତାହାର ଅନ୍ତଃସ୍ୱର ନୈରାଶ୍ୟଜନକ ହେବା ସ୍ୱାଭାବିକ ହେଲେହେଁ ତାଙ୍କର ବିରାଟ କର୍ମମୟ ଜୀବନ ଓ ତାର ଚିନ୍ତା ଚେତନାକୁ ପ୍ରଭାବିତ କରିପାରି ନାହିଁ । 'ବନ୍ଦୀର ଆତ୍ମକଥା'ରେ ସେ ଦେଶବାସୀଙ୍କୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାପାଇଁ ଆହ୍ୱାନ ଜଣାଇଛନ୍ତି । ଅତି ଦୃଢ଼ କଣ୍ଠରେ, ଅତୀତ ସ୍ମୃତି ରୋମନ୍ଥନ କରି ବର୍ତ୍ତମାନର ଅସହାୟ ଅବସ୍ଥାରେ 'କାରା କବିତା'ରେ ସେ ବିଷାଦଗ୍ରସ୍ତ ହୋଇ ପଡ଼ିଥିବାବେଳେ 'ବନ୍ଦୀର ଆତ୍ମକଥା'ରେ ସେ ନିର୍ଭୀକ, ସଂଗ୍ରାମଶୀଳ ଓ ଗମ୍ଭୀର ସ୍ୱରରେ ଆଶାବାଦୀ ହୋଇ ଉଠିଛନ୍ତି । ସେଥିରେ ଦେଖିବାକୁ ମିଳେ ଅସହଯୋଗ ଆନ୍ଦୋଳନ ପ୍ରତି ତାଙ୍କର ଆତ୍ମୋତ୍ସର୍ଗ, ତତ୍କାଳୀନ ସାମାଜିକ ରାଜନୈତିକ ତଥା ସାଂସ୍କୃତିକ ଜୀବନର ଆଲେଖ୍ୟ । ବିଦେଶୀ ସରକାରର ସ୍ୱାର୍ଥକୁ ଗୋଲାମ କରି ରଖିବାର ପ୍ରବୃତ୍ତି ବିରୁଦ୍ଧରେ ସେ ଆଜୀବନ ଥିଲେ ସତର୍କ ଏବଂ ସେଇଥିପାଇଁ ଶାନ୍ତିନିକେତନ ଭଳି ଏକ ବିଦ୍ୟାଳୟ ସ୍ଥାପନ କରି ଏକ ସୁସ୍ଥ ସ୍ୱଚ୍ଛ ସମାଜ ଗଠନ କରିବାର ଅପ୍ରାଣ ଚେଷ୍ଟା କରିଥିଲେ । ତାଙ୍କର ଜୀବନକାଳ ଭିତରେ ମନୁଷ୍ୟର ନିର୍ଯ୍ୟାତନା ଓ ସବଳର ଦୁର୍ବଳ ଉପରେ ଅତ୍ୟାଚାର ଅବିବେକୀ ଆଚରଣ ଦେଖି ସେ ଶୋକାତୁର ହୋଇ କ୍ଷୋଭକପାତ କରିଛନ୍ତି ଅଜସ୍ର; ମାତ୍ର ଭାଙ୍ଗିପଡ଼ି ନାହାନ୍ତି । ଯେଉଁ ଆଖିରୁ ଅଶ୍ରୁ ଝରିଛି, ସେହି ଆଖିରୁ ଅଗ୍ନି ମଧ୍ୟ ଝରିଛି । ସରକାରଙ୍କର ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ସେ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ୧୯୧୯ ମସିହାରେ ପୁରୀ ଜିଲ୍ଲାରେ ଦେଖା ଦେଇଥିବା ଭୟାନକ ଦୁର୍ଭିକ୍ଷପାଇଁ ସରକାରଙ୍କୁ ଅଭିଯୁକ୍ତ କରି ବିଧାନ ସଭାରେ ସେ କହିଥିଲେ । "ଏ ପ୍ରଦେଶରେ କୌଣସି ନିର୍ଜନ କୋଣରେ ଯଦି କୌଣସି ସାମାନ୍ୟଲୋକ ଖାଇବା ବିନା ମରିଯାଏ, ତେବେ ତା ପକାଣେ ପାପ ଲାଗିବ ସରକାରଙ୍କୁ ।"

'ବନ୍ଦୀର ଆତ୍ମକଥା'ରେ ପ୍ରତି ଛନ୍ଦେ ଛନ୍ଦେ ଦେଶାତ୍ମବୋଧ ଚେତନାର ଭାବ ସୁପ୍ରକଟିତ । ତାଙ୍କର ବିଶ୍ୱାସଥିଲା ସତ୍ ଓ ମହତ ପଥରେ ରହିଲେ ଓ ଉଚିତ୍ କର୍ମ ସମ୍ପାଦନ କଲେ ବ୍ୟକ୍ତି, ସମାଜ ଓ ରାଷ୍ଟ୍ରର ସର୍ବାଙ୍ଗୀନ ଉନ୍ନତି ହୋଇଥାଏ । ଏହାର ମୂଳତତ୍ତ୍ୱ ହେଲା ଗଭୀର ଆତ୍ମ ବିଶ୍ୱାସ ଓ ଦିବ୍ୟ ଚେତନା । ତେଣୁ କର୍ମ କରିବାହିଁ କେବଳ ତାଙ୍କର ବାସନା ଥିଲା । ଫଳ ପ୍ରାପ୍ତିର ଆଶା ନଥିବାରୁ ସେ ଆଜି ପ୍ରତିଟି ହୃଦୟରେ ନିଷ୍କାମ ମହାପୁରୁଷର ସ୍ଥାନ ଅଧିକାର କରିଛନ୍ତି ।

ଗୋପବନ୍ଧୁଙ୍କ ରଚନା କ୍ଷୁଦ୍ର, ସୀମିତ ହୋଇପାରେ । ମାତ୍ର ତାର ଦ୍ୟୁତି ଜଗତ୍‌ବ୍ୟାପୀ । କବିତା ରଚନାରେ ଆଙ୍ଗିକ, ଶୈଳୀ, ଉପମା ନଥାଇପାରେ କିମ୍ବା ଆଧୁନିକ କବିତାର ମାନଦଣ୍ଡରେ ତାହା ଉତ୍ତୀର୍ଣ୍ଣ ହୋଇ ନପାରେ । ମାତ୍ର ସାହିତ୍ୟର ଶ୍ରେଷ୍ଠ ବିଭବ, ସର୍ବ ଶ୍ରେଷ୍ଠ କଳା 'ମାନବିକ ଆବେଦନ' ସେଥିର ପ୍ରତି ଛନ୍ଦେ ଛନ୍ଦେ ପ୍ରକଟିତ । ଏ ଦୃଷ୍ଟିରୁ ବିଚାର କଲେ ଗୋପବନ୍ଧୁଙ୍କ ସାହିତ୍ୟ କୃତି ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଏକ ଉଜ୍ଜ୍ୱଳ ରତ୍ନ । ସାହିତ୍ୟର ମର୍ମବାଣୀ ଅନ୍ତଃ ଚେତନାକୁ ଯେଉଁ କେତେଜଣ କଳାକାର ଜୀବନର ପ୍ରତି ମୁହୂର୍ତ୍ତରେ ଛନ୍ଦାୟିତକରିଯାଇଛନ୍ତି, ସେହିପରି ମୁଷ୍ଟିମେୟ ଯୋଗୀ, ସନ୍ୟାସୀ, କଳାକାରମାନଙ୍କ ଭିତରୁ ଗୋପବନ୍ଧୁ ଅନ୍ୟତମ । ତାଙ୍କର କବିତା ପରି ଜୀବନ ଥିଲା ଜାଗ୍ରତ, ଚେତନା ଥିଲା ସ୍ୱର୍ଗୀୟ ଅନୁଭୂତି ନିମିତ୍ତ ବ୍ୟାକୁଳ, ନିଜର ସର୍ବସ୍ୱ ହୋଇଥିଲା ଦେଶ, ଜାତି ଓ ମାନବିକତାର ସ୍ୱାର୍ଥ ଯଜ୍ଞରେ ସମର୍ପଣ । ତେଣୁ ଗୋପବନ୍ଧୁ ନିଜେହିଁ ଏକ ସାର୍ଥକ ସଫଳ କବିତା ଗୁଚ୍ଛ, ଜୀବନର ସର୍ବଶ୍ରେଷ୍ଠ କଳା ଓ ଚେତନାର ପରିପ୍ରକାଶ କହିଲେ ଭୁଲ ହେବନାହିଁ । କବି ନିଜେ ସମଗ୍ର ମାନବ ସମାଜକୁ ଶୁଦ୍ଧଯୁକ୍ତ ଜୀବନ ଯାପନ କରି ଅମୃତର ସନ୍ତାନ ହେବାପାଇଁ ନିର୍ଦ୍ଦେଶ ଦେଇ ଗାଇଥିଲେ—

'ସମସ୍ତ ଜୀବନ କର ଏକ ଶିବରାତ୍ରି,
ଅନ୍ଧାରେ ନଡ଼ିବ ପଥ ହେ ସ୍ୱରୂପ ଯାତ୍ରୀ ।'

ସେଇଥିପାଇଁ କବି ଅନନ୍ତ ପଟ୍ଟନାୟକ ଗୋପବନ୍ଧୁଙ୍କୁ ଏକ ମହାଦୀପ, ଏକ ପଥ ପ୍ରଦର୍ଶକ, ଏକ ମହାନ ଜାତିର ଧ୍ରୁବତାରା, ଦଳିତ ନିଷ୍ପେଷିତ ଜୀବନର ମୃତ ସଂଜୀବନୀ ବୋଲି ହୃଦୟର ନୈବେଦ୍ୟ ଅର୍ପଣ କରି ଯଥାର୍ଥରେ ଗାଇଛନ୍ତି—

'କେତେ ଏ ଜାତି ବୋଇତ ଲାଗି
ମହାଦୀପ ସେ ଅନିଭା ଜଳୁ,
ଜୀଅ ଏ ତାର ପରଶ ତାତେ
ନିରାଶ ଯେତେ ଦୁଃଖୀମନଙ୍କୁ ।'

ଅଧ୍ୟାପିକା,
ରମାଦେବୀ ମହିଳା କଲେଜ, ଭୁବନେଶ୍ୱର



ଗତ ଅକ୍ଟୋବର ୯ ତାରିଖ ଦିନ କଟକର ଗୋପବନ୍ଧୁ ପାର୍କରେ ଶ୍ରୀମତୀ ନନ୍ଦିନୀ ଶତପଥୀ ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତିରେ ସମ୍ବଲପୁରୀ ବସ୍ତ୍ର ଆଚ୍ଛାଦନ କରିଥିଲେ ।



ସାଂସ୍କୃତିକ ବ୍ୟାପାର ମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ର ଅକ୍ଟୋବର ୯ ତାରିଖ ଦିନ ସୁଆଣ୍ଡୋ ଗ୍ରାମରୁ ଅଣା ଯାଇଥିବା 'ଅଖଣ୍ଡ ଜ୍ୟୋତି' ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ହସ୍ତାନ୍ତର କରୁଛନ୍ତି ।



ଗତ ଅକ୍ଟୋବର ୯ ତାରିଖ ଦିନ ଭୁବନେଶ୍ୱର ଆଠ ନମ୍ବର ଇଉନିଟ୍ ଛକରେ ଥିବା ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ କରିବା ପରେ ମନ୍ତ୍ରୀମଣ୍ଡଳର ସଦସ୍ୟ, ପ୍ରଦେଶ କଂଗ୍ରେସ ସଭାପତି ଓ ଅନ୍ୟାନ୍ୟଙ୍କ ଗହଣରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ।



ଗୋଦାବରୀଶ, ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ଲିଙ୍ଗରାଜ, କୃପାସିନ୍ଧୁ ଆଦିଙ୍କ ସମାଧି ନିକଟରେ ଗୋପବନ୍ଧୁଙ୍କ ସମାଧି ।

# ପ୍ରେମିକ ଆତ୍ମା ଗୋପବନ୍ଧୁ



ଶ୍ରୀମତୀ ଅର୍ଚ୍ଚନା ନାୟକ

ଗୋପବନ୍ଧୁ ବସ୍ତୁତଃ ଥିଲେ ପ୍ରେମିକ । ଜାତୀୟବାଦୀ, ସଂସ୍କାରକ, ତ୍ୟାଗୀ, ବିଦ୍ରୋହୀ, ଦେଶପ୍ରେମୀ, ମାନବବାଦୀ ଓ ବିଶ୍ୱପ୍ରେମିକ ରୂପେ ବିଶେଷ ଭାବରେ ପରିଚିତ ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱର ମୂଳଭିତ୍ତି ହେଲା ତାଙ୍କର ପ୍ରେମିକତା । ଏହି ପ୍ରେମିକତା ତାଙ୍କର ଏକ ଚାରିତ୍ରିକ ସ୍ୱଭାବ ମାତ୍ର ନୁହେଁ—ଏହା ତାଙ୍କର ବ୍ୟକ୍ତିତ୍ୱର ସମସ୍ତ ବିକାଶସାଧନରେ ମୂଳବୀଜ ସଦୃଶ । ପ୍ରଚଣ୍ଡ ଅଭିଳାଷ, ଉଚ୍ଚାକାଂକ୍ଷାର ବଶବର୍ତ୍ତୀ ହୋଇ ଜାତି ଓ ଦେଶର ନେତୃତ୍ୱ ନେବାପାଇଁ ଆଗେଇ ଆସିଥିବା ବିଶିଷ୍ଟ ଜନନାୟକମାନଙ୍କର ଦୃଷ୍ଟାନ୍ତ ଇତିହାସରେ ଲିପିବଦ୍ଧ ହୋଇ ରହିଛି । କିନ୍ତୁ ଗୋପବନ୍ଧୁ ଜାତିର ଦୁର୍ଦ୍ଦିନରେ ଏ ଜାତିକୁ ଉଦ୍ଧାର କରିବା ନିମନ୍ତେ ନିଜର ସର୍ବସ୍ୱ ସମର୍ପଣ କରିବାରେ ତିଳେମାତ୍ର କୁଣ୍ଠାବୋଧ କରି ନ ଥିଲେ ନିଜ ଲୋକଙ୍କ ପ୍ରତି ଶ୍ରଦ୍ଧାବଶରୁ । ତାଙ୍କର ଭାଷାରେ "ସାର୍ବଜନୀନ ମାନବ ସମାଜ ଭଗବାନଙ୍କର ଅଭିବ୍ୟକ୍ତି । ମାନବ ସେବା ହିଁ ଭଗବାନ ସେବା । ବସ୍ତୁତଃ ଜାତୀୟତା ଆମ୍ଭମାନଙ୍କର ଧର୍ମ । ଈଶ୍ୱର ଆମ୍ଭର ଜାତି-ରୂପରେ ଆମ୍ଭମାନଙ୍କ ନିକଟରେ ଉପସ୍ଥିତ ।" ସେ ଈଶ୍ୱରଙ୍କୁ ଦେଖିଥିଲେ ମଣିଷ ଭିତରେ, ତାଙ୍କୁ ଅନୁଭବ କରିଥିଲେ ମଣିଷ ଭାବରେ । ଶିବଜ୍ଞାନରେ ଜୀବସେବାର ମହତ୍ତ୍ୱର ଓ ଅଭୂତପୂର୍ବ ଆଦର୍ଶ ଏବଂ କର୍ମର ଫଲ୍‌ଗୁଧାରା ଗୋପବନ୍ଧୁହିଁ ଓଡ଼ିଶା ମାଟିରେ ପ୍ରବାହିତ କରିଥିଲେ । ତାଙ୍କର ପ୍ରେମପୂର୍ଣ୍ଣ ଅନ୍ତର ନୀଚ ସ୍ୱାର୍ଥବୋଧ, କ୍ଷୁଦ୍ରତା ପରିହାର କରି ଅହଂକାରର ନିଗଡ଼ ବନ୍ଧନରୁ ମୁକ୍ତ ହୋଇ ଅଗଣିତ ଦୁଃଖୀ ଦେଶବାସୀଙ୍କ ସହିତ ଏକାତ୍ମା ହେବା ସଙ୍ଗେ ଭୌଗୋଳିକ ଓଡ଼ିଶାର ପ୍ରତିଟି ଧୂଳିକଣା, ବନଭୂମି, ନଦୀ, ପର୍ବତ, ଜନପଦ ତାଙ୍କ ହୃଦୟ-ସଂଜାତ ରସରେ ସିକ୍ତ ଓ ପ୍ରାଣବନ୍ତ ହୋଇ ଉଠିଥିଲା ।

କବିତା ଭିତରେ କବି ଆତ୍ମପ୍ରକାଶ କରେ, କଥା କୁହେ, ତା'ର ଭାବନା ଓ କଳ୍ପନାକୁ ଭାଷାର ଅଭିବ୍ୟକ୍ତି ଦିଏ । ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ଏହି ବିଶିଷ୍ଟ ଦିଗଟି ଉନ୍ମୋଚିତ

ହୋଇଛି ତାଙ୍କର ରଚନାରେ । ଗୋପବନ୍ଧୁଙ୍କ ସାହିତ୍ୟ ତାଙ୍କର ଜନସେବା ଓ ଈଶ୍ୱରପ୍ରୀଣତାର ସୃଷ୍ଟିଗତ ଅଭିବ୍ୟକ୍ତି ମାତ୍ର । ବିରାଟ ମାନବିକତା, ଈଶ୍ୱର ଗଭୀରତା, ପ୍ରାଣର ଅନୁଭୂତି ଓ ଆତ୍ମାର ସ୍ପର୍ଶରେ ତାଙ୍କ ରଚନା ଭକ୍ତିମନ୍ତ୍ର । ଜନସେବାର ଆନ୍ତରିକତା, ଧର୍ମବିଶ୍ୱାସର ନିଷ୍ଠାପରତା, ଦେଶପ୍ରୀତିର ଐକାନ୍ତିକତା, ଏ ସମସ୍ତଙ୍କର ଅପୂର୍ବ ସମବାୟରେ ଗଢିଉଠିଛି ତାଙ୍କର ସାହିତ୍ୟ ସୃଷ୍ଟି । ସଂଗ୍ରାମ ବିଦ୍ରୋହର ପୃଷ୍ଠଭୂମି ଉପରେ ଗୋପବନ୍ଧୁଙ୍କର ଅନ୍ତରର କାବ୍ୟପୁରୁଷ ଅବତୀର୍ଣ୍ଣ ହୋଇଥିଲେ ହେଁ, କୋଳାହଳ ମୁଖରିତ ରଙ୍ଗପ୍ରାଙ୍ଗଣରୁ ସାମାନ୍ୟ ଅବ୍ୟବହିତ କାଳରେ ତାଙ୍କର ପ୍ରାଣର ଦରଦୀ ଓ ମରମୀ ମଣିଷଟି ବେଳେ ବେଳେ ଆତ୍ମପ୍ରକାଶ କରି ନିଜକୁ ଅନାବୃତ କରି ଦେଇଛି, ସେହି କ୍ଷଣିକ ଉଦ୍‌ଭାସହିଁ ତାଙ୍କର ପ୍ରକୃତ ଆତ୍ମାର ସ୍ପର୍ଶ ବହନ କରି ହୋଇ ଉଠିଛି ସୁନ୍ଦର ଓ ଲାବଣ୍ୟମୟ ।

ଜୀବନର ସକଳ ସୃଷ୍ଟିର ମୂଳାଧାର ପ୍ରେମ । ପ୍ରେମହିଁ ଅନ୍ତରର ସର୍ବୋତ୍ତମ ପ୍ରକାଶ । ଆତ୍ମିକ ଐଶ୍ୱର୍ଯ୍ୟର ଚରମ ଓ ପରମତମ ପ୍ରେମାନୁଭୂତି ବ୍ୟତିରେକେ କବିଆତ୍ମା ତା' ଜୀବନର ଶ୍ରେଷ୍ଠଅର୍ଘ୍ୟ ପ୍ରଦାନ କରିପାରେନା । ମାନବ ହୃଦୟର ପ୍ରେମପ୍ରୀତି, ଶ୍ରଦ୍ଧା ସୋହାଗ, ଦୟା କ୍ଷମା ଏ ସମସ୍ତ ଯେପରି ତାଙ୍କ ରଚନାକୁ ରସସିକ୍ତ, ବେଦନାବିଧୁର ଓ ମର୍ମସ୍ପର୍ଶୀ କରିତୋଳିଛି । ମଣିଷର ସୁଖଦୁଃଖ, ହସକାନ୍ଦ, ଆଶାନିରାଶା ଭିତରେ ସେ ନିଜକୁ ମିଶାଇ ଦେଇଥିଲେ । ତେଣୁ ତାଙ୍କ କବିତାରେ ମଣିଷର ଅନ୍ତର କଥା ମଣିଷ କହୁଛି—ମଣିଷର ଦୁଃଖରେ ମଣିଷ ଅଶ୍ରୁଳିପ୍ତ ହେଉଛି—ମଣିଷର ପ୍ରେମପ୍ରୀତିରୁ ବଞ୍ଚିତ ମଣିଷର ଅନ୍ତରାତ୍ମା ହାହାକାର କରି ଉଠିଛି । ପ୍ରେମିକ କବିର ଅନ୍ତର ଫୁଲ ଫୁଟୁଥିବା ଚମ୍ପାପୁଅର ଦୁଃଖ ପରି ଜର୍ଜରିତ ହୋଇଛି, ଗାଈଆଳ ପିଲାର ବଂଶୀଧ୍ୱନି ଶ୍ରବଣରେ ବିମୁଗ୍ଧ ହୋଇଛି, ଜଳକୁମ୍ଭ ବହନ କରି ମନ୍ଥରଗମନା ଗ୍ରାମବଧୂର ମାତୃତ୍ୱର ପ୍ରକାଶ ନିକଟରେ ଅବନତ ହୋଇଛି, ପୁଣି ବିଶ୍ୱପ୍ରକୃତିରେ ମିଳନର ଦୃଶ୍ୟ ଅବଲୋକନ କରି ଅତୀନ୍ଦ୍ରିୟ ଭାବରେ ଆବେଶରେ ପୁଲକିତ ହୋଇ-ଉଠିଛି । କବିଙ୍କର ପ୍ରେମ ଯେତିକି ସାଂସାରିକ ତତୋଽଧିକ ସ୍ୱର୍ଗୀୟ । ବ୍ୟକ୍ତିଗତ ଜୀବନର କ୍ଷୁଦ୍ର ପରିସରକୁ ପରିପୂର୍ଣ୍ଣକରି ସେ ପ୍ରେମର ଅନନ୍ତ ପ୍ରବାହ ବିଶ୍ୱପ୍ରେମ ସାଗରରେ ନିମଜ୍ଜିତ ହୋଇଛି । କବି ଅନୁଭବ କରିଛନ୍ତି ଦ୍ୱନ୍ଦ୍ୱ ସଂଘାତପୂର୍ଣ୍ଣ ଜୀବନରେ ପ୍ରେମହିଁ କେବଳ ଅମୃତର ବାରି ସିଞ୍ଚନ କରିପାରେ—

କଣ୍ଟକ ସଙ୍କୁଳ ପଥେ କୁସୁମ ବିତାନ
ମରୁଭୂମେ ପ୍ରେମ ସ୍ନିଗ୍ଧ ସଲିଳ ସମାନ
ମରପିଣ୍ଡେ ପ୍ରେମ ଏକ ଅମର ଭଣ୍ଡାର
ପାର୍ଥିବ ଜଗତେ ପ୍ରେମ ସ୍ୱର୍ଗ ସୁଧାଧାର ।

ଅଥଚ ସେହି ସୁଧାଧାର ଭୁଲ ବୁଝାମଣାର ବିଷ କଣିକାରେ ଜର୍ଜରିତ ହୋଇ କବି ଅନ୍ତରକୁ କ୍ଷତବିକ୍ଷତ କରି ତୋଳିଛି । ପ୍ରେମ ଓ ବିଚ୍ଛେଦର ମର୍ମିକ ଅନୁଭୂତିର ଏକ ମନୋଜ୍ଞ କାବ୍ୟଚିତ୍ର ପ୍ରକାଶ ପାଇଛି ତାଙ୍କର 'ପ୍ରେମର କି ଏହି ପରିଣାମ' କବିତାରେ—

କିହେ ଯେ ବୃକ୍ଷରେ ଶିର ରଖିହିଁ ଆନମୁଖେ
ଶୋଇଥିଲୁ କୁତୂହଳେ ଏକ ମନସୁଖେ
ଯେତେ ଯେତେ କଥା ଅଛି ସେ ବୃକ୍ଷ ଭିତରେ
ଫିଟିବ ନାହିଁ କି ତାହା କେବେ ଏକାନ୍ତରେ
ଏକକୁ ଅନାଇ ଆନ ନୈନୁ ଅଶ୍ରୁଧାର
ବହିବ ନାହିଁ କି ଭେଦି ହୃଦୟ ଦୁଆର ?

ପ୍ରେମର ତାତ୍ତ୍ୱିକ ସତ୍ୟକୁ କବିଚିତ୍ତ ଅଲକ୍ଷ୍ୟରେ ସ୍ୱୀକାର କରି ଗାଇ ଉଠିଛି—

ବିଚ୍ଛେଦେ ବିକାଶେ ପ୍ରେମ ଅତି ମଧୁମୟ
ଶୀତ ଅନ୍ତେ ଶୋଭେ ଯିନା ନବକିଶଳୟ ।

ବିରହର ଅଗ୍ନିରେହିଁ ପ୍ରେମର ଶୁଦ୍ଧତା ପରୀକ୍ଷା କରାଯାଇ ପାରେ । କବିଙ୍କର ଜଣେ ଆଜୀବନ ସହକର୍ମୀ, ଯେ କେବଳ ସହକର୍ମୀ ନ ଥିଲେ, ଥିଲେ ତାଙ୍କର କର୍ମ ସହଚର, ଏକାନ୍ତ ଆପଣାର ଓ ଯାହାଙ୍କ ଲାଗି ଗୋପବନ୍ଧୁଙ୍କର ଅନ୍ତରର ଅମଳ ଶ୍ରଦ୍ଧା ଉତ୍ସାରିତ ହେଉଥିଲା । ଯାହାଙ୍କର ସଫଳତା କବିଙ୍କୁ ମୁଗ୍ଧ କରୁଥିଲା ଓ ଯାହାଙ୍କ ହାତରେ ସମସ୍ତକର୍ମର ଦାୟିତ୍ୱ ପ୍ରଦାନକରି କବି ନିଶ୍ଚିନ୍ତ ହୋଇଥାନ୍ତେ, ସେହି ବନ୍ଧୁ କୌଣସି ଘଟଣାରେ ଗୋପବନ୍ଧୁଙ୍କ ପ୍ରତି ବିରକ୍ତ ହୋଇ ତାଙ୍କର ସଖ୍ୟ ସୌହାର୍ଦ୍ଦ୍ୟକୁ ପ୍ରତ୍ୟାଖ୍ୟାନ କରି ତାଙ୍କୁ କଟୁ ସମାଲୋଚନା କଲେ । ସେହି ବନ୍ଧୁଙ୍କ ଉଦ୍ଦେଶ୍ୟରେ ରଚିତ 'ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ' ଗୋପବନ୍ଧୁଙ୍କର ଦରଦୀ କ୍ଷମାଶୀଳ ସୁଗମ୍ଭୀର ପ୍ରେମିକ ମନର ଆଲେଖ୍ୟ ବହନ କରିଛି ।

କବି ପ୍ରକାଶ କରନ୍ତି—

ଏ ଜୀବନେ ପ୍ରେମ ନୁହେଁ ଅବସାନ
ଅନ୍ୟସ୍ଥାନେ ପୁଣି ହେବତ ଦେଖା
ଶୁଦ୍ଧ ନେତ୍ରେ ତହିଁ ଦେଖିବ ମୋ ହୃଦେ
ପ୍ରେମ ରସାଣିତ ଅମୃତ ଲେଖା ।

* * *

ପ୍ରେମ ପଥ ସହେ          ସବୁ ସୁଖଘାଏ
ପ୍ରେମ ନଜାଣଇ କେବେ ଶୋଚନା
ପ୍ରିୟ ଜନେ ନୁହେଁ          ପ୍ରେମିକ ବିମୁଖ
ହେଲେ ହେଉ ପଛେ ଗୁରୁ ଯନ୍ତ୍ରଣା ।

ପ୍ରେମର ମିଳନ ଅନୁଭୂତ ଯେତିକି ସୁଖଦାୟକ ତା'ର ବିରହାନୁଭୂତ ସେତିକି ତୀବ୍ର ଯନ୍ତ୍ରଣାଦାୟକ । ତେଣୁ କବି ଉପଲବ୍ଧି କରିଛନ୍ତି ଗାଢ଼ ଆଲିଙ୍ଗନ, ସୁମଧୁର ଚୁମ୍ବନ, ବିମଳହାସ୍ୟ ପ୍ରେମର ଏକ ଦିଗ ହେଲେ ଲୋହିତ ଲୋଚନ, ନିଷ୍ଠୁର ବଚନ ଓ ଓଲଟ ଲକ୍ଷଣ ମଧ୍ୟ ଅନ୍ୟ ଏକ ଦିଗ । ପ୍ରେମିକକୁ ପ୍ରେମର ବ୍ୟଞ୍ଜନା ଓ ଲାଞ୍ଛନା ଉଭୟକୁ ସମଭାବରେ ଗ୍ରହଣ କରିବାକୁ ହୁଏ । କବିଙ୍କର ବ୍ୟଥିତ ପ୍ରାଣ ଏହି ଉପଲବ୍ଧିରେ ସ୍ଥିର ଓ ଏକାଗ୍ର ହୋଇ ତା'ର ପ୍ରେମର ସାଧନା ନୀରବରେ ଅବ୍ୟାହତ ରଖିଛି ।

ନୀରବ ପ୍ରେମିକ ନେଇ ଅଶ୍ରୁଜଳ ଝଳ
ନୀରବେ ସରସୀ ବକ୍ଷେ ହସେ ଶତଦଳ ।

( ନୀରବ )

ଇନ୍ଦ୍ରିୟର ଏହି ଅଶ୍ରୁଳ ଅକ୍ଷତ ଅନୁଭୂତପରେ ତାଙ୍କ ସମ୍ମୁଖରେ ସ୍ୱତଃ ଦେଖା ଦେଉଛି ସତ୍ୟ, ଶିବ ଓ ସୁନ୍ଦରର ସ୍ୱଲୋକ । କବିଙ୍କ ନିକଟରେ ଜଡ଼ ଜଗତ ପ୍ରାଣବନ୍ତ ହୋଇ ଉଠିଛି ସୁଧାଂଶୁ ଓ ସୁନୀଳସିନ୍ଧୁ, ତରୁ ଓ ଲଳିତ ଲତିକା, ତପନ ଓ ନଳିନୀ, ସରିତ ଓ ସାଗରର ପ୍ରେମପୂର୍ଣ୍ଣ ମିଳନ ଉତ୍ସବ ଦର୍ଶନରେ କବି ଆତ୍ମା ପରମାତ୍ମାର ଅନନ୍ତ ମିଳନର ପରିକଳ୍ପନାରେ ତନ୍ମୟ । ବିଶ୍ୱ ସୃଷ୍ଟିର ସବୁ ଭୂତରେ ଆତ୍ମା ଦର୍ଶନକରି ବିଶ୍ୱ ପ୍ରେମର ଧାରାରେ ଏକାତ୍ମ କବି ଗାଇଛନ୍ତି—

ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବି ବିଶ୍ୱପ୍ରେମ ପରମାନନ୍ଦେ ।

ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ ପସରା ।

ଦରଦୀ କବି ଗୋପବନ୍ଧୁଙ୍କର ଯାତନାକ୍ଲିଷ୍ଟ ହୃଦୟ ସତ୍ତ୍ୱଥିରେ ଯେପରି ଅଶ୍ରୁ ଆବେଗଭରା ଉଚ୍ଛ୍ୱାସରେ ନିଜକୁ ପ୍ରକାଶ କରିବାକୁ ଆକୁଳହୋଇ ଉଠିଛି । ତାଙ୍କର କବିତା ଗୁଚ୍ଛକରେ ଶିଶୁ ସୁଲଭ ସରଳ ପ୍ରାଣ, ଅକପଟ ସ୍ନେହମାଧୁରୀ, ଅନାବିଲ ଅଶ୍ରୁଧାରାର ଉଷ୍ମତା ଓ ଉଚ୍ଛ୍ୱାସ ପ୍ରକଟିତ । କବି ପ୍ରାଣରେ ଥିଲେ ବୈଷ୍ଣବ, ତେଣୁ ଭକ୍ତ ବୈଷ୍ଣବ ଜନସୁଲଭ ଭାବାବେଗ ପ୍ରେମ କରୁଣା ଓ କୋମଳତାରେ ତାଙ୍କ ହୃଦୟ ଥିଲା ସମୃଦ୍ଧ । ତେଣୁ ତାଙ୍କର ବ୍ୟଥାତୁର ଓ ପ୍ରେମସିକ୍ତ ହୃଦୟର ପରିଚୟ ତାଙ୍କ କବିତା ପଂକ୍ତିରେ ହିଁ ଆମେ ପାଉଥାଉ ।

ଅଧ୍ୟାପିକା,
ଶୈଳବାଳା ମହିଳା କଲେଜ
କଟକ-୨



ଜଗତ-ସରସେ ଭାରତ-କମଳ
ଥିଲେ ଯହିଁ ତହିଁ ଭାରତ ବକ୍ଷରେ
ମୋ ନେତ୍ରେ ଭାରତ-ଶିଳା ଶାଳଗ୍ରାମ
ସକଳ ସଲିଳ ପଣ୍ୟତୀର୍ଥଜଳ

ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।
ମଣିବି ମୁଁ ଅଛୁ ଆପଣା କକ୍ଷରେ ।
ପ୍ରତିସ୍ଥାନ ମୋର ପ୍ରିୟ ପୁଣ୍ୟଧାମ ।
ପ୍ରତିଧର୍ମୀଲୟ ମୋର ନୀଳାଚଳ ।

ଭାରତବାସୀର ଧର୍ମବଳସାର
ଦଅ ସ୍ୱାର୍ଥବଳ ଦେଖାଅ ଯେ ତ୍ୟାଗ
..ଦେବ ପ୍ରତିଷ୍ଠିତ ମହର୍ଷି ସମ୍ମତ
ହିନ୍ଦୁଜାତି ବନ୍ଦେ ଏକତା, ସମତା

ଧର୍ମବିନା ଆଜ ଏତେ ହାହାକାର ।
ଭାରତ ଜାତୀୟ ମହାଯାଗେ ଲାଗ ।
ଜାଗିବ ଭାରତ, ଦେଖିବ ଜଗତ ।
ଶାନ୍ତ ଉଚ୍ଚରବେ ସରବେ ଦେବତା ।



ଶ୍ରୀମତୀ ପ୍ରତିଭା ଶତପଥୀ

ସଂବାଦପତ୍ରର ସାମ୍ନା ପୃଷ୍ଠାରେ ଫଟୋ
ନଈକୂଳ ବୁଦାରେ ଲଟକିଥିବା
ତୃଣପାଣ୍ଡୁବର୍ଣ୍ଣ ଝିଅଟିର
ପଚ୍ଚ ମାଛପରି ଶବ
ଖଣ୍ଡେ ଛିଟଜାମା ଆଉ
ରବର କାଚର ଚପା ଦାଗ ।
କଳାହାଣ୍ଡି ମନ୍ଦିରେ
ଅନାହାର ପୀଡ଼ିତ ଶିଶୁର
ଗୋଡ଼, ହାତ ଫୁଲଫୁଲ
ଭୟାତୁର ଆଖିର କୋରଡ଼ ।
ଦିନ ଦିନ ଧରି ଏଇ ଛବି
ଷୋଡ଼ଶୀର ସ୍ୱର
ବୁଡ଼ିଲା ବାରଟି ଗାଆଁ
ପାଞ୍ଚଫୁଟ୍ ବଢ଼ିପାଣି ଘେର ।

ଆମେ ସବୁ ଦୁଃଖକରୁ
ସମବେଦନାରେ ହୁଏତ ଅସ୍ଥିର ହେଉ
କିନ୍ତୁ ତା' ଦୁଇଟି ଆଖି
ଟଳମଳ ଦରଦରେ
ତା'ର ଅସ୍ଥିରତା
ପଣ୍ଡିତ ନିଷ୍ଠା, ଦୃଢ଼ତାରେ
ଚିନ୍ତା, ସମ୍ବେଦନା ତା'ର
ଆତ୍ମା ତରଳାଏ
ବନ୍ଧୁ! ଅପେ ଆଖିବାଟେ
କରୁଣାର ସହସ୍ର ଧାରରେ
ସମ୍ମୋହିତ ହାତ ଲମ୍ବିଯାଏ
ପାଦଦୁଇ ଦ୍ରୁତ ପଥେ ପଡ଼େ ।

ଛିଣ୍ଡା କଖାରୁ ଲଟାପାଖରେ
'ଲେପ୍‌ଟେଇ ଥିବା ସ୍ଥଳ
ସନ୍ତସନ୍ତିଆ ଭୂଇଁରେ

ନଇଁପଡ଼େ ଯିଏ, ଅନ୍ତରଙ୍ଗତାରେ ।
ଢୁ ଢୁ ବର୍ଷାସ୍ରୋତ, ଶୋଇଲା ଶେଯରେ
ଝର ଝର ଲୁହ
ଗଛମୂଳେ, ନଈ ବନ୍ଧପରେ
ସର୍ ସର୍ ଚାଲି ଯାଉଥିବା ସାପଙ୍କ ମେଳରେ
ପାଣି ଫୁଡୁବୁଡ଼ୁ, କାତର ମଣିଷ ପାଇଁ
ଫାଟିପଡ଼େ ବେଦନାର୍ତ୍ତ ମୁହଁ ।

ତୁମେ କେବେ ଦେଖିଛ କି
ଶିଶୁପୁର ଛକପାଖେ ତା'ର
ଅପଲକ ସ୍ପନ୍ଦହୀନ ଆଖି ପଥରର ଦେହ
କେହ କେବେ ତା'ଆଡ଼େ ଚାହିଁଛ କି ?
ଆକାଶର ଥାକ ଥାକ ମେଘଲଦା ଝରମୁହ
ବର୍ଷାଭିଜା ସବୁଜର ବଣ, ଧାନକ୍ଷେତ
ଉଠାଣି ଗଡ଼ାଣି ରାସ୍ତାଗୁଡ଼ିକର
କଳାନାଳି ଗାର ଅଙ୍କା
ଶାଗୁଆ ମାନଚିତ୍ର,
ଗହଗହ ମଣିଷର ସୁଅ,
ଥରଟିଏ ମାତ୍ର ତାକୁ ଚାହ !
ସେ କେମିତି ଭିନ୍ନ ଦିଶେ ଆମଠାରୁ
ତା ପାଖରେ ଏକାକାର
କାମ ଆଉ କଥା,
ମୂର୍ତ୍ତିମାନ ସଫଳ କବିତା,
କରୁଣା ଓ କାରୁଣ୍ୟର ।
୧୯୬୭ ଓ ରଥଯାତ୍ରା ମହାମାରୀ
ମୃତ୍ୟୁକୁ କରୁଣା କରି
ଚାଲିଥାଏ ବାଟ ଅସୁମାରି ।
ବାଟ ତା'ର ଏବେ ବି ଉନ୍ମୁକ୍ତ
ଅମଡ଼ା ଓ ନଗ୍ନଟିଆ
କିଏ ଯିବ ସେ ପଥରେ ?
ଯିଏ ନିଶ୍ଚେ ପାଇବତା ଶୁଭ ଆଶୀର୍ବାଦ
ସେ ଆଖି ଦୁଇଟି ଅଶ୍ରୁ ଚହଲା ଜଣା ।
ଆଜଠାରୁ ଶହେ ବର୍ଷ ତଳେ
ଅବହେଳିତା, ସୁନ୍ଦରୀ ଓଡ଼ିଶା ମାଆର କୋଳେ
ଜନ୍ମିଥିଲା ଯିଏ
କିମ୍ବଦନ୍ତୀର ମଣିଷ ନୁହେଁ;
ଏ ମାଟିର ମୂର୍ତ୍ତିମନ୍ତ, ଉଷ୍ଣ
ଆର୍ଦ୍ର ଏକ ସମ୍ବେଦନା ।

ଅଧ୍ୟାପିକା,
ରମାଦେବୀ ମହିଳା କଲେଜ, ଭୁବନେଶ୍ୱର



# ଶ୍ରଦ୍ଧାଞ୍ଜଳି

ଶ୍ରୀ ନେତ୍ରାନନ୍ଦ ସାମନ୍ତରାୟ

କେତେ ଆଉ ଦୁଃଖକଷ୍ଟ ଦେଖିଥାନ୍ତା ଏଠି
ବାରଦ୍ୱାରେ ବୁଲିବୁଲି ପାଢ଼ିଥାନ୍ତା ପଠି !
ଲୁହକୁ ତା ଲହୁକରି
ପିଲା ମାଇପକୁ ଛାଡ଼ି
କେତେ ଆଉ ସଢ଼ିଥାନ୍ତା ପଙ୍କ କାଦୁଅରେ ?
ଚୁଡ଼ା ମୁଢ଼ି ହାତେ ଧରି ଲୋକ ଉପାସରେ !!

ଗଲା ଗଲା ଭଲ କଲା
ମହାଶାନ୍ତି ପାଇଗଲା
ମହାନିଦ୍ରା ଶୋଇଗଲା ଅନ୍ତିମ ଶଯ୍ୟାରେ..
ଛାଡ଼ି ମାୟା ମୋହ ଲୀଳା
ଭବରଙ୍ଗ ଖେଳଶାଳା
ସେ ରହିଲା ସ୍ୱର୍ଗବାସେ ମହା ଆନନ୍ଦରେ,
ଆଉ କାହିଁ ଆସନ୍ତା ସେ ବନ୍ୟା ମରୁଡ଼ିରେ ?
ଭୁଲିଗଲା ଭୁଲିଗଲା ଦୁଃସ୍ଥ ଓଡ଼ିଆରେ !!

କେଉଁ କାଳ ତାକୁ ନେଲା..
ଦୁଃସାହସେ ଈର୍ଷା କଲା
ତାକୁ କ'ଣ ମହାକାଳ କେବେ ନେଇପାରେ ?
ସେତ ଜୟୀ ମରଣର
ସେତ ସର୍ବ ମାନବର
ବଞ୍ଚିଅଛି ମାଟି ଗୋଡ଼ି ପାଣି ପବନରେ..
କିଏ ବୀର ଅଛି ତାକୁ ନେବ ଯମପୁରେ ?

ସେ'ତ ମହା ପୂଜ୍ୟଜନ..
ସାନବଡ଼ ତା ସମାନ
ଚଣ୍ଡାଳ ବ୍ରାହ୍ମଣ ଲୋକ ସବୁ କଲା ଭାଇ,
ହୃଦେ ଯାର ବିଶ୍ୱପ୍ରୀତି
ସେ ନୁହେଁ ବା ଦଳପତି
ଲୋଡ଼ିନାହିଁ ହାତୀ ଛତି
ଦିନେ ଯିଏ ଶାନ୍ତିରେ ତା କାଳ କାଟି ନାହିଁ ;
ଏତେ ସାଥୀ କରିଥିଲା
କୋଉ ଗଣ୍ଠି ବାନ୍ଧିନେଲା
ସବୁ ଖାଲି ଛାଡ଼ିଗଲା ଦେଶ ଜାତି ପାଇଁ
ହିଂସା ଦ୍ୱେଷ ଜୀବନେ ତା ଟିକେ ଶିଖି ନାହିଁ ;

ସେତ' ନିଜେ କର୍ମବୀର
ସେତ' ମହା ଅବତାର
ପର ସେବା ମନ୍ତ୍ର ତାର ଖୋଜି ଦୁଃଖିଦୀନ,
ତା ଆଦର୍ଶ କାହିଁ ଆଜି..
କେତେ ଆଉ ଭଣ୍ଡ ସାଜି
ଯୋଡୁଥିବା ଶୋଭାଯାତ୍ରା ପଛୁଆର ମାନ,
ତା କଥାକୁ ଘେନା କଲେ
ସ୍ୱର୍ଗବାସେ ସେ ପାଇବ ପବିତ୍ର ସମ୍ମାନ..
ଆଦର୍ଶ ତା' ଦିବ୍ୟ ଜ୍ୟୋତି ଚିର ମହୀୟାନ ॥

ନ ପୂଜା କରିବା ତାର
ନ ଧ୍ୱଜା ଧରିବା ତାର
ନିଜେ ଆଗେ ନିଜକୁରେ ଅରେ ହେଲେ ଚିହ୍ନ..
ପବିତ୍ର ଆଦର୍ଶେ ତାର ସ୍ଥିରକର ମନ,

ତା ନହେଲେ ଶ୍ରଦ୍ଧାଞ୍ଜଳି ଯେତେ ସ୍ତୁତିଗାନ..
ସବୁ ଖାଲି ନିରର୍ଥକ..ସବୁ ମୂଲ୍ୟ ହୀନ
ନାମପାଇଁ ବାଇ ନୁହେଁ କର୍ମେ ତା ଜୀବନ
ମୂକ ସାକ୍ଷୀ ସତ୍ୟବାଦୀ..ତା ବକୁଳ ବନ ॥

ଯୋଜନା ଓ ସମନ୍ୱୟ ବିଭାଗ,
ରାଜ୍ୟ ସଚିବାଳୟ,
ଭୁବନେଶ୍ୱର



## କର୍ମାଭିମୁଖୀ ଶିକ୍ଷାଦ୍ୱାରା ଛାତ୍ରଛାତ୍ରୀମାନେ ସ୍ୱାବଲମ୍ବନଶୀଳ ହେବେ

ଗତ ସେପ୍ଟେମ୍ବର ୨୫ ତାରିଖରେ ନାଗାଲାଣ୍ଡର କୋହିମାଠାରେ କର୍ମଦକ୍ଷତା ଶିକ୍ଷା ଉପରେ ହୋଇଥିବା ଆଲୋଚନାଚକ୍ରର ଉଦ୍‌ଯାପନ ଉତ୍ସବରେ ଶିକ୍ଷାମନ୍ତ୍ରୀ ଶ୍ରୀ ଯଦୁନାଥ ଦାସ ମହାପାତ୍ର ମୁଖ୍ୟ ଅତିଥିଭାବେ ଯୋଗ ଦେଇ କହିଲେ ଯେ କର୍ମାଭିମୁଖୀ ଶିକ୍ଷାଦ୍ୱାରା ଛାତ୍ରଛାତ୍ରୀମାନେ ସ୍ୱାବଲମ୍ବନଶୀଳହୋଇ ସମାଜର ମଙ୍ଗଳସାଧନ କରିପାରିବେ । କର୍ମଦକ୍ଷତା ଅର୍ଜନ କରିବା ଭାରତବର୍ଷରେ ବୈଦିକ ଯୁଗରୁ ପ୍ରଚଳିତ ଥିଲା । ଦେଶ ଇଂରେଜୀ ଶାସନାଧୀନକୁ ଆସିବା ପରେ ଶିକ୍ଷା ବ୍ୟବସ୍ଥା ଅନ୍ତର୍ମୁଖୀ ହୋଇଥିଲା । ବର୍ତ୍ତମାନ ସାରା ଭାରତବର୍ଷରେ ଏହି ନୂତନ ଶିକ୍ଷାନୀତି ପ୍ରଚଳିତ ହୋଇଛି ଓ ପ୍ରତ୍ୟେକ ରାଜ୍ୟ ଏହା ଉପରେ ଗୁରୁତ୍ୱ ଦେଉଛନ୍ତି । ନାଗାଲାଣ୍ଡର ହାଇସ୍କୁଲ୍‌ମାନଙ୍କରେ କର୍ମାଭିମୁଖୀ ଶିକ୍ଷା ପଦ୍ଧତି ବହୁତ ଦିନରୁ ପ୍ରଚଳିତ ହୋଇ ଆସୁଥିବା ଜାଣି ଶ୍ରୀ ଦାସ ମହାପାତ୍ର ଆନନ୍ଦ ପ୍ରକାଶ କରିଥିଲେ । ଓଡ଼ିଶା ମାଧ୍ୟମିକ ଶିକ୍ଷାବୋର୍ଡ଼ର ସଭାପତି ଶ୍ରୀ ବ୍ରଜବନ୍ଧୁ ମିଶ୍ର ଓ ଆଂଚଳିକ ଶିକ୍ଷା ମହାବିଦ୍ୟାଳୟର ଅଧ୍ୟକ୍ଷ ଡକ୍ଟର ଗୋଷ୍ଠବିହାରୀ କାନୁନ୍‌ଗୋ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ନାଗାଲାଣ୍ଡର ଶିକ୍ଷା ସଚିବ ଶ୍ରୀ ପୁରୀ ସଭାପତିତ୍ୱ କରିଥିଲେ । ନାଗାଲାଣ୍ଡର ଦାଖାମା ଗ୍ରାମରେ ଅନୁଷ୍ଠିତ ଏକ ସମ୍ବର୍ଦ୍ଧନା ସଭାରେ ଶିକ୍ଷାମନ୍ତ୍ରୀ କହିଲେ ଯେ ନାଗାଲାଣ୍ଡର ଆଦିବାସୀ ଓ ଓଡ଼ିଶାର ଆଦିବାସୀମାନଙ୍କର ଶିକ୍ଷା ସମସ୍ୟା ପ୍ରାୟ ଏକ ପ୍ରକାର । ଶିକ୍ଷା ମାଧ୍ୟମରେ ପ୍ରତ୍ୟେକ ଭାରତୀୟ ଜାତୀୟ ସ୍ରୋତରେ ସାମିଲ୍ ହେବା ଉଚିତ ।

# ଲୋକ ସେବକ ସମାଜ ଓ ଗୋପବନ୍ଧୁ



ଶ୍ରୀ ନିତ୍ୟାନନ୍ଦ ଶତପଥୀ

୧୯୨୦ ମସିହା କଲିକତା କଂଗ୍ରେସର ବିଶେଷ ଅଧିବେଶନରେ ଗୋପବନ୍ଧୁ ପ୍ରଥମେ ଲାଲାଜୀଙ୍କୁ ଦେଖିଥିଲେ । ଯେ ସ୍ମୃତି ତାଙ୍କ ପାଇଁ ଭୁଲିବାର ନୁହେଁ । ସେ କଥା ଯେ ଅତି ଉଚ୍ଛ୍ୱସିତ ଭାବରେ ସତ୍ୟବାଦୀର ସବୁ ଶିକ୍ଷକଙ୍କ ଆଗରେ ପ୍ରକାଶ କରିଥିଲେ । ଏପରିକି କଲିକତାରେ ଜଗନ୍ନାଥ ଦର୍ଶନ ହୋଇଗଲା ବୋଲି ସେ ପ୍ରକାଶ କରିବାରେ ବନବିଦ୍ୟାଳୟର ଅନ୍ତେବାସୀମାନେ ବିସ୍ମିତ ହୋଇଯାଇଥିଲେ । ସେ ଲାଲାଜୀଙ୍କୁ ଜଗନ୍ନାଥ, ଗାନ୍ଧୀଙ୍କୁ ବଳଭଦ୍ର ଓ ଅନିବେଶାନ୍ତଙ୍କୁ ସୁଭଦ୍ରା ଭାବେ ତୁଳନା କରି କଲିକତା କଂଗ୍ରେସର ଜନସମାଗମକୁ 'ଗୁଣ୍ଡିଚା ଯାତ୍ରା' ରୂପେ ଚିହ୍ନିତ କରିଥିଲେ । ତା'ପୂର୍ବରୁ ୧୯୧୯ର କୋଠଦେଶ ବନ୍ୟାବେଳେ ଲାଲାଜୀ ଲୋକସେବକ ସମାଜ ତରଫରୁ ଲାଲା ମୋହନଲାଲଙ୍କୁ ଓଡ଼ିଶା ପଠାଇଥିଲେ । ଏହି ସମୟରେ ମୋହନଲାଲଙ୍କ ସହିତ ଗୋପବନ୍ଧୁଙ୍କର ବନ୍ଧୁତା ସ୍ଥାପିତ ହୋଇଥିଲା ଓ ପରୋକ୍ଷରେ ଗୋପବନ୍ଧୁ ଲାଲାଜୀଙ୍କ ପ୍ରତି ଆସକ୍ତ ହୋଇପଡ଼ିଥିଲେ । ତା ୧୭-୪-୧୯୨୫ ତାରିଖରେ ନିଜେ ଲାଲାଜୀ ପୁରୀ ଆସିଲେ ଏବଂ ଘଟଣାକ୍ରମେ ସେତେବେଳେ ପୁରୀର 'ସମାଜ' ପ୍ରତିଷ୍ଠାନରେ ସେ ଅତିଥି ଭାବରେ ତିନି ଦିନ ରହିଥିଲେ । ଭାରତସାରା ହିନ୍ଦୁ ମହାସଭାର ଶାଖା ଗଠନ କରିବାରେ ଲାଲାଜୀ ସେତେବେଳେ ଅପ୍ରାଣ ଲାଗିଥାନ୍ତି । ଗୋପବନ୍ଧୁ, ଲିଙ୍ଗରାଜ ଓ 'ସମାଜ' ପ୍ରେସର ତତ୍କାଳୀନ ମ୍ୟାନେଜର ଶ୍ରୀ ରାଧାନାଥ ରଥ ଏହି ପୁରୀ ରହଣି କାଳରେ ଲାଲାଜୀଙ୍କ ସମ୍ପର୍କରେ ଅଧିକ ଆସିଥିଲେ ।

୧୯ ତାରିଖ ଦିନ ପୁରୀରେ ଏକ ସାଧାରଣ ଜନସଭାର ଆୟୋଜନ ହେଲା । ଏହି ସଭାରେ ଲାଲାଜୀ ହିନ୍ଦୁ ମହାସଭା ଗଠନର ଉଦ୍ଦେଶ୍ୟ ସମ୍ପର୍କରେ ବିସ୍ତୃତ ଭାବରେ ତାଙ୍କ ବକ୍ତବ୍ୟରେ ବିଶ୍ଳେଷଣ କରିଥିଲେ । ସେ ତାଙ୍କ ଭାଷଣରେ କହିଲେ ଯେ ଭାରତର ସ୍ୱାଧୀନତା ଆମ

ସମସ୍ତଙ୍କର କାମ୍ୟ ହେଲେ ମଧ୍ୟ ଏକ ଅର୍ଦ୍ଧମୃତ ନିଶ୍ଚେତନ ଜାତି ପାଇଁ ଏହା ଏକମାତ୍ର କାମନା ନୁହେଁ/ଭାରତ ଏକ ବହୁଧର୍ମମତବାଦର ଦେଶ । ଏଠାରେ ବାସ କରୁଥିବା ମୁସଲମାନ୍ ଓ ଖ୍ରୀଷ୍ଟିୟାନ୍‌ମାନେ ଯେତେବେଳେ ସେମାନଙ୍କ ଧର୍ମକୁ ଦୃଢ଼ ଭାବରେ ଧରି ରଖିଛନ୍ତି, ଆଚାର ଓ ପରଂପରାରେ ଫୁଟାଇଛନ୍ତି ସେତେବେଳେ ହିନ୍ଦୁମାନେ ନିଜ ଧର୍ମ ଦିଗରେ ଅତି ଉଦାସୀନ ହୋଇ ବେଳେ ବେଳେ ଅନ୍ୟ ଧର୍ମକୁ ନିର୍ବିଚାରରେ ଗ୍ରହଣ କରି ବସୁଛନ୍ତି । ଭାରତର ଏହି ଜନସଂଖ୍ୟା ବହୁଳ ସଂଖ୍ୟକ ହିନ୍ଦୁଙ୍କୁ ନେଇ ଗଠିତ । ଯଦି ହିନ୍ଦୁମାନେ ନିଜ ଧର୍ମ ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରକାଶ ନ କରି ଅନ୍ୟ ଧର୍ମ ଦ୍ୱାରା ପ୍ରଲୋଭିତ ହୁଅନ୍ତି, ତେବେ ସେମାନେ ସ୍ୱାଧୀନତା ହାସଲ କରିବାପାଇଁ କିପରି ସମର୍ଥ ହେବେ ? ତାଙ୍କର ଏଥିପାଇଁ ଯୋଗ୍ୟତା କାହୁଁ ଆସିବ? ଲାଲଜୀ ତେଣୁ ଗୋପବନ୍ଧୁଙ୍କୁ ତଥା ତାଙ୍କ ସହକର୍ମୀମାନଙ୍କୁ ହିନ୍ଦୁ ଧର୍ମର ପବିତ୍ରତା ତଥା ପ୍ରାଧାନ୍ୟକୁ କଂଗ୍ରେସର ସମସ୍ତ କାର୍ଯ୍ୟପରିସର ଭିତରେ ବଜାଇ ରଖିବାକୁ ଏବଂ ହିନ୍ଦୁମାନଙ୍କ ସଂଗଠନକୁ ମଜଭୁତ କରିବାପାଇଁ ପରାମର୍ଶ ଦେଇଥିଲେ । ଗୋପବନ୍ଧୁଙ୍କ ଉଦ୍ୟମରେ ଓଡ଼ିଶାରେ ହିନ୍ଦୁ ମହାସଭାର ଶାଖା ଗଠିତ ହେଲା । ଶ୍ରୀ ଧନପତି ବାନାର୍ଜୀ ଓ ପଣ୍ଡିତ ନୀଳକଣ୍ଠ ଯଥାକ୍ରମେ ଏହି ଅନୁଷ୍ଠାନର ପ୍ରଦେଶ ଶାଖା ସଭାପତି ଓ ସଂପାଦକ ରହିଲେ ।

ଲାଲଜୀ ୨୮-୧-୧୯୨୪ ତାରିଖରେ ଏ ସଂକ୍ରାନ୍ତରେ ଏକ ପତ୍ରରେ ଗୋପବନ୍ଧୁଙ୍କୁ ଲେଖିଥିଲେ, "ପ୍ରିୟ ଗୋପବନ୍ଧୁ, ଏଣିକି ତୁମକୁ ଗୋପବନ୍ଧୁ ବୋଲି ଡାକିବାର ସ୍ୱାଧୀନତା ମୁଁ ନେଉଛି । ତୁମ ଚିଠି ପାଇଛି ଓ ଅନୁଧ୍ୟାନ ମଧ୍ୟ କରିଛି । ତୁମ ପ୍ରଦେଶରେ ହିନ୍ଦୁ ମହାସଭାର ସମସ୍ତ ଦାୟିତ୍ୱ ତୁମ ଉପରେ ସମର୍ପି ଦେଲେ ମୁଁ ଅତିମାତ୍ରାରେ ଆଶ୍ୱସ୍ତ ଓ ଆନନ୍ଦିତ ହେବି । ଖୁବ୍ ଶୀଘ୍ର ଅଫିସରୁ ତୁମେ ଏ ସଂକ୍ରାନ୍ତରେ ଚିଠି ପାଇଯିବ । ମୁଁ ବର୍ତ୍ତମାନ ଏତେ ବ୍ୟସ୍ତ ଅଛି ଯେ ତୁମ ପାଖକୁ ଚାହିଁଲେ ମଧ୍ୟ ଦୀର୍ଘ ଚିଠିଟିଏ ଲେଖି ପାରୁନାହିଁ । କିନ୍ତୁ ଶୀଘ୍ର ଲେଖିବାର ଆଶା ରଖୁଛି । ସ୍ନେହ ସହ ।"

ପୁଣି ଫେବୃଆରୀ ମାସରେ ଗୋପବନ୍ଧୁଙ୍କର ଲାହୋରଠାରେ ଲାଲଜୀଙ୍କ ସହ ସାକ୍ଷାତ ହେଲା । ଲାଲଜୀ ଅତି ଆନ୍ତରିକତାର ସହିତ କହିଲେ, "ଗୋପବନ୍ଧୁ ତୁମେ 'ଲୋକସେବକ ସମାଜ'ର ସଭ୍ୟ ହେଲେ ପରିଷ ବର୍ଷ ଧରି ଯେଉଁ କାମ କରି ଆସିଅଛ ତାହା ଆହୁରି ପ୍ରକଟିତ ହୋଇ ପାରିବ । ତୁମକୁ ପାଇଲେ ଆମେ ଆପଣାକୁ ଭାଗ୍ୟବାନ ମନେ କରିବୁ । ତୁମର ଲୋକସେବକ-ମୂଳକ କାମ ମଧ୍ୟ ଶୃଙ୍ଖଳିତ ଭାବରେ ଆଗେଇ ପାରିବ । ଏଥିପାଇଁ ଆନୁଷ୍ଠାନିକ ଭିତ୍ତି ଓ ଉଦ୍ୟମ ଦରକାର । ତୁମ ସ୍ୱାଧୀନ ଚିନ୍ତା ଓ ମତବାଦରେ କେହି ହସ୍ତକ୍ଷେପ କରିବେ ନାହିଁ ।"

ଲାଲଜୀଙ୍କର ଏହି ଶ୍ରଦ୍ଧାପୂର୍ଣ୍ଣ କଥା ଗୋପବନ୍ଧୁଙ୍କୁ ସ୍ପର୍ଶ କଲା । କିଛିଦିନ ପରେ ସେ ଲୋକସେବକ ସମାଜର ସଭ୍ୟ ଭାବରେ ତାଙ୍କୁ ସ୍ୱୀକୃତି ଦେଇଥିଲେ । ଏହି ଭାରତବ୍ୟାପୀ ସଂସ୍ଥା ମାଧ୍ୟମରେ ଓଡ଼ିଶାର ଦରିଦ୍ର ନାରାୟଣଙ୍କର ଅଧିକ ସେବା କରିପାରିବେ ବୋଲି ଗୋପବନ୍ଧୁଙ୍କର ହୃଦବୋଧ ହୋଇଥିଲା ।

୧୯୨୬ ମସିହା ଫେବୃଆରୀ ୧୮ ତାରିଖରେ ସେ ଲାଲଜୀଙ୍କ ପାଖକୁ ଏକ ଦୀର୍ଘ ପତ୍ରରେ ଓଡ଼ିଶାପାଇଁ କାର୍ଯ୍ୟକ୍ରମର ଏକ ଚିଠା ଉପସ୍ଥାପିତ କରିଥିଲେ । ପଣ୍ଡିତ ଗୋଦାବରୀଶ, ଶ୍ରୀ ନନ୍ଦ କିଶୋର ଦାସ, ଶ୍ରୀ ମଥୁରାନନ୍ଦ ମହାନ୍ତି ଓ ରାଧାନାଥ ରଥଙ୍କୁ ଲୋକସେବକ ସମାଜର ସଭ୍ୟ ଭାବରେ ଗ୍ରହଣ କରିବାକୁ ଗୋପବନ୍ଧୁ ପ୍ରସ୍ତାବ ଦେଇଥିଲେ । ଏହି ସଂସ୍ଥାର ସଂଗଠନ, ପରିବୃଦ୍ଧି, ପାଠଚକ୍ର ଆୟୋଜନ, ଯୁବ ତାଲିମ ଓ ସଭାସମିତି, ବନ୍ୟା ସାହାଯ୍ୟ କାର୍ଯ୍ୟ ଆଦି ସହିତ ଦୁଇଟି ମଲ୍ୟବାନ କାର୍ଯ୍ୟକ୍ରମ ଗ୍ରହଣ କରିବାପାଇଁ ସେ ଲାଲଜୀଙ୍କୁ ଲେଖିଥିଲେ । ପ୍ରଥମତଃ ଓଡ଼ିଶାର ଗ୍ରାମମାନଙ୍କରେ ଆର୍ଥନୀତିକ, ସ୍ୱାସ୍ଥ୍ୟ ଓ ଶିକ୍ଷାଗତ ପୁନର୍ଗଠନ । ଅଶିକ୍ଷା ଓ ଦାରିଦ୍ର୍ୟ ଓଡ଼ିଶାର ପ୍ରଗତିର ପ୍ରଧାନ ପ୍ରତିବନ୍ଧକ ଭାବରେ ଠିଆହୋଇଛି । ଏ ଦେଶର ଲୋକ ଏତେ ଦରିଦ୍ର ଯେ ରୋଗ ବାଧକ୍ୟରେ ଔଷଧ ଓ ପଥ୍ୟ ଖାଇବାପାଇଁ ସେମାନଙ୍କର ସମ୍ବଳନାହିଁ । ତେଣୁ ଅସମୟରେ ମୃତ୍ୟୁର ଶୀକାର ହେବା ସାର ହେଉଛି । ଦ୍ୱିତୀୟରେ ଶ୍ରମିକ ସଂଗଠନ । ମଜୁରି ଅଭାବରୁ ଓଡ଼ିଶାର ଲୋକେ କଲିକତା, କାଲିମାଟି, ରେଙ୍ଗୁନ୍ ଓ ଆସାମକୁ ଚାଲିଯାଉଛନ୍ତି । ସେମାନେ ପୁଣି ସେମାନଙ୍କ ଅଜ୍ଞତାରୁ ଯାହା ପାଇବାର କଥା ସେ ପ୍ରାପ୍ୟରୁ ବଂଚିତ ହେଉଛନ୍ତି । ନିଜ ଶ୍ରମର ଦାବି ସେମାନେ ବୁଝିନାହାନ୍ତି । ସେଥିପାଇଁ ସଂଗଠନ ମଧ୍ୟ ନାହିଁ । ଏହି କାମ ପାଇଁ ବହୁ ଅର୍ଥ ଓ କର୍ମୀ ଆବଶ୍ୟକ । ଲୋକେ କ୍ରମେ କ୍ରମେ ତାଲିମ ପାଇ ଏ କାମରେ ଲାଗିଲେ ମଧ୍ୟ ଅର୍ଥ ପ୍ରଧାନ ଅନ୍ତରାୟ ଭାବରେ ଠିଆ ହେବ । ଲୋକଙ୍କ ଭିତରେ ଅଭାବ ଏତେ ଉତ୍କଟ ଭାବରେ ରହିଛି ଯେ ରାଜନୈତିକ ତଥା ସାମାଜିକ ଚେତନା ସେମାନଙ୍କଠାରେ ଆଦୌ ଦେଖାଯାଉ ନାହିଁ । କିନ୍ତୁ କାମ ଆରମ୍ଭ ହେଲା ପରେ ଯେ କ୍ରମେ କ୍ରମେ ସମ୍ବଳ ଆସିଯିବ—ଏଥିରେ ମୋର ସନ୍ଦେହ ନାହିଁ । ଲୋକେ ମଧ୍ୟ ଏହାର ଉପଯୋଗିତା ଉପଲବ୍ଧି କରିପାରିବେ । ମୁଁ କଲିକତାରେ ଗୋଟିଏ

ମିକ ସଂଗଠନ ଆରମ୍ଭ କରିଥିଲି । ବର୍ଷେ ଚାଲିଲା ପରେ ଏହା ଆତ୍ମନିର୍ଭରଶୀଳ ହୋଇ ପାରିଥିଲା । କିନ୍ତୁ ମୋର ଦୁଇ ବର୍ଷ ଜେଲ ରହଣୀ କାଳରେ ସବୁ ଗୋଲମାଲ ହୋଇଗଲା । ସଂଗଠନ ପ୍ରାୟ ଅଚଳ ହୋଇପଡିଲା । ଏହି ସଂଗଠନକୁ ପୁନର୍ଜୀବିତ କରିବାକୁ ହେବ । ବର୍ତ୍ତମାନ ଛ'ମାସ ଏହାକୁ ଚଳେଇବା ପାଇଁ ଅର୍ଥ ଆବଶ୍ୟକ । ମୁଁ ଏହି ସଂଗଠନର ସନ୍ନିଧ୍ୟତା ପାଇଁ ଆଶା ରଖୁଛି ।

ଶେଷକୁ ଗୋପବନ୍ଧୁ ଲେଖିଥିଲେ ଯେ--"ଏ ଚିଠି ବହୁତ ଦୀର୍ଘ ହୋଇଗଲା ବୋଲି ମୁଁ ଶଙ୍କିତ । ମୁଁ ଏବେମାତ୍ର କଟକର ଏକ ବନ୍ୟାବିଧ୍ୱସ୍ତ ଗ୍ରାମାଞ୍ଚଳକୁ ବାହାରିଛି । ମୁଁ ସପ୍ତାହକ ମଧ୍ୟରେ ଫେରି ଆସିବି । ସେତେବେଳକୁ ଆପଣଙ୍କ ଉତ୍ତର ପୁରୀ ଠିକଣାରେ ପାଇବି ବୋଲି ଆଶା ରଖୁଛି ।"

ଗୋପବନ୍ଧୁଙ୍କ ପାଖକୁ ୧୧ ମାର୍ଚ୍ଚ ୧୯୨୭ ତାରିଖରେ ଲାଲାଜୀ ଯେଉଁ ପତ୍ର ଦେଇଥିଲେ, ସେଥିରେ ଗୋପବନ୍ଧୁଙ୍କ ହାତରେ ହିନ୍ଦୁ ମହାସଭା ସଂଗଠନର ସମସ୍ତ ଦାୟିତ୍ୱ ଟେକିଦେବା ପାଇଁ ସିଦ୍ଧାନ୍ତ କରିଥିବା କଥା ଜଣାଇଥିଲେ । ଓଡ଼ିଶାର ସାହାଯ୍ୟ କାର୍ଯ୍ୟ ସଂକ୍ରାନ୍ତରେ ସମସ୍ତ ଦାୟିତ୍ୱ ଏହି ଅନୁଷ୍ଠାନ ତରଫରୁ ଗୋପବନ୍ଧୁଙ୍କ ଉପରେ ନ୍ୟସ୍ତ ହେଲା ଓ ଏଥିପାଇଁ ଟ ୧୦,୦୦୦ଙ୍କଠାରୁ ସାମାନ୍ୟ ଉର୍ଦ୍ଧ୍ୱ ଏକ ପାଣ୍ଠି ଗୋପବନ୍ଧୁଙ୍କ ହାତରେ ଦିଆଯିବାର ନିଷ୍ପତ୍ତି ଲାଲାଜୀ କରିଥିଲେ । ଏହା ବ୍ୟତୀତ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶାର ଚିତ୍ର ତଥା ସାହାଯ୍ୟ ପାଇଁ ନିବେଦନ The Tribune ଓ The People ପତ୍ରିକାରେ ପ୍ରକାଶନ ନିମନ୍ତେ ଲାଲାଜୀ ପଠାଇଥିଲେ । ଏହି ସହଯୋଗ ଗୋପବନ୍ଧୁଙ୍କୁ ଅଧିକ ଉତ୍ସାହିତ କରିଥିଲା ଓ ସେ ଅଧିକ ସାହସର ସହିତ ଲୋକମାନଙ୍କ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିଲେ ।

ଏହା ପରେ ପରେ 'ଲୋକସେବକ ସମାଜ'ର ଏକ ଶାଖା କଟକରେ ପ୍ରତିଷ୍ଠିତ ହେଲା ଓ ଗୋଟିଏ ଉତ୍କଳସଭାରେ ଏହି ସଂସ୍ଥା ତରଫରୁ ପାଠାଗାରଟିଏ ପରିଚାଳିତ ହେଲା । 'ସମାଜ' ଏକ ସ୍ୱାଧୀନ ମତବାଦୀ ସଂବାଦପତ୍ର ଥିଲେ ମଧ୍ୟ 'ଲୋକସେବକ ସମାଜ'ର ମୁଖପତ୍ର ଭାବେ କାର୍ଯ୍ୟ କଲା । କଟକ ଓ ପୁରୀର ବନ୍ୟାଦୁର୍ଗତ ଅଞ୍ଚଳରେ ଲୋକସେବକ ସମାଜ ତରଫରୁ ଗୋପବନ୍ଧୁଙ୍କ ନେତୃତ୍ୱରେ ଗଠିତ 'ଓଡ଼ିଶା ରିଲିଫ୍ ଫଣ୍ଡ୍' ଆନୁକୂଲ୍ୟରେ ଗ୍ରୁଏଲ୍ ଓ ଧାନକୁଟା କେନ୍ଦ୍ର ସ୍ଥାପିତ ହୋଇଥିଲା । ଓଡ଼ିଶାର ଦଳିତ ଓ ହରିଜନ ଜାତି ତଥା କଲିକତାର ଶ୍ରମିକ ସଂଗଠନ ପାଇଁ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଗଲା । ଏହି କାର୍ଯ୍ୟର ପରିସର ପରିବ୍ୟାପ୍ତ ହେବାରୁ ଗୋପବନ୍ଧୁ ତାଙ୍କ ସହକର୍ମୀ ଭାବରେ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କୁ ଏହି ସଂସ୍ଥାର ଦ୍ୱିତୀୟ ସନ୍ନିଧି

ସଭ୍ୟ ଭାବରେ ବାଛିନେଲେ । ଓଡ଼ିଶାରେ ବହୁ ଜନହିତକର କାର୍ଯ୍ୟକ୍ରମ ଅତି ସୁବ୍ୟବସ୍ଥିତ ରୂପେ ଏଣିକି ପରିଚାଳିତ ହେଲା ।

୨୭ । ୩ । ୧୯୨୭ ତାରିଖରୁ ତିନି ଦିନ ଧରି ଲାହୋରରେ ଲୋକସେବକ ସମାଜର ବାର୍ଷିକ ଉତ୍ସବ ଅନୁଷ୍ଠିତ ହୋଇଥିଲା । ସମଗ୍ର ଭାରତରେ ମାତ୍ର ବାର ବାର ପନ୍ଦର ଜଣ ବ୍ୟକ୍ତି ଏହି ସମାଜର ଆଜୀବନ ସଭ୍ୟ ନିର୍ବାଚିତ ହୋଇଥିଲେ । ଏହି ଉତ୍ସବରେ ତତ୍କାଳୀନ କଂଗ୍ରେସ ସଭାପତି ଶ୍ରୀଯୁକ୍ତ ଶ୍ରୀନିବାସ ଆୟଙ୍ଗାର ସଭାପତିତ୍ୱ କରିଥିଲେ । ସେଠ ଯମୁନାଲାଲ, ମଗନଲାଲ, ଗାନ୍ଧୀ, ଶଙ୍କରଲାଲ ବ୍ୟାଙ୍କର, ଶ୍ରୀମତୀ ସରୋଜିନୀ ନାଇଡୁ, ଲାଲା ଦୁନିଚାନ୍ଦ ପ୍ରଭୃତି ତତ୍କାଳୀନ ବହୁ ବିଶିଷ୍ଟ କଂଗ୍ରେସ ନେତା ଏହି ଉତ୍ସବରେ ଯୋଗ ଦେଇଥିଲେ ।

ଉତ୍କଳମଣି ଗୋପବନ୍ଧୁ 'ଲୋକସେବକ ସମାଜ'ର ବାର୍ଷିକ ଉତ୍ସବରେ ଯୋଗ ଦେଇ ବ୍ୟାପକ ଅନୁଭୂତି ନେଇ ଫେରି ଆସିଲେ । ୨୧ । ୫ । ୧୯୨୭ ତାରିଖ 'ସମାଜ'ରେ ସେ 'ଲୋକସେବକ ସମାଜ'ର ନୀତି, ଆଭିମୁଖ୍ୟ ଓ ଲକ୍ଷ୍ୟ ସଂପର୍କରେ ବିସ୍ତୃତ ଭାବରେ ଆଲୋଚନା କରି ଲେଖିଥିଲେ—"ଧର୍ମ, ସମାଜ, ରାଜନୀତି ଆଦି କୌଣସି ବିଷୟରେ ଏ ସମାଜର ସ୍ୱତନ୍ତ୍ର ସାଂପ୍ରଦାୟିକ ନୀତି ନାହିଁ । ଲୋକସେବା, ଦେଶାନୁରାଗ ଓ ଜାତୀୟତା ଏହାର ନୀତି ଓ ଭିତ୍ତି । ସୁତରାଂ ଯେ କୌଣସି ମତ ବା ଦଳର ବ୍ୟକ୍ତି ଏଥିରେ ସଭ୍ୟ ହୋଇପାରିବେ । 'ଭାରତ ସେବକ ସମିତି'ର ଏକ ନିର୍ଦ୍ଦିଷ୍ଟ ରାଜନୈତିକ ନୀତି ଅଛି । ସଭ୍ୟମାନେ ସେ ନୀତିରୁ ବହିର୍ଭୂତ ହୋଇ ପାରିବେ ନାହିଁ । ତେଣୁ ଅସହଯୋଗ ଆନ୍ଦୋଳନ ସମୟରେ କୌଣସି କୌଣସି ଲୋକଙ୍କର ଅସହଯୋଗରେ ବିଶ୍ୱାସ ଓ ଅଭିମତ ଥିଲେ ସୁଦ୍ଧା ସମିତିର ମୂଳ ନୀତିରେ ବାଧ୍ୟ ଥିବାରୁ ସେମାନେ ଇଚ୍ଛା ଅନୁସାରେ କାର୍ଯ୍ୟ କରିପାରିଲେ ନାହିଁ । ୧୯୨୭ ସାଲ ଫେବୃୟାରୀ ମାସରେ ଲାଲା ଲଜପତ୍ ରାୟ ମୋତେ ଯେତେବେଳେ ଏ ସମାଜରେ ଯୋଗ ଦେବାକୁ ପ୍ରବର୍ତ୍ତାଇଲେ, ସେ ମୋତେ ଏହି ମତ-ସ୍ୱାତନ୍ତ୍ର୍ୟର କଥା କହିଲେ । ମୁଁ ମଧ୍ୟ ଏହାହିଁ ଏ ସମାଜର ବିଶେଷତ୍ୱ ବୋଲି ମନେକରେ । ଯଥାର୍ଥରେ 'ଲୋକସେବକ ସମାଜ' ରାଜନୈତିକ, ସାମାଜିକ ବା ଧର୍ମସଂଘ ନୁହେଁ । ଦେଶସେବା ନିମନ୍ତେ ଯେ ପ୍ରସ୍ତୁତ ସେ ଏଥିରେ ସଭ୍ୟ ହୋଇ ପାରନ୍ତି । ଉଦାରତା, ସହିଷ୍ଣୁତା ଓ ଅନ୍ୟର ମତ ପ୍ରତି ଆସ୍ଥା ଏ ସମାଜର ସଭ୍ୟମାନଙ୍କର ପ୍ରଧାନ ଗୁଣ ଓ ଧର୍ମ ହେବା ଉଚିତ । ଏହି ମତର ସ୍ୱତନ୍ତ୍ରତା ହେତୁ ଗଲା କାଉନ୍‌ସିଲ ନିର୍ବାଚନରେ ଲାଲାଜୀ ସ୍ୱାଧୀନ କଂଗ୍ରେସ ଦଳ ପାଇଁ ଲଢୁଥିବାବେଳେ ମୁଁ ଓଡ଼ିଶାରେ କଂଗ୍ରେସ ଦଳର ସଭ୍ୟମାନଙ୍କ ପାଇଁ ଚେଷ୍ଟା କରୁଥିଲି । ଏ ସମାଜର

ଆଉ ଜଣେ ଦୁ'ଜଣ ମଧ୍ୟ ଲାଲାଜୀଙ୍କ ମତରୁ ଅଲଗା ହୋଇ କାମ କରୁଥିଲେ । ଏଥିରେ ଆମ୍ଭମାନଙ୍କ ମଧ୍ୟରେ କୌଣସି ପ୍ରକାର ବିବାଦ ବା ମନାନ୍ତର ଘଟିନାହିଁ । ବରଂ ନିଜ ମତ ଅନୁସାରେ କାମ କରିବାର ସୁଯୋଗ ପାଇବା ଫଳରେ ପରସ୍ପର ପ୍ରତି ଶ୍ରଦ୍ଧା ଓ ସମ୍ମାନ ଜାଗ୍ରତ ହୋଇଛି । ଗଲା କାଉନ୍‌ସିଲ ନିର୍ବାଚନରେ କଂଗ୍ରେସ ସପକ୍ଷ ଓ ବିପକ୍ଷରେ ଯେ ଯାହା କାର୍ଯ୍ୟ କରିଥିଲେ ତାହା ସମାଜରେ ରିପୋର୍ଟରେ ପ୍ରକାଶ ପାଇଛି ।

ଲୋକସେବକ ସମାଜ ପୂର୍ଣ୍ଣ ସାଧାରଣତନ୍ତ୍ର ଭିତ୍ତି ଉପରେ ପ୍ରତିଷ୍ଠିତ । ବିଶୁଦ୍ଧ ଦେଶାନୁରାଗ ଓ ନୈଷ୍ଠିକ ଲୋକସେବା ଏହାର ସାଧାରଣ ମୂଳମନ୍ତ୍ର । ଏହି ମନ୍ତ୍ରରେ ସମସ୍ତ ସଭ୍ୟଙ୍କୁ ଆବଦ୍ଧ ଓ ଅନୁପ୍ରାଣିତ କରିବାକୁ ହେବ । ସ୍ୱାଧୀନତାର ଅନୁଭୂତିରେ ପ୍ରତ୍ୟେକ ସଭ୍ୟର ଉତ୍ସାହ ଓ ଉଦ୍ୟମ କାର୍ଯ୍ୟକ୍ଷେତ୍ରରେ ସ୍ୱଚ୍ଛନ୍ଦ ବିକାଶର ଅବକାଶ ପାଇବ ।"

ପରେ ଶ୍ରୀ ନନ୍ଦକିଶୋର ଦାସ ଓ ଶ୍ରୀ ମଥୁରାନନ୍ଦ ମହାନ୍ତି ଲୋକସେବକ ସମାଜରୁ ସେମାନଙ୍କ ସମ୍ପର୍କ ତୁଟାଇ ଦେଇଥିଲେ କିନ୍ତୁ ଶ୍ରୀ ଲିଙ୍ଗରାଜ ମିଶ୍ର ଶେଷ ପର୍ଯ୍ୟନ୍ତ 'ଲୋକସେବକ ସମାଜ'ର ସଭ୍ୟ ଥିଲେ ।

ଡିସେମ୍ବର ୨୩ ତାରିଖ ୧୯୨୭ ମସିହାରେ ଗୋପବନ୍ଧୁ ଲାଲାଜୀଙ୍କ ପାଖକୁ ଯେଉଁ ପତ୍ର ଲେଖିଥିଲେ, ସେଥିରେ ତାଙ୍କ ବ୍ୟକ୍ତିତ୍ୱର ବିକଚ ବିକାଶ ଘଟିଥିଲା । ବିନମ୍ର ଓ ଆତ୍ମ ପ୍ରତ୍ୟୟର ବାଣୀ ବହନ କରି ଏ ପତ୍ର ପଞ୍ଜାବ-କେଶରୀ ଲାଲାଜୀଙ୍କୁ ବିସ୍ମିତ କରି ଦେଇଥିଲା । ଗୋପବନ୍ଧୁ ଲେଖିଥିଲେ—"ଆପଣ ଓଡ଼ିଶାରେ ମୋର କାର୍ଯ୍ୟକଳାପକୁ ବାହାର କାଗଜମାନଙ୍କରେ ପ୍ରକାଶ କରିବାକୁ ଚାହିଁଛନ୍ତି; କିନ୍ତୁ ତା' ମୋର ପ୍ରକୃତି ନୁହେଁ । ଦେଶରେ ନାଆଁ ଓ ସମ୍ମାନ କମେଇବାରେ ମୋର ଟିକେ ଆଗ୍ରହ ନାହିଁ । ମୋର ଶକ୍ତି ଓ ସାମର୍ଥ୍ୟ ଅନୁଯାୟୀ ଦେଶପାଇଁ ମୁଁ ଯେ କୌଣସି କଷ୍ଟ କାମ କରିବାକୁ ପଛେଇ ନାହିଁ । ଲୋକେ ସେଥିପାଇଁ ଜାଣିବା ନ ଜାଣିବା ମୋ ପାଇଁ ଏକା କଥା । ମୁଁ ନିଜକୁ ଜନତାର ଆଜୀବନ ସେବକ ଭାବରେ ଧରିନେଇଛି ଏବଂ ଭଗବାନଙ୍କୁ ସାକ୍ଷୀ ରଖି ମୁଁ ନିଜ ବାଟରେ ଲୋକଙ୍କ ସେବା କରି ଆସିଛି । ମୁଁ ଆପଣଙ୍କ ସଂସ୍ଥାରେ ଯୋଗ ଦେବାରେ ଦୃଢ଼ ଧାରଣା ରଖିଛି ଯେ, ଆପଣଙ୍କ ସହଯୋଗରେ ମୁଁ ଅଧିକ ଭାବରେ ଭଗବାନଙ୍କ ଇଚ୍ଛାକୁ ଜନତାର ସେବାରେ ନିୟୋଜିତ କରିପାରିବି । ଜଣେ ସାଧାରଣ ଜନସେବୀ ତା'ର ବୁଦ୍ଧି, ବୃତ୍ତି, ଶକ୍ତି, ସାମର୍ଥ୍ୟ, ହୃଦକାୟକୁ ପୂର୍ଣ୍ଣ ପ୍ରାଣରେ ଜନତା ପାଇଁ ଉତ୍ସର୍ଗ କରିଦେବା ବିଧେୟ । ତାର ଯାହାକିଛି ନିଜସ୍ୱ ସେସବୁ ଜନତାର ସମ୍ପତ୍ତି । ତେଣୁ ଜନସେବାରେ ଅବହେଳା କରିବା ତା ପକ୍ଷରେ ଏକ ମହାପାପ ଭାବରେ ପରିଗଣିତ ହେବା ଉଚିତ । ଆପଣ ଓଡ଼ିଶାରେ ନିକଟରେ ହୋଇଯାଇଥିବା ବନ୍ୟା ସମ୍ପର୍କରେ ଶୁଣିଥିବେ । ଏଥିପାଇଁ ଗୋଟିଏ ତଦନ୍ତ କମିଟି ବସିଥିବାରୁ ମୁଁ ସଂପୃକ୍ତ କାଗଜପତ୍ର ପ୍ରସ୍ତୁତ କରିବାରେ ବ୍ୟସ୍ତ ଅଛି ।"

ଉତ୍କଳମଣି ଗୋପବନ୍ଧୁ ଏହି ଲୋକସେବକ ସମାଜ ପ୍ରତି ଏତେ ବେଶୀ ଆକୃଷ୍ଟ ହୋଇ ପଡ଼ିଥିଲେ ଯେ ଶେଷକୁ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ଯେଉଁ ଶେଷ ଇଚ୍ଛାପତ୍ର ନିଜ ହାତରେ ଲିପିବଦ୍ଧ କରିଗଲେ ତଦନୁସାରେ ସତ୍ୟବାଦୀ ପ୍ରେସ ଓ ସମାଜ ଅନୁଷ୍ଠାନକୁ ସେ ଏହି ଲୋକସେବକ ସମାଜ ହାତରେ ଟେକି ଦେଇଥିବା କଥା ସମସ୍ତେ ଜାଣନ୍ତି । ଏଇ ସିଦ୍ଧାନ୍ତ ଅନୁସାରେ ଆଜି ଓଡ଼ିଶାର ଏହି ସର୍ବଜନାଦୃତ ଦୈନିକ ସମ୍ବାଦପତ୍ର 'ସମାଜ' ଲୋକସେବକ ସମାଜ'ର ସମ୍ପତ୍ତି । ଲୋକସେବକ ସମାଜର ଆଜୀବନ ସଭ୍ୟହିଁ କେବଳ ଏହି ଦୈନିକ ପତ୍ରିକାର ଭାରପ୍ରାପ୍ତ ସମ୍ପାଦକ ହୋଇପାରିବେ । କେବଳ ଗୋପବନ୍ଧୁଙ୍କ ତ୍ୟାଗ ପାଇଁ ଆଜି ଲୋକସେବକ ସମାଜପରି ଏକ ଭାରତୀୟ ସଙ୍ଗଠନର ସଭାପତି ଭାବେ ଜଣେ ଓଡ଼ିଆ ଲୋକ (ଶ୍ରୀଯୁକ୍ତ ବିଶ୍ୱନାଥ ଦାଶ) ମନୋନୀତ ହୋଇପାରିଛନ୍ତି—ଏହା ଏ ଜାତିପାଇଁ କମ୍ ଗୌରବର ବିଷୟ ନୁହେଁ ।

ଅଧ୍ୟାପକ, ଓଡ଼ିଆ ବିଭାଗ
ବାଣୀବିହାର, ଭୁବନେଶ୍ୱର

---

ମାତ୍ର ତୁଚ୍ଛ ଭାଇ ହେଲେ ଧର୍ମବଳ
କ୍ଷୀଣ ହେଲେ କେବେ ଧାର୍ମିକ ଶକତ
ନିତ୍ୟଧାମୁ ଛାଡ଼ି ରତ୍ନ ସିଂହାସନ
ଏ ବିଶ୍ୱାସେ ମନ ଦୃଢ଼କର ଭାଇ
କର୍ମ ଭୂମେ କାଏ ନେତା କେବା ମିତ

ନବ ତେଜେ ପୁଣି ଜାଗିବ ଉତ୍କଳ ।
ଆପନ୍ତ ଓହ୍ଲାଇ ପ୍ରଭୁ ବିଶ୍ୱପତ ।
କରିବାକୁ ଧର୍ମ ପକ୍ଷ ସମର୍ଥନ ।
ନେତାର ଅଭାବ ଲାଗି ଭାବ ନାହିଁ ।
ସରବେ ନିମିତ୍ତ ବିଧି ନିୟୋଜିତ ।

——— ଗୋପବନ୍ଧୁ

# ସମଗ୍ର ଓଡ଼ିଆ ପତ୍ରିକା ଜଗତରେ ବିସ୍ମୟ ସୃଷ୍ଟି କରି ପ୍ରକାଶ ପାଇଛି

# ସମାବେଶ

## ଶାରଦୀୟ ସଂକଳନ

ଶାନ୍ତନୁ ଆଚାର୍ଯ୍ୟଙ୍କ ଏକ ପୂର୍ଣ୍ଣାଙ୍ଗ ଉପନ୍ୟାସ ସହିତ ଏ ସଂକଳନରେ ଗଳ୍ପ ଲେଖିଛନ୍ତି:— ଅଖିଳ ମୋହନ ପଟ୍ଟନାୟକ, ମହାପାତ୍ର ନୀଳମଣି ସାହୁ, ବିଭୂତି ଭୂଷଣ ତ୍ରିପାଠୀ, ସୁରେନ୍ଦ୍ର ମହାନ୍ତି, ଡା: କୃଷ୍ଣପ୍ରସାଦ ମିଶ୍ର, ଚୌଧୁରୀ ହେମକାନ୍ତ ମିଶ୍ର, ଡ: ହରେକୃଷ୍ଣ ମହତାବ, ଅଚ୍ୟୁତାନନ୍ଦ ପତି, ବିଭୂତି ପଟ୍ଟନାୟକ, ଚନ୍ଦ୍ରଶେଖର ରଥ, ପ୍ରଫୁଲ୍ଲକୁମାର ତ୍ରିପାଠୀ, ଦଶରଥ ସାମଲ, ବିଜୟକୃଷ୍ଣ ମହାନ୍ତି, କେନାମଣି ନରେନ୍ଦ୍ରକୁମାର, ବୀଣାପାଣି ମହାନ୍ତି, ରାଧା ବିନୋଦ ନାୟକ, ନାରାୟଣ ପଣ୍ଡା, ଦେବେନ୍ଦ୍ର ପ୍ରସାଦ ଦାସ, କମଳ କୁମାର ମିଶ୍ର, ବନଜ ଦେବୀ, ସୁଧାଂଶୁ ମୋହନ ରାଉତରାୟ ପ୍ରମୁଖ ।

### କବିତା ଲେଖିଛନ୍ତି:—

ରମାକାନ୍ତ ରଥ, ରାଜେନ୍ଦ୍ର କିଶୋର ପଣ୍ଡା, ହରପ୍ରସାଦ ଦାସ, ସୀତାକାନ୍ତ ମହାପାତ୍ର, ହରିହର ମିଶ୍ର, ଦିଲୀପ ଦାସ, ପ୍ରହରାଜ ସତ୍ୟନାରାୟଣ ନନ୍ଦ, ଦୀପକ ମିଶ୍ର, ବଂଶୀଧର ଷଡ଼ଙ୍ଗୀ, ସୌଭାଗ୍ୟ କୁମାର ମିଶ୍ର, ଅମରେଶ ପଟ୍ଟନାୟକ, ଅଶୋକ ଚନ୍ଦନ, ଅଶ୍ୱିନୀ କୁମାର ମିଶ୍ର, କମଲାକାନ୍ତ ଲେଙ୍କା, ସୌରୀନ୍ଦ୍ର ବାରିକ, କୁମାର ମହାନ୍ତି, ଗୋପାଳକୃଷ୍ଣ ରଥ, ପ୍ରସନ୍ନ କୁମାର ମିଶ୍ର, ପ୍ରତିଭା ଶତପଥୀ, ହରପ୍ରସାଦ ପରିଚ୍ଛା ପଟ୍ଟନାୟକ ପ୍ରମୁଖ ।

### ପ୍ରବନ୍ଧ ଓ ଆଲୋଚନା ଲେଖିଛନ୍ତି:

ଚିନ୍ତାମଣି ବେହେରା, ଡ: ହରିଶ୍ ଚନ୍ଦ୍ର ଦାସ, ଡ: ଭବଗ୍ରାହୀ ମିଶ୍ର, ଦାଶରଥି ଦାସ, ହରିହର ମିଶ୍ର, ସୌମ୍ୟବନ୍ଧୁ କର, ଅଶ୍ୱିନୀ ମିଶ୍ର, ଭଗବାନ ନାୟକ ବର୍ମା, ଅଜିତ୍ ମହାନ୍ତି, ଡ: ପ୍ରସନ୍ନ କୁମାର ମିଶ୍ର, ଅନନ୍ତ ମହାପାତ୍ର, ରବି ସିଂ, ଦୀନନାଥ ପାଠୀ ପ୍ରମୁଖ ।

### ଏକାଙ୍କିକା ଲେଖିଛନ୍ତି:

ବିଶ୍ୱଜିତ ଦାସ

ଏହାଛଡ଼ା ଆଠଗୋଟି ସଦ୍ୟ ପ୍ରକାଶିତ ପ୍ରତିନିଧି ସ୍ଥାନୀୟ ଓଡ଼ିଆ ପୁସ୍ତକର ସମୀକ୍ଷା ତଥା 'ସମାବେଶ'ର ଧାରାବାହିକ ବିଭାଗ ଯଥା:—

କଳା ଓ କଳାକାର, ରୂପ ଓ ମଞ୍ଚ, ହସ ନୁହେଁ ରସ, କଳ୍ପଲୋକ ପ୍ରଭୃତି ବିଭାଗ ଏଥିରେ ସ୍ଥାନ ପାଇଛି ।

ପ୍ରଖ୍ୟାତ ଚାରୁଶିଳ୍ପୀ ଅସୀମ ବସୁଙ୍କ ରଙ୍ଗ ଓ ତୂଳୀରେ 'ସମାବେଶ'ର ତ୍ରିରଙ୍ଗ ପ୍ରଚ୍ଛଦ ହୋଇଛି ନୟନାଭିରାମ ଓ ରମଣୀୟ । ବିଶିଷ୍ଟ ଚିତ୍ରଶିଳ୍ପୀ: ଦୀନନାଥ ପାଠୀ, ଦୁର୍ଗା ପଣ୍ଡା, ଅନନ୍ତ ପଣ୍ଡା, ଜି. ଏନ୍. ରାଓ ଓ ଜଗଦୀଶ କାନୁନଗୋ ପ୍ରମୁଖଙ୍କ ଚିତ୍ର ସମ୍ଭାରରେ ଏହି ସଙ୍କଳନଟି ହୋଇଛି ସୁଦୃଶ୍ୟ ଓ ମନୋମୁଗ୍ଧକର ।

୨୫୦ ପୃଷ୍ଠାର ମୂଲ୍ୟ ମାତ୍ର ଛଅ ଟଙ୍କା

ରେଜିଷ୍ଟ୍ରାର୍ଡ ଡାକରେ ନେଲେ ଆଠ ଟଙ୍କା ପଠାଇବାକୁ ହେବ ।

**॥ ସମାବେଶ ॥**

ଏ ୭୭, ଇଣ୍ଡଷ୍ଟ୍ରିୟାଲ ଏରିଆ, ଭୁବନେଶ୍ୱର—୭୫୧୦୦୨ ଫୋନ୍—୫୧୨୯୦, ୫୩୩୧୧

# ନନା ଉଠୁଚ ?

ଶ୍ରୀ ପ୍ରମୋଦ କୁମାର ମହାନ୍ତ

କିନ୍ତୁ ଯେଉଁଠାରେ ଅପେକ୍ଷାକରେ ତୁମ ପୁଅ କାଲେ ତୁମେ ଆସିବ ଏକଲା
ଟ୍ରେନ୍ ଝରକାରେ ସିଏ ଆଉ ଦେଖା ନ ହେବାର ରୁମାଲ ହଲାଇ ହଲାଇ ଚଲ
ମୁଁ ଭାବିଲି ଯେଏ ତୁମେ ବୋଲି ।
କାନୁଆ ସଡ଼କରେ ଗୋଟେ ଅଣଲେଉଟା ସାଇକେଲ ଚକର ଚିହ୍ନ
ମୁଁ ଭାବିଲି ତାହା ତୁମର ବୋଲି ।
ସେଦିନ ନିଜକୁ ବତ୍ରିଶସାଣ ସ୍ତ୍ରାପର ସମସ୍ତଙ୍କ ପାଦତଳେ ପତନରେ ମିଶିଗଲାପରେ
କେଉଁ ଜଠର ଓ ଶିଙ୍ଗବାଡି ତୁମକୁ ଟାଣିଲା ମହାକାଶ ରଥର ଆଡ଼କୁ
ଆଉ ମାଇଲଏ ଜଣାନାହିଁ । ବର୍ତ୍ତମାନ ନୀଳଗ୍ରୀବ ଉଇଁଆସେ ଇସ୍ପାପାନ୍ ସ୍ତ୍ରାରେ ସ୍ତ୍ରାରେ ।
ହାଇକୋର୍ଟ, ସ୍କୁଲ ଆଉ କଲେଜ ହତାରୁ ଛୁଟି ସବୁ ଚୁକିଆସି
ଆମକୁ ଶୁଖାଇଦେଏ ପ୍ରତିଦିନ ରାତି ବାରଟାରେ ସେଗୀକଣ ପ୍ରତିଟି ସକାଳେ
ଶିଶୁ ଭଳି ଉଠାଏ ନିଜକୁ ଇଟା ଆଉ ସିମେଣ୍ଟର ଜଙ୍ଗଲ ଭିତରେ ।
ଏଇ କିଛି ସମସ୍ତ ପୂର୍ବରୁ ତୁମ ପାଇଁ ସଞ୍ଚିଥିବା ଭାବପ୍ରବଣତା ସବୁ
ସେମାନେ ଭଙ୍ଗାଉଥିଲେ ଅଟା, ଚିନି ଦୋକାନର କ୍ୟୁ'ରେ ଅପେକ୍ଷାକରି ।
ଏହାପରେ ସେମାନେ ଗଲେଣି କଣ୍ଟ୍ରୋଲ ଦୁଧ ଯୋଗାଣରେ ଲାଇନ ଦେବାକୁ ।
ନିଜ ଅନ୍ୟମନସ୍କତା ଯୋଗୁଁ ସେମାନେ ଦେଲେଣି ଭାଙ୍ଗି ଦେଣ୍ କିଛି
ତୁମେ ଗଢ଼ିଯାଇଥିବା ଭଲପାଇବାର ସିଡ଼ି ପାହାଚକୁ ।
ଠିକ୍ ତୁମ ଲେଖାର ଧାଡ଼ି ଯୋଗି ତୁମକୁ ତୁମର କେହି ଜଣେ ପୁଅ
ଅନାଥ ହେବାର ଯନ୍ତ୍ରଣାରୁ ଡାକେ : ନନା ! ଉଠୁଚ ?
କିନ୍ତୁ ତୁମେ ସବୁ ଋତୁର ପକ୍ଷୀଟିଏ ହୋଇ ଆଉ କେଉଁ ଧାନ ବିଲ
ଆଉ କେଉଁ ଗୋଚର ବା ଦୂରାନ୍ତର ନଈର ହାଓ୍ୱାକୁ ଯାଇଚ ।
ନାହିଁ । ତୁମେ ପୃଥିବୀର ସବୁ ମହୋଦଧି ପାଇଁ ଅନାହୂତ ବର୍ତ୍ତାବର ହୋଇ ଜଳୁଚ ।
କେଉଁଠାରେ ଆମ ମଧ୍ୟାହ୍ନର ମାନଚିତ୍ର ଶେଷ ହେବ ।
ଓ ଯିଉଁଙ୍କ ଦଶିବ ସେ ଗାଆଁର ଯେଉଁ ଗାଆଁ ବସିଥାଏ ଇନ୍ଦ୍ରଧନୁ
ଗୋଡ଼ତଳେ : ସେ ଗାଆଁର ନେହ ପୋଛି ଦେଇ ବାରି କୁଞ୍ଜବନେ ଦେବତା ବୁଲନ୍ତି
ଓ ଯେଉଁଠାରେ ପୂର୍ବପୁରୁଷଙ୍କ ମାଗେ ତୁମେ ଏକ ଝୋଲୀରେ ଶୋଇଚ ।
ନନା ଉଠୁଚ ?

ଅଧ୍ୟାପକ, ମନୋବିଜ୍ଞାନ ବିଭାଗ,
ରେଭେନ୍ସା କଲେଜ, କଟକ-୩



ସାକ୍ଷୀଗୋପାଳର ପବିତ୍ର ଶ୍ମଶାନରେ ଉତ୍କଳମଣିଙ୍କ ମହାନ୍ ସମାଧି ପୀଠ ।



ଗତ ଅକ୍ଟୋବର ୯ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ସତ୍ୟବାଦୀସ୍ଥ ଗୋପବନ୍ଧୁଙ୍କ ସମାଧିରେ ମାଲ୍ୟାର୍ପଣ କରୁଛନ୍ତି ।




# ସ୍ୱପ୍ନଯାତ୍ରା

ଶ୍ରୀ ସୌଭାଗ୍ୟ କୁମାର ମିଶ୍ର

(ଏକ)

ସବୁ ରାତ୍ରି ତ ଏପରି ନଥିଲା,
ଯଦିଓ ମୁଁ ସ୍ୱପ୍ନ ଦେଖିଛି ସବୁବେଳେ ଯାହାର,
ଶୁଭ ମୁହୂର୍ତ୍ତ କ୍ୱଚିତ୍ ଥିଲା ପଞ୍ଜିକାରେ,
ଯେଉଁ କେତୋଟି ଆସୁଥିଲା ଶୁଭ୍ର ସଫେଦ୍ ନୌକା ପରି
ଚୁହିଁ ଚୁହିଁ ତା' ମିଳାଇ ଯାଉଥିଲା ସମୁଦ୍ରର ଲହଡ଼ରେ,
କୃପଣ ପବନ ମଝେ ମନା କରି ଦେଉଥିଲା.
ଅନ୍ଧାର ଘୋଟି ଆସୁଥିଲା ଦୃଷ୍ଟିରେ, ଚେତନାରେ ।
ଋତୁ ବଦଳୁଥିଲା, ଯଦିଓ
ସ୍ୱପ୍ନ ଯେମିତି ରହୁଥିଲା ସ୍ଥିର, ମୃତ ପ୍ରାୟ
ଅଚଳା ପତଙ୍ଗ ପରି ବିଶାଳ ସଫେଦ୍ କାନ୍ଥରେ

ବାଦୁଡ଼ି ଓ ପୋକ, ଟେଳୁଆ ଓ ଗାତମୂଷାଙ୍କର
ଅଢାଗ୍ରି ବଳେ ଦେଖି ଈର୍ଷ୍ୟାରେ
ଉଲୁପାଇ ଯାଉଥିଲି ସେମାନଙ୍କୁ,
ବଣୁଆ ଫୁଲ ବାସ୍ନାରେ ବାଉଳା ହୋଇ
କାବୁଡ଼ି ଧରୁଥିଲି କଣ୍ଟା ଗଛକୁ,
ଗଡ଼ିଆକୁ କହୁଥିଲି ପାଣିଦେ', ପାଣିଦେ'
ନହେଲେ ତତେ ଶୁଖେଇ ଦେବ ମୋ' ସାଗର ହୃତ୍ପଦରେ ;
ସମସ୍ତେ ଅଚିହ୍ନା ଥିଲେ, ଜଣାନଥିଲି
ଚିହ୍ନିବା ମାନେ ଆଉଁଷି ଦେବା ଗୁଣ୍ଡୁଚିର ପିଠିକି
ନିଷ୍କାମ କୃତଜ୍ଞତାରେ, ରକ୍ତର କଲରୋଳ ଭିତରେ ।

ମଣିଷ ତ ପ୍ରାପ୍ତ ସବୁବେଳେ ବିଷଣ୍ଣ,
ପାରେଶ୍ୱ ଆର ପାଖରେ ଠିଆ ହୋଇ ରୋଗିଣା ଶିଶୁକୁ
ଠେଲି ଦେଉଥିଲି ଆଗକୁ ଓ ଅଭଦ୍ର ଚିତ୍କାରରେ
ଖୋଲି ଦେଖାଉଥିଲି ଯଟି ସମସ୍ତ ଦେହର କ୍ଷତର ।
ସବୁ ଯନ୍ତ୍ରଣା ଥିଲା ମୋ' ପାଇଁ ଅକାରଣ,
ଅଯୋଗ୍ୟ ମୋ' ଔଷଧର, ଅନୁଭବର ;
ସବୁ ଶୋକ ନିରର୍ଥକ—ଦୂର ସମୁଦ୍ରରେ

ମରି ଭାସି ଯାଉଥିବା କୋଳିଆର ଶବ ଯେମିତି
ମିଳାଇ ଯାଉଥିଲା ସମୁଦ୍ରର ଲୁଣି ପାଣିରେ,
ତା' ସ୍ତ୍ରୀ ପିଲାଙ୍କ କାନ୍ଦଣା ଉପରକୁ ଉଠି ଉଠି
ନଡ଼ିଆ ଗଛ ଅଗରେ ଅଦୃଶ୍ୟ ହୋଇ ଯାଉଥିଲା ।
ସବୁ ଅଦୃଶ୍ୟ ଥିଲା, ଅଜଣା ଥିଲା,
ଦୃଶ୍ୟ ହେଲେ ଆଖିରୁ ଲୁହ ଗଡ଼ି ପଡ଼େ ଯେ !

ଏବେ ଯେମିତି
ଲୁହ ଗଡ଼ିପଡ଼େ ଅଥଚ ଦାନ୍ତଚିପି, ବାଡ଼ିଧରି
ଆଗରେ ଯିବାକୁ ହୁଏ ଏ ଶୋଭା ଯାତ୍ରାର,
ମଣିଷର କାନ୍ଧରେ ଶିଶୁ, କାଖରେ, ଟୋକେଇରେ ;
ପିଞ୍ଜରାରେ ଶୁଆ, ଗଧ, ଘୋଡ଼ା, ଓଟ ଓ ବଳଦଙ୍କ ପିଠିରେ
ଛିଣ୍ଡା ଲୁଗାର ବୁଜୁଳି, ବାସନକୁସନ;
କୁତୁ କୁତୁ ଅଖି ଓ ଘାର୍ଦ ଶ୍ୱାସ, ଶୀର୍ଣ୍ଣ ଦେହ ଭିତରେ
ଲୋଭ ମୋହ ଦୟା ମାୟା କରୁଣ, କାତର ।

କାଲି ଦୁଠାରୁ ସଞ୍ଜ ବେଳେ
ସମୁଦ୍ର ଦୁଇ ଭାଗ ହୋଇ ଯାଇଚି
କେଉଁ ବନସ୍ତୀ ବୁଢ଼ାଲୋକର କ୍ରୋଧରେ ;
ଲାଲ, ଗୋଲାପର ଶାଣିତ ସୁଗନ୍ଧରେ
ତରଳି ଯାଇଚି ଲୁଣି ମାନଚିତ୍ରରୁ,
ବୁଢ଼ା ଜଟାୟୁ

ଜାହାଁପନାଙ୍କ ବାଗାନ୍‌ରୁ
ତୋଳା ଆଣି ଦେଇଚ ଆମ ସ୍ତ୍ରୀ ପିଲାଙ୍କ ହାତରେ
ପ୍ରଚୁର କମଳା ଓ ଆପେଲ୍ ।
ଲଣ୍ଡନର ଦକ ଦକ ଆଲୁଅରେ
ବଢ଼ିଲା ଝିଏ ହସୁଚନ୍ଦ୍ର ;
ଯାତ୍ରା ଆରମ୍ଭ ହୋଇଚ,
ଦୁଇ ପାଖରେ ସମୁଦ୍ର, ଅନନ୍ତ, ଅବିରାମ
ନବ ଦୂର୍ବାଦଳ ଶ୍ୟାମ ଗ୍ରାମ ।

(ଦୁଇ)

ଆମେ ପହଞ୍ଚି ପ୍ରଥମେ ଦେଖିଲୁ ମୌନ ପାନ୍ଥଶାଳା,
ଫଳକରେ ଅଛି ନାଁ ନାହିଁ,
ବୋଧହୁଏ ପୋଛି ନେଇଚ ପ୍ରାଚୀନ ପବନ,
ଅଲକ୍ଷ୍ୟ, ଅବିଶ୍ୱାସ ଓ ଉତ୍ସୁକ ସ୍ୱଚ୍ଛ ସ୍ୱର ଗନ୍ଧ
ଆମକୁ ଘେରିଗଲା ଅସଂଖ୍ୟ କଙ୍କାଳ ପଣ ।

କେହି କେହି କହିଲେ
"ଏ ମୁକ୍ତ ଆମର ସ୍ୱପ୍ନ ନଥିଲା, ବିଫଳ ଏ ଯାତ୍ରା ।"
ସ୍ତ୍ରୀ ପିଲା ଗାଈଗୋରୁଙ୍କ ଆଖିରେ ସେଇ ଶଂକିତ ଦୃଷ୍ଟି;
ନିଷ୍ପ୍ରାଣ ହସ ଓ କଥାବାର୍ତ୍ତା ଭିତରେ
ମୁଣ୍ଡ ହଲାଉଥିଲେ ଘରବାସି ପଶୁ,
ପିଞ୍ଜରାରେ ଶୁଆ ସାରି ଚୁପ୍ ।

ପଛକୁ ଚାହିଁ ଦେଖିଲୁ
ଘମାଘୋଟ ସମୁଦ୍ର,
ଆଗରେ ଧୂ ଧୂ ପ୍ରାନ୍ତର ।
କେହି କେହି କହିଲେ
"ଏଇ ଆମର ନିସ୍ତର ।"
ହଠାତ୍ ଅସ୍ୱାଭାବିକ କଳରୋଳ ଉଠିଲା, "ଅମର, ଅମର !"

ପାନ୍ଥଶାଳା ଭିତରୁ ପ୍ରତିଧ୍ୱନି ଉଠିଲା ବେଳକୁ
ସାହସୀ ଯୁବକମାନେ ଧସାଇ ପଶିଲେ,
ପଛେ ପଛେ ମା' ବାପ, ସ୍ତ୍ରୀ ପିଲା, ବୁଢ଼ା ସୈନିକ
ପାଗଳୀ ବାରଙ୍ଗନା ଓ ନିରୁତ୍ସାହ ସ୍କାଉଟ ।
ସମସ୍ତେ ପରିଷ୍କାର ଓ ନିଃସ୍ୱ ।
ପଥର ସମୁଦ୍ରରେ ଭାସୁଥାଏ
ଛିଣ୍ଡା ଯୋତା, ଛିଣ୍ଡା ପୋଷାକ,
କମଳା ଚୋପା ଓ ଶିଶୁଙ୍କ ଶବ ।

ତା' ପରେ ଦିନେ ସକାଳେ ସମୁଦ୍ର ଶାନ୍ତ,
ଟିହ୍ଲା ପକ୍ଷୀମାନଙ୍କ ଚକ୍କର୍ ଆକାଶରେ,
ଲହଡ଼ିରେ ଅସଂଖ୍ୟ ସୁନା ମାଛ ପରି
ଅଳୁଅ ଚକ୍ ଚକ୍ ।

କିଏ ଧାଇଁ ଆସି କହିଲା ମନେ ନାହିଁ—
ଛତୁ ତୋଳି ଯାଉଥିବା ଝିଅମାନେ କି
ଗାଈ ଚରେଇ ଯାଉଥିବା ଟୋକା ନା
ସାଗ ଗଛ ଅନ୍ଦ୍ରା ବୁଲୁଥିବା ବୁଢ଼ୀ—

ସମୁଦ୍ର କୂଳେ ଆସି ଲାଗିଛି ଜାହାଜ
ଇନ୍ଦ୍ରଙ୍କ ଐରାବତ ପରି ବିଶାଳ,
କେହି କୁଆଡ଼େ ନାହାନ୍ତି, ଜାହାଜ ନିଶ୍ଚଳ ।

ଜାହାଜ ସାରା ଖୋଜି ଖୋଜି ମିଳିଲା
କେବଳ କୋଡ଼ିଏଟି ସ୍ୱର୍ଣ୍ଣ ମୁଦ୍ରା ।

ରାଜା କହିଲେ : ମତେ ଦିଅ
ମୁଁ ତୋଳିବି ନବତଲ ପ୍ରାସାଦ ;
ରାଣୀ କହିଲେ : ମତେ ଦିଅ
ମୁଁ ଗଢ଼ିବି କେୟୂର କଙ୍କଣ ;
କବି କହିଲେ : ମତେ ଦିଅ
ମୁଁ ରଚନା କରିବି କାବ୍ୟ ;
ସେନାପତି କହିଲେ : ମତେଦିଅ
ସମ୍ମୁଖ କରିବି ସେନାବାହିନୀ ;
ଶିକ୍ଷକ କହିଲେ : ମତେ ଦିଅ
ମୁଁ ସ୍ଥାପନ କରିବି ବିଦ୍ୟାଳୟ ;
ଚିକିତ୍ସକ କହିଲେ : ମତେ ଦିଅ
ଚିକିତ୍ସାଳୟ ଦରକାର ;
ବିଚାରପତି କହିଲେ : ମତେ ଦିଅ
ଗଢ଼ିବି ନୂଆ କାନୁନ୍ ;
ବଣିକ କହିଲେ : ମତେ ଦିଅ
ପୁଞ୍ଜି ଖଟାଇବି ବାଣିଜ୍ୟରେ ;

ଶିଳ୍ପୀ କହିଲେ : ମତେ ଦିଅ
ମୁଁ ଆଙ୍କିବି ସ୍ୱପ୍ନର ଚିତ୍ର ;
ଗୃହସ୍ଥ କହିଲେ : ମତେ ଦିଅ
ଚଳିଯାଉ ମୋ ସଂସାର ;
ଐତିହାସିକ କହିଲେ : ମତେ ଦିଅ
ମୁଁ ଲେଖିବି ଜାତିର ଇତିହାସ ।

ଜାହ୍ନାଜ କହିଲ : ନଅ, ନେଇ ଯାଅ
ଯିଏ ନେଉଚ ନଅ, କରୁ ମନେରଖ
ଅସନ୍ତୋଷ ହିଁ ଦୁଃଖ
ଅବିଶ୍ୱାସ ହିଁ ଦୁଃଖ
ନୈରାଶ୍ୟ ହିଁ ଦୁଃଖ
ସ୍ୱାର୍ଥପରତା ହିଁ ଦୁଃଖ ....
ସୂର୍ଯ୍ୟାଲୋକ ଯେମିତ ଖେଳୁଥାଏ
ତରଙ୍ଗ ଦୋଳାରେ ।

(ଆକାଶବାଣୀ, କଟକ ସୌଜନ୍ୟରୁ)

ଅଧ୍ୟାପକ, ଇଂରେଜୀ ବିଭାଗ
ରେଭେନ୍ସା କଲେଜ, କଟକ



ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଟାଙ୍ଗରମୁଣ୍ଡା ଆଶ୍ରମ ସ୍କୁଲ ଭିତ୍ତିପ୍ରସ୍ତର ସ୍ଥାପନ କରୁଛନ୍ତି ।



ରାଜସ୍ୱ ବିଭାଗ ଉପମନ୍ତ୍ରୀ ଶେଖ୍ ମତଲୁବ୍ ଅଲ୍ଲି ଲବଙ୍ଗା କଲେଜର ଷୋଡ଼ଶ ପ୍ରତିଷ୍ଠା ଦିବସ ଉପଲକ୍ଷେ ଆୟୋଜିତ ଉତ୍ସବରେ ଭାଷଣ ଦେଉଛନ୍ତି ।

# କେତୋଟି ମୁହଁ ସଂପର୍କରେ



ସବୁ ଯୋଡ଼େଇ ସାରିଲାପରେ ଆମେ ମୁହଁଟିକୁ ମେଲାରଖୁ, କାରଣ ଚାହିଁବା ପାଇଁ ସୁବିଧା ହୁଏ । ଜୀବନର ଉପାଦାନ ସଂଗ୍ରହ କରିବା ସମ୍ଭବହୁଏ । ଏ ଓଲଟ ବୃକ୍ଷର ପାଞ୍ଚଟି ଯାକ ଚେର ଖୋଲା ନରହିଲେ ଏବଂ ସେଗୁଡ଼ିକ ସଂସାରର ମାଟି ପାଣି ପବନରେ ଅନାବୃତ ବୁଡ଼ି ନରହିଲେ ବଞ୍ଚିବା କିମ୍ବା ବଢ଼ିବା ହେବା ସମ୍ଭବ ନୁହେଁ । ଏହି ଚେରଗୁଡ଼ିକ ଶୁଖି ଆସିଲେ ଗଛ ମରିଯାଏ ଏବଂ ତା'ପରେ ହୁଏତ ମୁହଁଟିକୁ ହିଁ ଯୋଡ଼େଇ ଦେବାକୁ ପଡ଼େ । କାରଣ ରୂପ ରସ ଗନ୍ଧ ଶୋଷୁଥିବା ପର୍ଯ୍ୟନ୍ତ ମୁହଁ ବାଟେ ଜୀବନର ଅମୃତଧାର ପ୍ରବେଶ କରୁଥାଏ । ସେଇବାଟେ ପ୍ରକାଶିତ ହେଉଥାଏ ଆନନ୍ଦ, ନିରାନନ୍ଦ, ଅନୁରାଗ, ବିରାଗର ସଂକେତ । ପ୍ରକାଶିତ ହେଉଥାଏ ବାକ୍ ରୂପରେ ଅଗ୍ନି । ପ୍ରକାଶିତ ହେଉଥାଏ ସମଗ୍ର ବ୍ୟକ୍ତିର ବ୍ୟକ୍ତିତ୍ୱ । ମୁହଁ ଦେଖି ଆମେ ମଣିଷ ଚିହ୍ନୁ, ପିଠି ଦେଖି ନୁହେଁ । ନଖଠାରୁ ଶିଖା ପର୍ଯ୍ୟନ୍ତ ବ୍ୟକ୍ତି ବିସ୍ତୃତ ରହିଥିଲେ ମଧ୍ୟ ଏବଂ ଅନ୍ୟାନ୍ୟ ଅବୟବଗୁଡ଼ିକ ବ୍ୟକ୍ତିତ୍ୱ ଗଢ଼ିବାରେ କିଛି କିଛି ସହାୟକ ହେଉଥିଲେ ମଧ୍ୟ, ଶରୀରରେ ଅନେକତ ଭାଗ ସେ ମୁହଁରେ ହିଁ କେନ୍ଦ୍ରୀଭୂତ ଥାଏ । ସବୁପ୍ରକାର ଆଦାନପ୍ରଦାନ, ଭାବ ଦୋସ୍ତି ଏବଂ ପରିଚୟ ଏଇ ମୁହଁଟି ସାଙ୍ଗରେ । ଏଣୁ ଆମେ ସବୁ ଯୋଡ଼େଇ ସାରି ମୁହଁଟିକୁ ମେଲା ରଖୁ ।

ସେ ଯେଉଁ ଲମ୍ବାମୁହଁ ତଳକୁ ଠିଆ ଠିଆ ହଳେ ବଡ଼ ବଡ଼ କାନ; ନୁଆଁଣିଆ ଭ୍ରୂଲତା ତଳକୁ ଓହଳିଆ କାକର ଦୁଇଟି ଆଖି; ଥୋପି ପଡ଼ିଲା ପରି ବିରାଟ ସେ ନାକର ଗ୍ରୀବରେ ହଳେ ତଳମୁହାଁ ବଣିଆ ନିଶ; ଚସୁଡ଼ିଲା ପରି ପାଳୁଆ ପାଟି ଓ ଥୋଡ଼ ! ଆଉ କୁଣରେ ସେ ଲେବ୍ଦୁକୋରୁ କୁଞ୍ଚ କୁଞ୍ଚ ଗାର, ଥୋଡ଼ି ତଳକୁ ଥୋଲ ଥୋଲ ନରମ ଗୁଡ଼ିଏ ରେଖା ! ଆମେ ଦେଖିଲା ମାତ୍ରେ ଚିହ୍ନି ନେଉ । ଆମକୁ ଶୁଭିଯାଏ ଆବେଗ ଭରା, ବିଶ୍ୱାସ ଭରା, ଗଭୀର ଆତ୍ମୀୟତାର ଗୁଡ଼ିଏ କହିଁଲିଆ କଥା । ଦିଶିଯାଏ ସେଇ ପାଳୁଆ ପାଟିରୁ ଝରି ପଡ଼ୁଥିବା ଗୁଡ଼ିଏ ସାବଲ ନିର୍ମଳ ହସ । ମନେ ପଡ଼ିଯାଏ, କର୍ମମୟ, ତପୋମୟ, ସଂଘର୍ଷମୟ

ଶ୍ରୀ ଚନ୍ଦ୍ରଶେଖର ରଥ

ଗୋଟିଏ ଜୀବନର ବିରଳ ଇତିବୃତ୍ତ; ଚକିତ, ବର୍ଣ୍ଣିତ ଜାଗରିତ ଗୋଟିଏ ଜାତିର ସଂଗ୍ରାମ । ସତ୍ୟର କ୍ଷୁରଧାରକୁ ନେଇ ପରୀକ୍ଷା କରୁଥିବା, ଜୀବନର ଯାତନାକୁ ନେଇ ବେଦନାବିଦ୍ଧ ହେଉଥିବା ଏଇତ ସେଇ ମହାତ୍ମା । ..ଏଇ ମୁହଁଟି ଚାହିଁଥିଲା ଶୂନ୍ୟକୁ ଆଲୋକ ପାଇଁ, ଚାହିଁଥିଲା ଚାରିଆଡ଼େ ମଳିନ ଜୀବନରେ ସତ୍ୟର ସନ୍ଧାନ ପାଇଁ, ସତ୍ୟର ପ୍ରତିଷ୍ଠା ପାଇଁ । ଏ ମୁହଁଟି କେତେ କାନ୍ଦିଛି, କେତେ ହସିଛି, କେତେ ଆବେଗ, କେତେ କରୁଣା ଝରିଛି ଏ ମୁହଁଟିରୁ । ଆମେ ସ୍ୱାକୁ ଚହ୍ନିଛୁ, ସ୍ୱାକୁ ଘୋଡ଼େଇ ଦେଲେ ବାକି ଯେଉଁ ଅର୍ଦ୍ଧ-ଉଲଗ୍ନ ଦେହଟି ଚିମା ଚିମା ଆଣୁ, ବଡ଼ ବଡ଼ ପାପୁଲି, ସରୁ ସରୁ ଗୋଡ଼ ଅନେକ ପରିଚୟ ହେଉ ହୁଏତ ଆମେ ଚହ୍ନି ନେଉ, କିନ୍ତୁ ସେଗୁଡ଼ିକ ସେ ବିପୁଳ ବ୍ୟକ୍ତିତ୍ୱର ସାମାନ୍ୟତମ ଅଂଶ ମାତ୍ର । ସେମାନଙ୍କୁ ଗୋଟିଏ ଖଦଡ଼ ଚାଦରରେ ଘୋଡ଼େଇ ଦେଲେ, କମ୍ପା ଅନଶନଶୀର୍ଣ୍ଣ ସେ ଦେହଟିକୁ ବିଛଣା ଉପରେ ଆବୃତ କରିଦେଲେ, ସେଇ ମୁହଁଟି ସେ ମହାତ୍ମାର, ଏଥିରେ କାହାର ଆଉ ସନ୍ଦେହ ରହେ ନାହିଁ ।

ସେହିପରି ସେ ଆଉ ମୁହଁଟି ବିଷୟରେ ମଧ୍ୟ କାହାରି ସନ୍ଦେହ ରହେ ନାହିଁ । ତଳକୁ ଓହଳି ରହିଥିବା ଅବିନ୍ୟସ୍ତ, ଅଲୁଝିତ ଗୁଡ଼ିଏ କେଶ ଏବଂ ସରୁ ଗୋଟିଏ ଦାଢ଼ି ମଝିରେ ଗୋଧୂମ ବର୍ଣ୍ଣର ସେ ଚିହ୍ନିତ ମୁହଁଟି ! ଟାଣି ହୋଇ ରହିଥିବା ସେ ପ୍ରଶସ୍ତ ଲଲାଟରେ ଠାଏ ଠାଏ ରକ୍ତ । ସେ ସରୁ ନାକଟି ସହିତ ସିଧା ସିଧା ଭ୍ରୂଲତା ଦୁଇଟିର ଗୋଟିଏ ଛୋଟ ଝୁଣ ଭଳି ସାରୂପ୍ୟ; ଉପତ ଭଳି ପଡ଼ିଥିବା ସେ ଲମ୍ବାଳିଆ ମୁହଁଟିରେ ସ୍ଥିର, ଅର୍ଦ୍ଧ ନିମୀଳିତ ଦୁଇଟି ଅନନ୍ୟ ଅଖି !—ସ୍ୱାକୁ ଦେଖିଦେବା ମାତ୍ରେ ଆମେ ବିଚଳିତ, ଲଜ୍ଜିତ, ମର୍ମାହତ ହୋଇଯାଉ । ଏଇତ ସେଦିନ ଆମକୁ ଆମର ଅଜ୍ଞତା, କୃତଘ୍ନତା, ନୃଶଂସତାପାଇଁ କ୍ଷମା କରିଥିଲା । ସେ ଅଖି ଯୋଡ଼ିକରେ ଚିରକାଳପାଇଁ ଅଙ୍କିତ କରିଗଲା, ଅଭିଶପ୍ତ ମଣିଷର ଅନନ୍ତ ଯାତନା ଏବଂ ଅନନ୍ତ କାରୁଣ୍ୟର ଆଲେଖ୍ୟ । ସେ ମୁହଁରୁ ଝରିଥିଲା ପ୍ରେମ, ସ୍ନେହ, ବାତ୍ସଲ୍ୟ ଏବଂ କରୁଣା । ରକ୍ତାକ୍ତ ଲଲାଟଟିକୁ ଉପରକୁ ତୋଳିଧରି ସେଇତ' ଆମପାଇଁ ପ୍ରାର୍ଥନା କରିଥିଲା ! —ଆମେ ତାକୁ ଚହ୍ନୁ । ଏବେ ମଧ୍ୟ ତାକୁ ଗ୍ରହଣ କଲାଭଳି ସମ୍ଭାଳି ନେଲା ଭଳି ଅକୃପଣ ଉଦାରତା ଆମର ଆସିନାହିଁ । ତଥାପି ଆମେ ଚହ୍ନୁ । ତାଙ୍କ ଯେଉଁ ଓଯାରି ହୋଇ ରହିଥିବା ଦୁଇଟି ଶୀର୍ଣ୍ଣ ବାହୁ, ସରୁ ଦେହଟି ତଳକୁ ଝୁଲିହୋଇ ରହିଥିବା ଦୁଇଟି ଗୋଡ଼ ଏବଂ ଯେ ରକ୍ତାକ୍ତ ଗଭୀର କ୍ଷତ ଗୁଡ଼ିକ ଆମକୁ ବିବ୍ରତ କରନ୍ତି ସତ; କିନ୍ତୁ ମୁହଁଟି କେବଳ କଳୁଆଏ ଅଖଣ୍ଡ ବିଭୂତିରେ କବୁରୋହୁଳ ଦୀପଟିଏ ପରି ।

ତେର ଦେଖି ଯେପରି ଘଡ଼ିଟିକୁ ଚହ୍ନିବା କଷ୍ଟ, ଅବସ୍ଥିତ ଦେଖି ମଣିଷଟିକୁ ଚହ୍ନିବା ସେହିପରି କଷ୍ଟ । କିନ୍ତୁ ପରିବାର, ସ୍ୱଜନଙ୍କୁ ମୁହଁ ଦେଖି ଚହ୍ନାଯାଏ । ସେଇ ମୁହଁ ଗୁଡ଼ିକର ମାନ ଅଭିମାନ, ଲଜ୍ଜା, ମମତାକୁ ଜୀବନର ଆବେଗ ମୂଲ୍ୟ ରୂପେ ଗ୍ରହଣ କରିଯାଏ ! ପ୍ରିୟଜନର ମୁହଁ ଉପରେ ଛୁଇଁଟିଏ ପହଞ୍ଚିଗଲେ ଭାବାନ୍ତର ଆସିଯାଏ । ଏଇ ମୁହଁ ଗୁଡ଼ିକର ସରହଦରେ ଠିଆ ରହି ଦୁଇଟି ସ୍ୱତନ୍ତ୍ର ଆତ୍ମା ପରସ୍ପରକୁ ଗ୍ରହଣ କରନ୍ତି । କଥାରେ, ଅଖିରେ, ଭଙ୍ଗୀରେ ନିଜକୁ ପ୍ରକାଶ କରନ୍ତି । ଦୃଷ୍ଟିଆକର୍ଷଣ ସନ୍ଧରେ ନୂଆ ଭାବଟିଏ ଧରା ଦେଲାପରି ନୂଆ ମୁହଁଟିଏ ଅନେକ ବିସ୍ମୟ ବହନକରି ଜୀବନରେ ଉଦୟ ହୁଏ ।

ଧରାଯାଉ ଯେ ଯେଉଁ ମୁହଁଟି । ଝାଉଁଳା ଦରପାଚିଲା ଗୁଡ଼ିଏ ଛୋଟ ଛୋଟ ବାଳ । ଦୁଇ ତିନି ଦିନର ଦାଢ଼ି । ଛୋଟ ମୋଟା ମୋଟା ଦୁଇଟି କାନ । ରେଖା ବହୁଳ କପାଳଟି ଓସାରରେ ଜମା ଆଙ୍ଗୁଳେ । ଭ୍ରୂଲତା ହାଡ଼ ଗୁଡ଼ିକ ପାହାଡ଼ି ଜମିର ହୁଡ଼ାପରି ଉଞ୍ଚା ରହିଛନ୍ତି । ଆଖି ଗୁଡ଼ିକ ଛୋଟ ଛୋଟ ଏବଂ ରଙ୍ଗିଲା ଅଖି ତ୍ୱଚପଟେ ଜାମୁକୋଳିଆ ଦାଗ । କୋରଡ଼ ଭିତରେ ଅଖି ଗୋଟାଳି ଯୋଡ଼ିକ ହୁଗୁଲା ଏବଂ ଢଳ ଢଳ । ହନୁହାଡ଼ର ଲମ୍ବ କାନ ମୂଳ ପର୍ଯ୍ୟନ୍ତ ଲମ୍ବି ଯାଇଛି । ତା' ଉପରକୁ ଖୋପ; କପାଳରୁ ଝାଳ ବହିଗଲେ ସେଇଠି ଜମା ହୁଏ । ତା'ତଳକୁ ଗାଲ ପରବର୍ତ୍ତେ ଗୋଟିଏ ଲେଖାଁ ଉପତ୍ୟକା । ନାକଟି ଛୋଟିଆ, ମଝିରୁ ଭାଙ୍ଗିଲା ପରି । ସ୍ୱାକୁ ଗଢ଼ିଲାବେଳେ କାରିଗର ହାତରୁ ହୁଏତ ଉପାଦାନ ସରି ଯାଇଥିଲା । ନାକ ତଳେ ଯୋଗାଏ ନଡ଼ିଆ ସଢ଼େଇ ପରି ପ୍ରଶସ୍ତ ଭୂମିରେ ଛୁଟିଆ ଦର ପାଚିଲା ଜଣ । ମୋଟା ମୋଟା ଓଠ । ବିସ୍ତୃତ ପାଟିର ଦୁଇ କରରେ ବନ୍ଧୁଏ ଲେଖା କରି କଇଁଠ ଖାଇଲା ପରି ଦେଖାବ ଚହ୍ନ । ମୁହଁଟି ଯାକ ଉପରେ ଗୋଟିଏ ମୋଟା କାଳିଆ ଚମ୍ପାଳିଆ ଚମର ଘୋଡ଼ଣି । ଏତକ ଦେଖିଲେ ଜଣାଯିବ ଯେ ସ୍ୱା ଉପରେ ଦେଇ ଅନ୍ତତଃ ଟ୍ଟଲଣଟି ଗ୍ରୀଷ୍ମ ଏବଂ ଶୀତ ବୋହି ଯାଇଛି । ଗୁଡ଼ଲଣଥର ଏ ପୃଥିବୀ ବୁଲି ଆସିଛି ତା' କକ୍ଷ ଉପରେ । କୌଣସି କାଦାଘରେ ସ୍ୱାକୁ ଚନ୍ଦନର ପ୍ରଲେପ ମିଳି ନାହିଁ । କୌଣସି ହେମନ୍ତର ସିର ସିରିଆ କୋହଲା ଭିତରେ ଉଷ୍ମ ଟିକିଏ ଆଶ୍ରୟ ମିଳି ନାହିଁ । ଜଠରରୁ ଅଗ୍ନିଶିଖା ଚହଟି ଆସି ସବୁଯାକ ଚର୍ବି ତରଳେଇ ଦେଇଛି । ହାଡ଼ ଏବଂ ମାଂସ ଅହରହ ଖିଚିହୁ ଏବଂ ବୋହି ଯାଇଛି ଝାଳ ହୋଇ । ସେ ଅଖି ଯୋଡ଼ିକ ବୋଧହୁଏ ଅବୌ କାନ୍ଦ ନାହାନ୍ତି । ଅଜସ୍ର ଶୋକ କମ୍ପା ଅମାପ ଶୋଷ ତାକୁ ଆଚ୍ଛନ୍ନ କରି ରଖିଛି । ହୋଇପାରେ ଏ ମୁହଁତଳକୁ ଝାଙ୍କୁଆ ଗୁଡ଼ିଏ ଅବସ୍ଥିତ । ହାତ ପାପୁଲି ଗୁଡ଼ିକ ଝାଉଁଳା । ଗୋଡ଼ ଉଳଘା ତାଠ ଫାଳପରି

ମୋଟା । ଅଙ୍ଗୁଠିରେ ମଲମଲ ଗୁଣ୍ଡର ଭୋଜ୍ୟ କାନ୍ତ ଲେଖୁଛି ପଡ଼ିଛନ୍ତି ।.. ..ହୋଇପାରେ ସେ ଗଜ ବେହେରା' । ମାଲ ଗୋଦାମରେ ବସ୍ତା ବୁହେ । ଘରେ ତା'ର ରୋଗିଣୀ ମାଇକିନା । ଛଅଟା ପିଲା । ବଡ଼ ଛଅଟା ବାହାରି ଗଲେଣି ନିଜ ଧନ୍ଦାରେ । ସେ ଛ'ବର୍ଷର ଝିଅଟା ରହିପାରୁ ନାହିଁ । ଦୁଇ ଦିନ ଦିନ ଖାଇବାକୁ ନ ପାଇଲେ ପଳେଇ ଆସୁଛି । ହାଣ୍ଡି କଳା! ଛାଡ଼େଇ ନପାରି ମାଡ଼ ଖାଇଲେ ପଳେଇ ଆସୁଛି । ଗଜ ସ୍ଥିର କରିଛି ସେ ମଜୁରିରୁ ଅଧେ ସେ ପିଇବ, ବାକି ଅଧେ ସମସ୍ତେ ବାଣ୍ଟି ଖାଇବେ, ନଇଲେ ମରିବେ ।....କିମ୍ବା ସେ ହୋଇପାରେ 'ଗୋବିନ୍ଦ ପାଇକ' । ଏ ବର୍ଷ ମରୁଡ଼ିରେ ଭୂଇଁ ଫାଟିଗଲା । ମାଇପ କୋଉକାଳୁ ମରିଥିଲା । ବୋହୂ ପଳେଇଲା ଆଉଗୋଟେ ସାଙ୍ଗରେ ପୁଅ ମରିଗଲା ହଇଜାରେ । ନାତି ନାତୁଣୀ ଯୋଡ଼ିକ ଧରି ସେ ଆସିଛି ସହରକୁ । ସେ ମାଗି ଜାଣିନାହିଁ । ସେମାନେ ଭିକ ମାଗିନାହାନ୍ତି । ସେମାନେ ଦିନ ଦିନ ହେଲା ପାଣି ପିଇ ବଞ୍ଚିଛନ୍ତି । ସେ ଶୁଖିଆ ହୋଇ ବଲବଲ ଚାହିଁଛି । ଜାଣିପାରୁ ନାହିଁ ସେ ବଞ୍ଚିଛି ନା ମଲାଣି । ହୋଇପାରେ ସେ 'ସମ୍ବରୁ ବେହେରା' । ପାଞ୍ଚବର୍ଷ ତଳେ ସାହୁକାର ପାଖରୁ ଖଣ୍ଡେ ଆଠହାତ ଧୋତି ପାଇଥିଲା । ସେଇଟା ଏବେ ଦୁଇଖଣ୍ଡ ହୋଇ ଛିଣ୍ଡିଗଲାଣି । ଫାଳେ ପିନ୍ଧି, ଫାଳେ ଘୋଡ଼େଇହୋଇ ସେ ଆସିଛି ଜମି କାଗଜ ନେବାକୁ । ସାହୁକାର ପନ୍ଦର ଦିନକୁ ଖୋରାକ ଯୋଗେଇ ଦେଇ ତାକୁ କହୁଛି ସେ କାଗଜ ଖଣ୍ଡ ତା' ପାଖରେ ପଇଠ ଦେବାକୁ । ସେ ଏ ଚକ୍ରାନ୍ତରୁ ଖସିଯିବାକୁ ଚାହିଁ ବସିଛି । ଏଠି ମଣିଷ କଥା ନକହି କଳ କଥା କହୁଛି । ତାର ସ୍ୱାଦ ଅସୁନାହିଁ ।..ହୋଇପାରେ ସେ 'କେଳୁ ମଲିକ' । ତା'ର ଗୋଟାଏ ଗୋଡ଼ ଖୋଟା । ତା' ହାତରେ ବେଡ଼ି । ସେ ନିଶା ଖାଇ ତା' ମାଇପକୁ ହାଣି ଦେଇଛି । କଟାଳ କରି କହୁଛି ସେ ସେ ଠିକ୍ ଦେଇଛି ମୁଦୁଲିର ବଡ଼ପୁଅ ଘର ଭିତରୁ ଧାଇଁ ପଳେଇ ଚାଲ । ସେ ତାକୁ ମଧ ଦେଖିଲା ମାତ୍ରେ ହାଣିବ । ହୋଇପାରେ ସେ 'ବଜୁ ଭୁଞ୍ଜ' । ଲୁହା ଖଣିରେ କାମ କରୁଥିଲା । ଏବେ ରେଲବାଇରେ ଗାଙ୍ଗ୍‌କୁଲି କାମ କରେ ।..ହୋଇପାରେ ସେ 'ଋଷି ପଟେଲ' । ତା'ର କ୍ଷେତ ଜମିଟି ଏବେ ଦୋ ଫସଲ ହୋଇଛି । ସେ ଆସିଛି ସାର କିଣିବାକୁ । ..କିମ୍ବା ହୋଇପାରେ ସେ ଯୋଗିଆ ସାମୁଡ଼ୁ । ବଙ୍ଗାଳୀ କିମ୍ବା ତେଲେଙ୍ଗା ଗସ୍ତିକ ବାହୁ ଦାନ୍ତ ଶକ୍ତିରେ ବଞ୍ଚାଏ । ତା' ମାଇପ ମାଛ ବିକେ ।

ସେ ସେ ପ୍ରଜାପତିଆ ନିଶ, ଶୁଆଥଣ୍ଟିଆ ନାକ, ଓପର କପାଳ ଏବଂ ଚକ୍‌କଣ ଥୋଡ଼ିଟିକୁ ନେଇ ମୁହଁ । ତା'ର ଆଖିଯୋଡ଼ିକ ଥୋଇଲାପରି । ପାଖରୁ ଚାହିଁଲେ ବାଳଗୁଡ଼ିକର ରଙ୍ଗ ବୋଲାହୋଇ ଦିଶୁଛି ଗାଢ ନୀଳ ବର୍ଣ୍ଣ । ସିଗ୍ରେଟ ଖିଆ ଓଠ ଯୋଡ଼ିକ କଳା । ଥୋଡ଼ି ତଳକୁ କିଛୁ ଚର୍ବି । ଆଖିରେ ଅନେକ ପାରଦର୍ଶିତା ଝଟକୁଛି । ନାକ ମୂଳରେ ସାମୟିକ ଚଷମା ବ୍ୟବହାର କରୁଥିବାର ଦାଗ । ଗୋଲଆ ମୁହଁଟିରେ ବୋକାହୋଇ ରହିଛି କିଛି ପାଉଡର । ସେ ମୁହଁଟି ହସିଲେ ବେଶ୍ ଚମତ୍କାର ଦିଶୁଥିବ । କଥା କହିଲେ ଦିଶୁଥିବ ସୁନ୍ଦର । ମୁହଁଟି ଗୋରା ନୁହେଁ କି କଳା ନୁହେଁ । ଚମଡ଼ା ମୋଟା ନୁହେଁ କି ପାତଳ ନୁହେଁ । .ହୋଇପାରେ ସେ ଶାମବାବୁ' କୌଣସି ଦପ୍ତରର କନିଷ୍ଠ କିରାଣୀ । ସେ ନିଜ ଘରଟି ଭଡ଼ା ଦେଇ ସରକାରୀ ଘରେ ଥାନ୍ତି । ଧରାବନ୍ଧା ଦରମାକୁ ଧରାବନ୍ଧା କାମ ସାରିଦେଇ ସେ ରବିବାର ଦିନ ଯାନ୍ତି ମାଂସ କିଣିବାକୁ । ତାଙ୍କ ଝିଅ ବାଲ୍ୟପାଠ ଶେଷକରି ଓଢ଼ଣି ଧାରିଲେଣି । ତାଙ୍କ ଘର ପରଦାଗୁଡ଼ିକ ମଇଳା । ସେ ଲୁଙ୍ଗିମାରି ତାସ୍ ଖେଳିବାକୁ ଭଲ ପାଆନ୍ତି । ଅନେକ ଭିଟାମିନ୍ ବୋତଲ ତାଙ୍କ ଘରେ ଦେଖିବାକୁ ମିଳେ । ପୁଅ ବେକରେ ମାଳେ ତେଉଁରିଆ । ମାନଝିଅ ପାଇଁ ଦୁଇହାଲ ମେକ୍ସି ।. ହୋଇପାରେ ସେ ଇଞ୍ଜିନିଅର ଦାସବାବୁ । ଯେତେ ଜାହାଜ ସେ ଦରିଆରେ ମେଲ୍‌ଦେଲେ କୌଣସି ଗୋଟିଏ ହେଲେ ସେଥିରୁ କୂଳ ଛୁଇଁଲା ନାହିଁ । ଅନ୍ତତଃ କୋଠା ଖଣ୍ଡିକର ଛାତ ବସେଇ ଦେଇପାରିଲେ ସେ ନିଶ୍ଚିନ୍ତ ହୋଇଯାନ୍ତେ । କେତେ ଲୋକ କେତେ କଥା କହିଗଲେଣି । ତାଙ୍କୁ କେବଳ ସମସ୍ତେ ଛକି ବସିଛନ୍ତି । ସେ କ'ଣ ଶାଢ଼ୀଟିଏ କିଣି ନଥାନ୍ତେ, ନା ଲୁଗା ଦି'ଖଣ୍ଡ ପିନ୍ଧି ନଥାନ୍ତେ । ସେ ମୁହଁଟି ତଳକୁ ହୋଇପାରେ ଖୁବ୍ ବଗଡ଼ିଆ ଖଦଡ଼ ପଞ୍ଜାବୀ ଏବଂ ବଡ଼ ଧରଣର ଟୋଲ ମୁଣାଟିଏ ଝୁଲି ହୋଇ ରହିଛି, ଗୋବର୍ଦ୍ଧନବାବୁ ଦେଶସେବୀ ସମୂକ ଦଘଙ୍କ ବ୍ୟକ୍ତିତ୍ୱରେ । ଆଜୀବନ ଅସଂଖ୍ୟ ଲୋକଙ୍କ ସ୍ୱାର୍ଥ ପାଇଁ ଲଢ଼ି ଲଢ଼ି, ବକ୍ତୃତା ଦେଇ ଦେଇ, ଶେଷକୁ ଏ ଦେଶ କ'ଣ ତାଙ୍କୁ ଚିହ୍ନିଲା ? ପଞ୍ଚେ ବଗୁଲିଆ ମିଶି ତାଙ୍କୁ ଟାଉଟର ବୋଲି ପ୍ରଚାର କରିଦେଲେ । ସେ କଲେଜ କରେଇଛନ୍ତି । ରକ୍ତ ଅଞ୍ଜଳି ଦେଇଛନ୍ତି ଅନୁଷ୍ଠାନ ପାଇଁ । ଏବେ ଗୁଜରାଣ ପାଇଁ ଦୁଇ ଚାରିଟା ଟ'କ୍ସି ପକେଇ ଦେଲେ ବୋଲି କ'ଣନା ସେ ହୋଇଗଲେ ପେଞ୍ଚୁଆ ଏବଂ ଚୋର ।..କିମ୍ବା ହୋଇପାରେ ସେ ଅଧ୍ୟାପକ ବେହୁରିଆ । ପାଜାମା, ଜ୍ୟାକେଟ୍, ସିଗ୍; ଏବଂ ଟୋପାଜ୍ ବ୍ଲେଡରେ ଗତ ପଞ୍ଚବିଶ ବର୍ଷ ଧରି ସେ ମୁହଁଟି ମାଠି କ୍ଷୌର ହୋଇଛନ୍ତି । ଦୁଇଖଣ୍ଡ ଟେରିଲିନ୍‌କୁ ପାଞ୍ଚ ବର୍ଷ ଧୋଇ ଶୁଖେଇ ପିନ୍ଧିଛନ୍ତି । ସକାଳ ଆଞ୍ଚଳିକ ଶୁଣିଲା ବେଳେ ନାତିଟିକୁ ବାହେଇ ନେଇଛନ୍ତି । ସେ ବକ୍ତୃତା ଦେଇ ଫେରନ୍ତି ଫୁଲମାଳଟିଏ ଧରି । ନମସ୍କାରଟିଏ ପାଇଲେ ମୁହଁଟି ପଦ୍ମ ଫୁଟିଲା ପରି ମୁକୁଳିଯାଏ ।

..ସ୍ତମ୍ଭରେ ଡିଆରି ଯେ ବର୍ତ୍ତୁଳ ମୁହଁଟିରେ ସାବୁନ ଫେଣ ପରି ଥୋଲ ଥୋଲ ଚର୍ବି । ଚକ୍‌ଣ, ଘସାହେଲା

ଚମତ୍କାରି ରୂନା ଭଳି ହୋଇଥିବା ଚକଟାର ପାଟ କନା ପରି ଝାଣିହୋଇ ରହିଛି ଗାଲକୁ ଗାଲଯାଏ । ଅଠିର ଡୋଳା-ଗୁଡ଼ିକ ଭିତର୍‌ କହରା । ଭୂରୁ ଠିଆ ଠିଆ । ନାକ ଅଗଯାଏଁ ଝୋପି ପଡ଼ୁଛି ବୋଟାଏ ଚକ୍‌ଣିଆ ନରମ ମାଂସର ପ୍ରଲେପ । ଓଠଯୋଡ଼ିକ ଗଣିଲାପରି । ମୁହଁକୁ ଚାହିଁଲେ ପାଟି ଖୁବ୍ ଗ୍ରେଟ । ଅଣ୍ଟ ଉପରେ ଲମ୍ବା ଚୁରୁଟ୍ ଧୁଆଁ କୁହୁଳାନ୍ତ ବେଳେ ଯେ ହୁଏତ ମାଣିକ ମାଦରଷ୍ଣ । ମିଲ ମାଲିକ, ପ୍ରକାଣ୍ଡ ଶିଳ୍ପପତି । ହସିଲେ ଖୁବ୍ ଭଦ୍ରଭାବରେ ପାଟି ଫାର ହୋଇଯାଏ । ଭୂରୁ ଉପରୁ, ଗାଲ ମୂଳକୁ ଗୋଲାପ ବର୍ଣ୍ଣ ହୋଇଯାଏ । ସେଥିରେ ମହାନ ଉଠନ୍ତି, ପୁଲକ ଉଠନ୍ତି ଅନୁଗ୍ରହିତ ଅନୁଚର ବର୍ଗ । ରାଗିଲେ ଅଖିର ଲାଲ୍‌ଡୋଳା-ଗୁଡ଼ିକ କୋକଙ୍କା ଭୂରୁ ଭାରରେ ଚପି ହୋଇଯାଆନ୍ତି । ସେ ସବୁ ପାଟି ଗୋଟିକ ଓସାର ହୋଇ ପ୍ରକାଣ୍ଡ ଅଶ୍ଳୀଳ ଶବ୍ଦମାନ ଚିତ୍କାର କରେ । ଏଇ ବୋଧହୁଏ କହୁ ଫସ୍‌ସୀ ପାଇସ୍ ପରେ ଏ ମୁହଁ ଉପରକୁ ହିଷ୍ଟୁର ଆସୁଛି ଅନେକ ଯୌନ ଯୋଜନାର ଛାପ । ସେ ବୋଧହୁଏ ବହୁମ ବଲଅରାଜି'..ମଣ୍ଡୁ ମାନଧାତା..କମ୍ବା ବିଦ୍ୟାଧର ଗଡ଼-ନାୟକ । ଗାଲ ଉପରେ କଟା ଦାଗ ଏକ ଅଲଭ୍ୟ ସ୍ମୃତି । ଦର୍ପଣରେ ନିଜର ପ୍ରତିବିମ୍ବ ଦେଖିଲାବେଳେ ଏ ମୁହଁଟି ଅନମନା ଜଣାଯାଏ । ଆଉ ଡୋଳାରେ ବୋହେଇ ହୋଇଯାଏ ସେ କ୍ଷତ ଚିହ୍ନର ଅଜସ୍ର ଇତିହାସ ! ଏ ମୁହଁ ତଳକୁ ହୋଇପାରେ କେଶମୀ ପଞ୍ଜାବୀରେ ଅବୃତ ଚର୍ବିଳ ଗୋଟିଏ ଦେହ; ପାଉଁରୁଟି ଭଳି ହାତ ପାପୁଲ ଏବଂ ପାଦ,— ହୋଇପାରେ କେମନ, ପର୍ମକ୍ତ ଗୁଡ଼ିଏ ଅପାରଗ ଅବୟବ ।

ଲୁଖୁରା ବାଳ ବୋହେଇ ହୋଇଥିବା ଝାଳୁଆ ମୁହଁଟିରେ ପହଁରିଲା ପରି ଲେଖାଲା ଦୁଇଟି ଆଖି । ଗାଲରେ ପଟିରେ ଧୂଳି, ମଳ, ଅଠା, ଲୁହ, ଶିଙ୍ଘାଣି, ପାଞ୍ଚଟି କମ୍ବା ଛଅଟି ବର୍ଣ୍ଣ ବୋଧହୁଏ ସ୍ୱା' ଉପରେ ଅବାରିତ ଅଳାଡ଼ ହୋଇ ଯାଇଛି । ସ୍ୱା'ର ନାଁ ନାହିଁ । ସ୍ୱା'ର ମା' ନାହିଁ, କି ବାପ ବି ନାହିଁ । ଜାତ ନାହିଁ, ଧର୍ମ ନାହିଁ, ବିଶ୍ୱାସ ନାହିଁ । ଅତୀତ ନାହିଁ, ଭବିଷ୍ୟତ ନାହିଁ । ଧୂଳି ମଳ ଝାଳରେ ଜାଳିଆ ଅଠା-ଳିଆ କଟା ଜାମାର ଅଙ୍ଗଂଖା ତଳ ଭିତରେ ତା'ର ଦୁକୁଦୁକ ଛାତିକୁ ଲୁଚୁନାହିଁ ! ସେ ପଞ୍ଜୁରି ଭିତରେ ଧକଉଥିବା ପକ୍ଷୀ ଖାବକଟି ହୁନାହିଁ କି ଯାଉନାହିଁ । ଓହଳିଥିବା ପେଟର ବୃକୁଳା, କାଠି ପରି ଦୁଇଟି ଗୋଡ଼ ହୁଏତ ପୋଡ ହୋଇ ହିଛି ସୁତ୍ରୁଡ଼ି ପରି ଅଁଠା ପଥ କୁଡ଼ ଭିତରେ । ହୋଇପାରେ ସେ ଦେଉଠି ଦିନେ ଶୋଇଥିବ । ସେ ମୁହଁରେ ଅଶା ନାହିଁ, ଅଶ୍ରୁ ନାହିଁ, କୌଣସି ପ୍ରକାର ବେଦନା ମଧ୍ୟ ନାହିଁ । ଏଭଳି ଶୋଲକିଆ ମୁହଁରେ ମଣିଷର ଅବେଗ ଫୁଟିବା କଷ୍ଟ ।

ସେ ସେଉଁ ମୁହଁଟି ତେଲ ଜକଜକ ! କହରା ଗ୍ରେଟ ଗୋଟିଏ କଟରେ ଅନେକ ଦଣ୍ଡା । ସେଥିରେ ପେନ୍ଥାଏ ପ୍ଲାଷ୍ଟିକ୍ ଫୁଲ । ଆଖିରେ ଅନେକ ସ୍ୱଳ୍ପକ, ଅନେକ ଆଗ୍ରହ । ସେ ଅସିଛି ସହରକୁ । ଏଇଠି ବାଲୁବାଲୁ ଗୃହିଁଛି କୋଠାବାଡ଼ି ମଣିଷଙ୍କୁ । ହୁଏତ ଦେହ ଲୁଚେଇବାକୁ ତୋଶଆ ପାଞ୍ଚହାତ ଖଣ୍ଡେ ଗୁଡ଼େଇ ହୋଇଚ । କମ୍ବା ପିନ୍ଧିଚ ଖଣ୍ଡେ ଚଗ୍ ଦଦରା ଫ୍ରକ୍ । ଏଇଠି ବାସନ ମାଜିଲେ ଲୋକେ ଖାଇବାକୁ ଦଅନ୍ତି । ସେ ମାଡ଼ ଖାଏ । ଅଇଁଠା ଖାଏ । ମୁହଁରେ କିନ୍ତୁ ହସ ଲାଗି ରହିଥାଏ । ବେଳେ ବେଳେ ଗୁଣା ଲଗେଇବାକୁ କମଲା ଦଣ୍ଡା ଫୋଡ଼ ଦେଇ ନାକ ପୂଡ଼ାଟାକୁ ରଙ୍ଗ ଜକଜକ କରି ରଖିଥାଏ । ଫୁଲଟିଏ ପାଇଲେ ମୁଣ୍ଡରେ ଖୋସିଦିଏ—ସେ ସତ ଫୁଲ ହେଉ ବା କାଗଜ ଫୁଲ ହେଉ । ତା'ର ଖୁବ୍ ଦମ୍ଭ । ସେ ଏକାକ୍କା ଗଛମୂଳେ ରହିଯାଇ ପାରିବ । ସହରର ଏ ମୁଣ୍ଡରୁ ସେ ମୁଣ୍ଡକୁ ମାଛ ଅଣ୍ଟାଳ ଆଉ ଆଉ ଖାଲି ପେଟରେ ଧପାଇ ଯାଇ ପାରିବ ପାଞ୍ଚଘରେ ବାସି ଅଇଁଠା ପାଇଁ । ସେ ହୋଇପାରେ 'କମଳ' । ବାପ ମଲା ପରେ ସାଉକର ମତାଣରେ ତା' ଭାଇ ତାକୁ ଘରୁ ବାଡ଼େଇ ବାହାର କରି ଦେଇଛି । ହୋଇପାରେ ସେ 'ଚନ୍ଦ୍ରାମ୍ମା' । ସ୍ୱତରେ ଷ୍ଟେସନ ପ୍ଲାଟଫର୍ମରେ ତା' ମା'କୁ ଖୋଜି ପାଇଲା ନାହିଁ । ରେଳ ତଳେ ପଡ଼ି ସେ ଦୁ' ଖଣ୍ଡ ହୋଇ ଯାଇଥିଲା । ତା' ଆଉ ଦିନ ଯାକ କାନ୍ଦିଲା ପରେ ସେ ଦି ଘର ପରେ ପାଞ୍ଚବର୍ଷ କାମ କରି ପାରିଲାଣି । ଏବେ ବାହାରିଚ ନିଜେ ଘର ବାନ୍ଧି ପାଇଚି କରିବ !

ସେ ସେ ଠିଆ ନାକ ତଳକୁ ଗଜୁରି ଲଣି । ତର ପରି ଦାଉଦାଉ ଆଖି ! ପୋଛି ଦେଲାପରି ମୁହଁ । ଗାଲରେ ଏଠି ସେଠି ଦୁଇ ଚାରିଟା ବ୍ରଣ । ଓଠରେ କଅଁଳ ଲୁଣ୍ଡା ଲୁମ । ହନୁ ହାଡ଼ ଲୁଚ ନାହିଁ । ମୁହଁ ପୂରି ନାହିଁ । ନିଶ ଗହଳ ଧରି ନାହିଁ । ହସିଲେ ଦାନ୍ତ ଚକ୍ ଚକ୍ ଦିଶେ । କିନ୍ତୁ ସେ ଆଖିକୁ ନିଦ ନାହିଁ । ସେ ସଂସାରକୁ ବଦଳେ । ସୂର୍ଯ୍ୟ ଚନ୍ଦ୍ର ବଦଳେ । ସେ ପୋଖତ ନାଉରୀ ଭଳି ସମୁଦ୍ରକୁ ଅନେଇଚ । ତା' ଲହଡ଼ି, ତା'ର ସେ ଘୂ ଘୂ ଶବ୍ଦକୁ କଡ଼ କରି ଜାନ କରି ଗୋଡ଼ ଫରକଟେଇ ଗୃହିଁଛି । କହୁଛି ସତେ ବା, "ମୁଁ ତତେ ଜିଣିବ ! ତୋ ଗଭୀରକୁ ମାପିବ ! ତୋର ଅରପାର ଛୁଇଁବ !" ନିର୍ଭୀକ, ନିଷ୍କମ ସେ ଆଖି ଆଉ ମୁହଁରେ ଅଲେକଜାଣ୍ଡାରଭଳି ଦିଗ୍‌ବିଜୟୀ ପ୍ରତ୍ୟୟ । .... ସେ ହୋଇପାରେ ବିଭୂତି ହରିଚନ୍ଦନ, ! ଅଣ୍ଡ ବୀକ୍ଷଣରେ ସୂକ୍ଷ୍ମ ତନ୍ତୁ ଉପରେ ଗବେଷଣା କରୁଛି । ମହାକାଶ ଯାନକୁ ଖେଳଣା ଭଳି ସୃଷ୍ଟି ପାରିଲାଣି । ପଚାରିଲେ କହୁଛି, ସେ ହାରିବାକୁ ଅସିନାହିଁ—ଅସିଛି ଅନେକ ନୂଆ ଦିଗ୍‌ବଳୟ ଅବିଷ୍କାର କରିବାକୁ । ....ହୋଇପାରେ ସେ ପ୍ରସନ୍ନ ପ୍ରହରାଜ ! ଚମତ୍କାର କବିତା ଲେଖେ । କହୁଛି, ସାରା ପୃଥିବୀର ସବୁ ଫୁଲର ପରାଗ ଆଣି ଏଇ କାଗଜରେ ବୁଣି-

ଦେବ । କବତାର ସ୍ୱର୍ଣ୍ଣ କଣିକା ଝଟକୁଛି ତା'ର ଆଖିରେ, ତା' ନାକ ଅଗରେ ! ....ହୋଇପାରେ ସେ ମୁକୁନ୍ଦ ମହାପାତ୍ର । ପଛକୁ କେବେ ଫେରି ଚାହିଁନାହିଁ । ସମସ୍ତଙ୍କ ଆଗରେ, ସମସ୍ତଙ୍କ ଉପରେ ସେ ରହି ଆସିଛି, ଘରେ ତା'ର ଛାତ ନାହିଁ କି କାନ୍ଥ ନାହିଁ । ଗୋଡ଼ରେ ଯୋତା ନାହିଁ କି ହାତରେ ଘଣ୍ଟା ନାହିଁ । ବଦଳେଇବାକୁ ଜାମା ମଧ୍ୟ ନାହିଁ । ମଠରେ ଓଳିଏ ଭୋଗ ହେଲେ, ଆର ଓଳିକୁ ଅନ୍ନ ନାହିଁ । ସେଥିପାଇଁ ତା' ଦାନ୍ତ ପାଟି ଦାଢ଼ ରଚିଥାଏ । ଆଖି ସ୍ଥିର ହୋଇ ଆଗକୁ ଚାହିଁଥାଏ । ସେ ସ୍ୱପ୍ନ ଦେଖୁଛି ଯେ ଏ ନଈ ଗୁଡ଼ାକୁ ସେ ମୋଡ଼ିଦେବ । ବାଲି ଉପରେ ପଦ୍ମ ଫୁଟାଇ ଦେବ । ପାହାଡ଼ଗୁଡ଼ାକୁ ଉଖାରି ଫିଙ୍ଗିଦେବ ।

ଝାଂପୁରା ଝାଂପୁରା ବାଳ, ଚକା ଚକା ସାବୁନ ଫୋଟକା ପରି ଜଳ ଜଳ ଆଖି । ଯୋପି ପଡ଼ୁଥିବା ଗାଲ । ପାଚିଲା ଅମୃତ ଫଳରୁ ଝରିପଡ଼ୁଥିବା ନିର୍ମଳ ରସ ପରି ଯୋପି ପଡ଼ୁଛି ଲାଳ । ଅକାରଣ ହସଟିଏ କେଉଁଠୁ ଭଳି ଉଇଁ ଆସୁଛି ସେ ମୁହଁ ଉପରକୁ । ଏ ହେଉଛନ୍ତି ଶ୍ରୀମାନ୍ କୁନା, ବୁନା, ବାପି, ଲାଲୁ, ମିଲୁ ଓଗେରେହ୍ ଅନାଗତ ଶତାବ୍ଦୀର ଯୁଗନ୍ଧର ମହାପୁରୁଷମାନେ । ଏମାନେ ନିଃସଙ୍କୋଚ ଦିଗମ୍ବର ଜୈନ । ଏମାନେ କାମନା ଶୂନ୍ୟ ଚିରପ୍ରସନ୍ନ ବୁଦ୍ଧ । ଏମାନେ ସ୍ୱପ୍ନ । ଏମାନେ ସିଦ୍ଧ । ଏଇମାନେ ହିଁ ଅମୃତସ୍ୟ ପୁତ୍ରାଃ ।..ହୁଏତ କୃଷ୍ଣ ତମାଳ ପରି ମୁହଁରେ କୁଞ୍ଚକୁଞ୍ଚ ବାଳ ବାରି ହେଉନାହିଁ । ଆଖି ଦୁଇଟି ଗଉଗଉ ଧଳା ।..କମ୍ବା ହଳଦିଆ ଛେପସ୍ତ ମୁହଁ, କାଉଆ ମୁଣ୍ଡ । ଚପିଲା ପରି ନାକ । କହସ୍ତ ଫୁରୁଫୁରିଆ ବାଳ ସାଙ୍ଗକୁ ଚରିଦେଲା ପରି ଘାଉଲା ଦୁଇଟି ଆଖି ସବୁବେଳେ ଦରବୁଜା ।..କମ୍ବା ଶଙ୍ଖ ପରି ଧଳା ମୁହଁରେ ଟେକଲା ପରି ନାକ । ନେଳି ନେଳି ଆଖି । ତମ୍ବାଳିଆ ମକା କେଶର ପରି ନରମଗୁଡ଼ିଏ ବାଳ । ଅନେକ ମହାଦେଶ, ଅସଂଖ୍ୟ ସାଗର ବେଳାରେ, ନଦୀ ଉପତ୍ୟକା ଏବଂ ପର୍ବତ ପ୍ରାନ୍ତରେ ଫୁଲ ଫୁଟିଲା ପରି ଏ ମୁହଁଗୁଡ଼ିକ ଫୁଟିଛନ୍ତି । ଉଦୀୟମାନ ଏବଂ ଅଗଣିତ ଅନୁଦିତ ସୂର୍ଯ୍ୟ ରଶ୍ମିରେ ଏମାନେ ପାଳିତ ହେବେ । ପାଳନ କରିବେ ସସାଗରା ମେଦିନୀ । ଦୋହନ କରିବେ ବସୁନ୍ଧରା ପୃଥିବୀକୁ । ତୋଳି ଆଣିବେ ଆକାଶର ପୁଷ୍ପ ।

ଏଥର ଟିକିଏ ବୁଲି ଚାହାନ୍ତୁ । ସକାଳୁ ଝରକା ପାଖେ ବାଳୁତ ଅଗ୍ନି ଶିଖାପରି ପାଖୁଡ଼ା ମେଲିଦେଇ କଳାକେଶର ଭିତରୁ ସେ ଚାହିଁ ରହିଛି ତା' ନାଁ ସୂର୍ଯ୍ୟମୁଖୀ ।..ଫଗୁ ଖେଳିଥିବା ଶ୍ୱେତ ଶ୍ୱେତ ପାପୁଲି ପରି ଟହ ଟହ ପାଖୁଡ଼ା ଘୋଡ଼େଇ ହୋଇ ଝରଝୁମା ଭିତରେ କନକ କେଶରକୁ ସେ ଝୁଲିଝୁଲି ନିମନ୍ତ୍ରଣ କରୁଛି ତା' ନାଁ ପଦ୍ମ । ନେଳି କଉଳର ବର୍ତ୍ତୁଳ ମୁହଁ ଉପରେ ଅସଂଖ୍ୟ ଦାଉଦାଉ ରୂପା ଆଖିରେ ସେ ଚାହିଁ ରହିଛି ସେ ଚଗଟ । ଲମ୍ବାଳିଆ କଅଁଳ ମୁହଁରେ ଏଠି ସେଠି ଲାଜକୁଳି ସାପ ପଲକଗୁଡ଼ିକୁ ଅଳ୍ପ ବୁଜି ସେ ମହକୁଛି ତା' ନାଁ ଚମ୍ପା ।....

କଳା କାଇଁଚ ପରି ଆଖି, ଲମ୍ବା ଠିଆ ଠିଆ କାନ, ଧଳା ପଶମରେ ଢାଆଁର, ସେ ସରଳ, କଅଁଳ ସୁକୁମାର ମୁହଁଟିକୁ ଆମେ ଡାକୁ ଶଶା । ଧୂସର ଲୁହା ଚଳୁରେ ଢାଆଁର ସେ ଶକ୍ତ ତଳକୁ ନିର୍ଭୀକ ଘୁମେଇଲାପରି ଅର୍ଦ୍ଧନିମୀଳିତ ଆଖି । ସେ ଚଉଡ଼ା ନାକ ଏବଂ ଯୋଡ଼ ତଳକୁ ରକ୍ତ-ସ୍ନାତ ସେ ଦାଢ଼ି, ଏବଂ ବାଉଁଶ ଗଜା ପରି ଦାନ୍ତର ପ୍ରହରୀ ଜଗିଥିବା ପାଷାଣ ମେଲା ସେ ମୁଖ ବିବରକୁ ଆମେ କହୁ ସିଂହ ।.. ହଳଦିଆ ଶାଗୁଆ ଗୁଡ଼ିଏ ଚକ୍‌କଣ ରଙ୍ଗ ଭିତରେ ରେଖାଏ ହିଙ୍ଗୁଳ ବେଢ଼ା ଘେରିଥିବା କଳା ଟିମ୍‌ଟିମ୍ ଆଖି, ନାଲି ଯୋପି ପଡ଼ୁଥିବା ସୁପୁଷ୍ଟ ଥଣ୍ଟଟିକୁ ମିଶେଇଲେ ଏ ମୁହଁଟି ହେଲା ଶୁକପକ୍ଷୀ । ମାଟିଆ ଟାଣୁଆ ଖସୁଖସୁ, ଘାଉଘାଉ ଭଲତା ତଳକୁ ଉହ୍ନକୁଥିବା ଆଖି, କ୍ଷୁଧାତ କ୍ଷୁରଧାର ପରି ଥଣ୍ଟଟିର ସମାହାର ହେଉଛି ଛଞ୍ଚାଣ । ଅସଂଖ୍ୟ ଉଦ୍ଭିଦ ଅସଂଖ୍ୟ ଜନ୍ତୁ ଏବଂ ପକ୍ଷୀମାନଙ୍କର ଅଗଣିତ ମୁହଁକୁ ନ ଚାହିଁଲେ ସେମାନଙ୍କୁ ଚହ୍ନି ହୁଏନାହିଁ । ଚାହିଁଦେଲେ ବି ଚହ୍ନି ହୁଏନାହିଁ । ଚାହିଁ ରହିଲେ ମଧ୍ୟ ନୁହେଁ । ରୂପ ଦେଖି ଦେଖି ନାମଟିଏ ଖଞ୍ଜିବା ହେଲା ଚହ୍ନିବାର ଲକ୍ଷଣ । ଏତେଗୁଡ଼ିଏ ମୁହଁକୁ ଚାହିଁ ଚାହିଁ ଜୀବନ ବିତିଯାଏ । କିନ୍ତୁ ସେତେବେଳେ ଅନୁଭବ ହୁଏ ଯେ ସେମାନେ ମଧ୍ୟ ଏଇ ଗୋଟିଏ ମୁହଁକୁ ଚାହିଁଛନ୍ତି, ହଠାତ୍ ଡର ମାଡେ, ବିସ୍ମିତ ହୋଇଯିବାକୁ ହୁଏ । ଆକାଶ ଚାହିଁ ରହେ ତା'ର ତାରା ଆଖିଗୁଡ଼ିକରେ । ନଦ ନଦୀ ପାହାଡ ପର୍ବତ ସମସ୍ତେ ଚାହିଁ ରହନ୍ତି । ଚାହିଁ ରହନ୍ତି ଲତା, ଗୁଳ୍ମ, ମହୀରୁହ ସକଳ । ଗରଳ, ଶିମ୍ପାଞ୍ଜି, ଶଶା, ଶିଆଳ ଏବଂ ସିଂହ ।..କାହିଁ କେଉଁ ଗହ୍ୱରରେ ଗୋଟାଏ ସମ୍ପର୍କର ତନ୍ତୁ ହୁଏତ ଛିନ୍ନ ହୁଏ । ମୁହଁଗୁଡ଼ିକ ଆସ୍ତେ ଏକାକାର ହୋଇଯାନ୍ତି । ସମସ୍ତେ ବସନ୍ତି ଗୋଟେ ଏ ଛୁପା ପରି । ମହୁଲଯାଏ ସେତେ ସବୁ ବୈଶିଷ୍ଟ୍ୟ । ତା'ପରେ ହୁଏତ ଗମ୍ଭୀରତମ ପ୍ରଦେଶରୁ ଆସ୍ଫୀତା, ଅଭିନ୍ନ ଯୋଦର-ପଣ ଦଉଡ଼ି ଆସେ ; ଲହଡ଼ ମାରିଯାଏ ଏ ପ୍ରାନ୍ତରୁ ସେ ପ୍ରାନ୍ତ ପର୍ଯ୍ୟନ୍ତ । ଆକାଶର ମାମୁଁଙ୍କୁ ପହଁରିଯାଏ ଯୋଦର ଆତ୍ମା । ସେଇଠି ଥାଇ ସେ ପୃଥିବୀକୁ ଦେଖେ । ବର୍ତ୍ତୁଳ ମୁହଁରେ ନେଳି ନେଳି ସମୁଦ୍ରର ଗାଲ । ଏପରି ସୁନ୍ଦର ମୁହଁଟିଏ ସତେ ବା ସୃଷ୍ଟିରେ ଆଉ ନାହିଁ । ଯୋଦର ଆତ୍ମା ପରିହାସ କରେ ।—"ହେ, ପୃଥିବୀ; ସୁଫଳା, ବର୍ତ୍ତୁଳା, ଶ୍ୟାମଳାଙ୍ଗୀ ।..ତୁ କ'ଣ ଖାଲି ମୁହଁଟିଏ ? ତୋର ଅବୟବ କାହିଁ ?"—ସେ କହେ, "ଅବୟବ ନେଇ କ'ଣ ହେବ ? ସେଗୁଡ଼ିକ ଅପୂର୍ଣ୍ଣତାର ଲକ୍ଷଣ । ସବୁ ଗୋଟେଇ ଆସି ବର୍ତ୍ତୁଳ ହୋଇଗଲେ କେବଳ ମୁହଁଟିଏ ହିଁ ରହିଯିବ, ଚନ୍ଦ୍ରପରି, ସୂର୍ଯ୍ୟପରି, ଆକାଶପରି ।!

ଶିକ୍ଷା ଉପନିର୍ଦ୍ଦେଶକ
ଶିକ୍ଷା ନିର୍ଦ୍ଦେଶାଳୟ, ଭୁବନେଶ୍ୱର

# ପ୍ରଧାନମନ୍ତ୍ରୀଙ୍କ ଅର୍ଥନୈତିକ କାର୍ଯ୍ୟକ୍ରମର ସଫଳତାରେ ଉଠା ଜଳସେଚନର ଅବଦାନ

* ଓଡ଼ିଶାର ବିପୁଳ ଭୂତଳ ଜଳ ସମ୍ପଦର ବିନିଯୋଗପାଇଁ ଉଠା ଜଳସେଚନ କର୍ପୋରେସନ ଏକ ସୁପରିକଳ୍ପିତ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି ।

* କର୍ପୋରେସନ ଏ ପର୍ଯ୍ୟନ୍ତ ରାଜ୍ୟର ବିଭିନ୍ନ ଜିଲ୍ଲାରେ ୨,୫୭୪ଟି ଉଠା ଜଳସେଚନ ଯୋଜନାରେ ବିଦ୍ୟୁତ୍ ସଂଯୋଗ କରି ସାରିଲେଣି ।

* ଏହିସବୁ ଯୋଜନା ଫଳରେ ପ୍ରାୟ ଏକ ଲକ୍ଷ ୩୦ ହଜାର ଏକର ଜମିରେ ଖରିଫ ଫସଲ ୨୭ ହଜାର ଏକରରୁ ଅଧିକ ଜମିରେ ରବି ଫସଲ ପାଇଁ ଜଳସେଚନ ବ୍ୟବସ୍ଥା କରାଯାଉଛି ।

* ଅଧିକନ୍ତୁ ରବି ଫସଲ ପାଇଁ କର୍ପୋରେସନ ପକ୍ଷରୁ ବ୍ୟାପକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଉଛି ଏବଂ ବହୁ ପରିମାଣ ଜମିରେ ଉଠା ଜଳସେଚନର ଉପଯୋଗପାଇଁ ବ୍ୟବସ୍ଥା ହେଉଛି ।

* ରାଜ୍ୟର କୃଷୀମାନେ ଉଠା ଜଳସେଚନ ଯୋଜନାଗୁଡ଼ିକର ସମ୍ପୂର୍ଣ୍ଣ ଉପଯୋଗ କରି ରାଜ୍ୟର ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଦେଶକୁ ଖାଦ୍ୟଶସ୍ୟ ଉତ୍ପାଦନରେ ସ୍ୱାବଲମ୍ବୀ କରିବାରେ ସାହାଯ୍ୟ କରନ୍ତୁ ।

* *

*

# ସିଦ୍ଧାର୍ଥ

ଶ୍ରୀ ପ୍ରଫୁଲ୍ଲ କୁମାର ମହାନ୍ତି

ଅନେକ ଦେଖୁ ଦୀପ ଲିଭିଲାଣି ସେପାଖ ପୃଥିବୀର
ନିସ୍ତୁପ ମନ୍ଦିରରେ ତାଲା ପଡ଼ିଲାଣି
ନଦୀ ବି ହାଲିଆ, କୂଳଭଙ୍ଗା କ୍ଳାନ୍ତିରେ ଦରଆଉଜା,
ଖାଲି ଯାହା ଯୁଇ ଫିଙ୍ଗେ ପବନକୁ ମୁଠେଇବାର ଇଚ୍ଛା,
ଲକ୍ଷ୍ୟହୀନ ଖଇ କଣ୍ଢେଇ ପରି ଅଚିହ୍ନା ଗନ୍ଧରେ ।

ମୋ' ନନ୍ଦିକା ବନ୍ଧୁପାଦ କାନ୍ଦୁଅରେ ଚର୍ଚ୍ଚିତ ମଶାଣି
ଫେରିବା ଅଯୋଗ୍ୟ—
ବାନ୍ୟାପ୍ତ ସମ୍ପତ୍ତି ପରି ଅନାଦୃତ ଶବ,
ଶେଷ ଚର୍ଚ୍ଚା ନପୁଂସ ଇଚ୍ଛାର ।

ଏ ପାଖ ଅସିଲା ଦିନ ଆମ୍ବଗଛ ଭରିଥିଲା ନୂଆ ବଉଳରେ
ପୃଥ୍ୱୀ ବି କେମିତି କମ୍ ଲାଲ୍ ହୋଇ ଗୋଲାପୀ ଲାଗୁଥିଲା
ଆଉଥିଲା ବିଶୃଙ୍ଖଳ ଢେଣାରେ ଯାଦାର ଶବଦ
ପଅଳ ଗାଧୁଆ ତୁଠେ ଅନେକ ସୁନ୍ଦର ପଦେ ଅଲତାର ଦାଗ ।

ମୁଁ ବି ଦଉଡ଼ିଥିଲି ଦାଢ଼ିଧରି ମୁନିଙ୍କ ପଛରେ
ରଥର ଘର୍ଘର ଥିଲା କାନରେ ମନରେ
ମୁଣ୍ଡରେ ଥିଲା ଦୁମ୍ଦୁମା ପଗଡ଼ି,
ଆଖି ମଧ୍ୟ ସ୍ଥିର ରହୁଥିଲା ଅସ୍ପୃନକ ଶକୁନ୍ତଳା ଲାଗି ;
ମୋର ଧଇଁ ସଇଁ ଦେଖି ମୃଗମାନେ ଠିଆହେଲେ ଅନେକ ଲାଜରେ
ପ୍ରିୟମ୍ବଦା ହସିଥିଲା ପଦ୍ମ ଉହାଡରେ ।

ତା'ପରେ,
ଅପରାହ୍ନ ଗ୍ରାଇ ନେହଟାରେ
ଅନେକ ବଜାର ଛକେ ଅପେକ୍ଷାର ନାଲି ଆଲୁଅରେ
ଦରକସ୍ତ ଅକ୍ଷି ଦେଖି ଶୁଟିଲା ମୁହଁରେ
ଦମକା ଗ୍ରୀଷ୍ମରେ ଗଣି ଠକ୍ ଠକ୍ କୁସନ୍ତି ଶବଦ
ଫେରିଲି ମୁଁ ଅରଣ୍ୟକୁ
ମତ ମତ ପକ୍ଷୀଙ୍କ ସଙ୍ଗୀକୁ ।

ଅନ୍ଧାରର ହୃଡ଼ ହେଲା ଲାଲ
ଅପରୂପ ଆକାଶ ବି ଧୀରେ ଧୀରେ ଲାଲ ହେଲା
ରତ୍ନାକର—ଦ୍ୱାରଣ, ମନ୍ତ୍ରର ଚମକେ—
—ପାଣିନାହିଁ ଗଛ ମଳି
ଶିଶିର ଝରେନା ଆଉ ଅସ୍ରଜକ ଶୃଙ୍ଗପରେ
ଫୁଲନାହିଁ, ମାଟିନାହିଁ
ହେମନ୍ତଅଁ ଯାଏ ଲଭି
ଦିଗମ୍ବର ରାଜକନ୍ୟା ଲୁହ ଢାଳିବାରେ ।

ମୁଁ ବା ଆଉ କ'ଣ କରିଥାନ୍ତି !
ଅନ୍ଧାରର ଦ୍ୱାରଧରି ପହଁଚିଲି ନଦୀକୂଳେ
ସକାଳର ସ୍ୱେଦ ନାଆ ସ୍ୱଚ୍ଛର ଅଶ୍ରୁସ୍ନ ଛବି
ଶୋଭଫୁଲ, ଅକ୍ଷିଫୁଲ ଫଳକୁ ସାଉଁଟିବାକୁ
ମୋ' ଗାଁର କାଶତଣ୍ଡି ଶ୍ରେଷ୍ଠ ପର୍ବତରେ ।

ଯେ ପାଖେ ବି ପୁରୁଣା ଅନ୍ଧାର
ଜନ୍ମିଛି ପଦଚିହ୍ନ ବୃକ୍ଷ ଅଶୋକର ।
ମେ.' ନାଅରେ ଛଇଁଗଲି ବିକ୍ଷତ ପାଦର ।



ରିଡ଼ର, ଇଂରେଜୀ ବିଭାଗ
ଖଲ୍ଲିକୋଟ କଲେଜ, ବ୍ରହ୍ମପୁର

# ଗୋଟିଏ ବ୍ରହ୍ମ ରାକ୍ଷସର ଆତ୍ମକଥା



ଶ୍ରୀ ସାତକଡ଼ି ହୋତା

ସେ ହଠାତ୍ ଦିନେ ଗାଁରୁ ଅନ୍ତର୍ଦ୍ଧାନ ହୋଇଗଲା । କେହି ଜାଣିଲେ ନାହିଁ । କାହିଁକି ସେ ଘରଛାଡ଼ି ପଳେଇଗଲା । ସମସ୍ତେ କିନ୍ତୁ ମନେକଲେ ଗତ କେଇ ବର୍ଷ ହେଲା ସେ ଆଉ ସାଧାରଣ ବ୍ୟକ୍ତି ପରି ବ୍ୟବହାର ନ କରି ସେପରି ଅନେକ ବଦଳି ଯାଇଥିଲା । ସେଥିପାଇଁ ସେ ଯାହା କହୁଥିଲା ତାହା ଲୋକେ ବୁଝିଲେ ବି ଏତେ ଶ୍ରେଷ୍ଠ ଶ୍ରେଷ୍ଠ କଥା ସେ କହୁଥିଲା ବୋଲି ତାକୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ । ତା'ପରେ ସେମାନେ ଭାବିଲେ ନରୋତ୍ତମ ବୋଧହୁଏ ପାଗଳ ହୋଇଯାଇଛି ।

ନରୋତ୍ତମ ଯାହାକୁ ଦେଖିଲା ତା ପାଖକୁ ଯାଇ କହିଲା—ଏଇ ମନ୍ଦର ପର୍ବତକୁ ଦେଖ, ଆମେ ପିଲା ଥିଲାବେଳେ ଏତେ ଗଛ ଲତା ଥିଲା ଯେ ସୂର୍ଯ୍ୟକିରଣ ପଡୁ ନଥିଲା, ଆଉ ଏବେ ଗଛ ଲତା କିଛି ନାହିଁ । ସବୁ ଫାଙ୍କା, ପଥର ଦେଖାଯାଉଛି ।

କହିଲାବେଳେ ତା' ଆଖିର କୋଣରୁ ଅଶ୍ରୁର ଜଳବିନ୍ଦୁଟି ପୁଣି ଲିଭିଯାଏ । ସେ କହିଲାବେଳେ ଯେତିକି ଉତ୍ତେଜନା ଦେଇ ଆରମ୍ଭ କରେ ଶେଷକଲା ବେଳକୁ ସେତିକି ଶିଥିଳ ହୋଇ ଯାଉଥାଏ ତା'ର ସ୍ୱର । ସେ ଯେପରି କେଉଁ ଅନ୍ତର୍ବେଦନାରେ ଥରି ଉଠି ମୁହଁମାଡ଼ି ପଡ଼ି ଯାଉଥିଲା ।

ଯିଏ ତା' କଥା ଶୁଣୁଥିଲା ସେ ଆଶ୍ଚର୍ଯ୍ୟ ହୋଇ ପ୍ରଥମେ ତା'କୁ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଦେଖୁଥିଲା ଏବଂ ତା' କଥା ସରିଗଲେ ପଚାରୁଥିଲା ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

କିଛି ନାହିଁ ? ଅବାକ୍ ହୋଇଯାଇ କହୁଥିଲା ନରୋତ୍ତମ । ଏତେବଡ଼ ପର୍ବତରେ ଏତେ ଗଛଲତା ସବୁ ଶେଷ ହୋଇଗଲା ଅଥଚ ତୁମେ କହି ପାରୁଛ କିଛି ହୋଇନି ବୋଲି ।

ତା'ପରେ ଦୀର୍ଘ ନିଶ୍ୱାସ ପକେଇ ବୃଦ୍ଧୀମା ଶ୍ରେଷ୍ଠ ଶ୍ରେଷ୍ଠ ନାରୀ ନାରୁଣୀମାନଙ୍କୁ ଘୁଣିପାଖରେ ବସେଇ ପଞ୍ଚାୟତର ଗପ କହିଲାଭଳି ସେ ଘୁଣିପାଖରେ ଠୁଳ ହୋଇଥିବା ଶ୍ରେଷ୍ଠ ଓ ବଡ଼ମାନଙ୍କୁ କହୁଥିଲା—ଏଇ ମନ୍ଦର

ପର୍ବତ ନିପଟ ଜଙ୍ଗଲ ଥିଲା । ଶାଳ, ପିଆଶାଳ, କେନ୍ଦୁ, ଖଇର ପ୍ରଭୃତି କିସମ କିସମର ବଡ଼ ବଡ଼ ଗଛମାନଙ୍କର ଶାଖା ପ୍ରଶାଖା ଯୋଗେ ଦିନର ଆଲୁଅ ପଡ଼ୁ ନ ଥିଲା ଭୂଇଁ ଉପରେ । ନାନା ଜାତିର ଲତା କୁଞ୍ଜ ରଚନା କରିଥିଲେ ଠାଏ ଠାଏ । ମଝିରେ ମଝିରେ ପାଞ୍ଚ ସାତଟା ବଡ଼ ବଡ଼ ଢିମା ପଥର ପରସ୍ପର ଉପରେ ଲଦାଲଦି ହୋଇ ଗୋଟିଏ ଗୋଟିଏ ସୁନ୍ଦର ଚକ୍‌ଣ ରହିବା ଘର ରଚନା କରିଥିଲେ । ଆଉ ସେହି ଗୁମ୍ଫା ଭଳି ଘର ଭିତରେ ରହୁଥିଲେ କିଏ ଜାଣ ?

ପିଲାମାନେ ଆଗ୍ରହରେ ପଚାରି ଦଉଥିଲେ—କିଏ.... କିଏ ରହୁଥିଲା ?

ବାଘମାମୁଁ, ଭାଲୁ ମଉସା, ଗଧିଆ କକା । ସମସ୍ତେ ଅବାକ୍ ହୋଇ ଯାଇ ଅନେଇଥିଲେ ମନ୍ଦରା ପର୍ବତ ଆଡ଼କୁ ।

ଯଶପୁର ଗାଆଁର ତିନି ମାଇଲ ଦୂରରେ ଯେଉଁ ଶ୍ରେଣ୍ଟ ବଡ଼ ହୋଇ ଗୁଡ଼ାଏ ପାହାଡ଼ ଅଛି ସେମାନଙ୍କ ମଧ୍ୟରୁ ଅପେକ୍ଷାକୃତ ବଡ଼ ପର୍ବତର ନାମ ମନ୍ଦରା । ପର୍ବତଶ୍ରେଣୀ ପରି ଶ୍ରେଣ୍ଟବଦ୍ଧ ଏଇ ପାହାଡ଼ମାନଙ୍କର ସମାବେଶ ଲମ୍ବି ଯାଇଥିଲା ଅନେକ ଦୂର । ଆଖି ପାଏ ନାହିଁ । ପର୍ବତପରେ ପର୍ବତ—ତା'ପରେ ପର୍ବତ ।

ଦୂର ପର୍ବତ ଦେଖିବାକୁ ସୁନ୍ଦର । ଗାଆଁ ମୁଣ୍ଡରେ ଛିଡ଼ାହୋଇ ପର୍ବତଆଡ଼କୁ ଚାହୁଁଥିଲେ ଲୋକମାନେ । ପିଲା ଅଝଟ ହେଲେ ମାଆ କହୁଥିଲା ଏଇ ମନ୍ଦରା ପର୍ବତର ବ୍ରହ୍ମରାକ୍ଷସ କଥା ଶୁଣୁଶୁଣୁ ଭାତଗୁଣ୍ଡେ ଖାଇଦେ ।

ନରୋତ୍ତମ ଦାସ ସମସ୍ତଙ୍କୁ ଦୋଳା ବେଦୀ ଉପରେ ବସେଇଦେଇ କହୁଥିଲା—ବ୍ରହ୍ମରାକ୍ଷସ କଥାଟା କିଛି ମନଗଢା କଥା ନୁହେଁ, ସତ ।

ସେତେବେଳେ ମୁଁ ପିଲା ଥିଲି, ବୟସ ସାତ କି ଆଠ ହବ । ଦିନେ ସାଙ୍ଗମାନଙ୍କ ସହିତ ଖେଳୁ ଖେଳୁ ମୁହଁ ସଞ୍ଜ ହୋଇଗଲା । ଘରକୁ ଫେରିଲା ବେଳକୁ ବୁଢୀମା ତୁଳସୀ ଚଉରା ମୂଳେ ସଞ୍ଜବତୀ ଦଉଥିଲା । ମୋତେ ଦେଖିପକେଇ ବାହୁନି ଉଠି କହିଲା —ଆଲୋ ମୋ ସୁନାଲୋ, ଆଲୋ ମୋ ସୁନା ଫେରି ଆସିଛୁ ଲୋ ।

ମୁ ଅବାକ୍ ହୋଇଯାଇ ତା' ମୁହଁକୁ ଅନେଇଛି ସେ ମୋତେ ଏକା ଝପଟରେ ତା' କୋଳରେ ଜାବୁଡ଼ି ଧରିଲା । ଯେମିତି ତା'ର ଶୀର୍ଣ୍ଣତନକୁ ଘୋଡେଇ ଦେଇଥିବା ଅଞ୍ଚଳ ଭିତରେ ଲୁଚେଇ ରଖିବ ମୋତେ ।

ମୁଁ କହିଲି—କ'ଣ ହେଲା ବୁଢୀମା ?

ସେ ମୋତେ ଆହୁରି ନିବିଡ଼ ଭାବରେ ଗ୍ରୁଡ ତଲେ ଜାକିଧରି କହିଲା ଏଇ ତୁଳସୀ ମୂଳେ ଦୀପ ଜାଳିବା ସାର୍ଥକ ହୋଇଛି । ମୋ ଗୁହାରି ଶୁଣିଛନ୍ତି ବୃନ୍ଦାବତୀ । ସବ ଶୁଭରେ ଫେରି ଅସିଛୁ ତୁ ।

ମୁଁ ତ ଖେଳୁଥିଲି ସାଙ୍ଗମାନଙ୍କ ସାଥିରେ । ଆଜି ଆମର ଜସ୍ତ ହେଲା । ଚୁନା, ଚହଲର ଦଳ ହାରିଗଲେ ।

ସେ କହିଲା—ତୁ ବକଟେ ପିଲା, ସବୁକଥା କହିଲେ ଭାରି ପାହିସିବ । ଏତିକି ଜାଣିରଖ ଯେ ସେଇ ମନ୍ଦରା ପର୍ବତ ଆଡ଼କୁ ଆଉ କେବେ ଯିବୁ ନାହିଁ । ସେଇଠି ଗୋଟିଏ ଦୁଷ୍ଟ ବ୍ରହ୍ମରାକ୍ଷସ ଅଛି । ଲୋକମାନେ ସ୍ବଲାକ୍ ହୋଇ ଗଲେଣି, ଜଙ୍ଗଲକୁ କେହି ଯାଉନାହାନ୍ତି । ସେ ହାଉଁ ହାଉଁ ହଉଛି ଷ୍ଟେକରେ । ମଣିଷ ମାଉଁସର ସୁଆଦ ବାଘ ବଳୁଥିରେ ନାହିଁ । ପନ୍ଦର ଦିନ ଭିତରେ ତିନୋଟିନଟା ମଣିଷକୁ ଖାଇଗଲାଣି । ଭକତ ମୁହାଁ ରାକ୍ଷସ ହାବୁଡ଼ରେ ପଡ଼ିଗଲେ କଥା ସରିଲା.... ମୋ ସୁନା, ମୋ କହ୍ନେଇ— ମୋ ରାଣ ଆଉ ଯିବୁନ ।

ସମସ୍ତେ ଉତ୍ସୁକ ହେଲେ ଆହୁରି ଜାଣିବାପାଇଁ ।

ଏକା ସ୍ବରରେ ପ୍ରାସ୍ତ ପଚାରି ଦେଲେ—ବ୍ରହ୍ମରାକ୍ଷସ ? ସେ ପୁଣି କି ଜନ୍ତୁ ?

ହିଁ, ହିଁ, ବ୍ରହ୍ମରାକ୍ଷସ । ସେଇଦିନୁ ମୁଁ ଆଉ ସଂଧ୍ୟା ହେଲେ ବାହାରେ ରହିଲି ନାହିଁ ।

ତୁମେ କେବେ ଦେଖିଥିଲ ? ଜଣେ ଅଧିକ ଜାଣିବାପାଇଁ ପୁଚ୍ଛୁଥିଲା ।

ନରୋତ୍ତମ ସେହି ପିଲାର ଆଗ୍ରହୀ ଆଖି ଯୋଡ଼ିକ ଉପରେ ଦୃଷ୍ଟି ନିବଦ୍ଧ କରି କହିଲା—ହିଁ, ଦେଖିଛି । ଦେଖିବାକୁ ଦଶଟା ଭାଲୁପରି, ଦାନ୍ତଗୁଡାକ ମୁନିଆ ଢିମା ପଥର ପରି, ଆଖି ଯୋଡ଼ିକ ଯିମିତି ଦୁଇଟା ଜଳନ୍ତା ନିଆଁହୁଲା, ହାତ ଗଛର ଡାଳ ପରି ଲମ୍ବ, ନଖ ତରଓ୍ବାଲ ପରି ଧାରୁଆ । କିନ୍ତୁ ବ୍ରହ୍ମରାକ୍ଷସ ଗୋଟିଏ ଜନ୍ତୁ ନୁହେଁ ।

ଚମକି ପଡ଼ିଲେ ପିଲାମାନେ ।

ସେ କହିଲା—ଆଉ ଡରି ଲାଭ ନାହିଁରେ ପିଲେ । ଆଉ ସିଏ ନାହିଁ, ସବୁ ସରିଯାଇଛି ।

କାହିଁକି ?

କିଏ ରହିବ ? ଘର ଅଛି ବୋଲି ସିନା ତୁମେ ସବୁ ରହୁଛ । ଘର ନଥିଲେ କେଉଁଠି ରହନ୍ତ । ସଲେଇ ଯାଅନ୍ତ ଗାଆଁ ଛାଡ଼ି । ସେମିତି ଗଛଲତା ସବୁ କାଟି

ସଫାକରିଦେଲେ । ଖୋଲା ପଡ଼ିଆରେ ତ ସେମାନେ ରହନ୍ତେ ନାହିଁ । ପଳେଇଲେ । ବାଘମାମୁଁ, ଭାଲୁମଉସା, ଗଧିଆ କକା, ବ୍ରହ୍ମରାକ୍ଷସ– ସମସ୍ତେ ପଳେଇଲେ ।

ଆଉ ଆସିବେ ନ......? ପଚ୍ଚରିଦେଲା ଜଣେ ।

କୌତୁହଳରେ ଝଲସି ଉଠୁଥିବା ମୁହଁରେ ଗୋଟିଏ ତୃପ୍ତାଦେଇ କହିଲା ନରୋତ୍ତମ—ଆସିବେ, ଆସିବେ ; ତେବେ ଗୋଟେ ସର୍ତ୍ତରେ ।

ଆମେ ମାନିବା ।

ମାନିବା ସହଜ ନୁହେଁ । କିନ୍ତୁ ଚେଷ୍ଟାକଲେ ଅସାଧ କିଛି ନାହିଁ ଜଗତରେ । ତୁମେ ସବୁ ଚେଷ୍ଟାକର, ପାରିବ । ମନ୍ଦାର ପର୍ବତ ଗଛଲତାରେ ପୁଣି ଆଉଥରେ ଭର୍ତ୍ତି ହୋଇଗଲେ ରହିବାର ସ୍ଥାନହେବ, ସେମାନେ ପୁଣି ଲେଉଟି ଆସିବେ ।

ପାଖରେ ବୟସ୍କ ଦୁଇଚାରିଜଣ ବସିଥିଲେ । ସେମାନେ ହସି ଉଠିଲେ ହି ହି କରି ।

ନରୋତ୍ତମ କିନ୍ତୁ ଦବି ନଯାଇ କହିଲା—ତୁମ ହସକୁ ମୁଁ ପଚ୍ଚୁଆ କରୁନି ।

ପିଲାମାନେ କହିଲେ—କିନ୍ତୁ ଯଦି ଜଙ୍ଗଲ ନହୁଏ ।

ନରୋତ୍ତମ ଦାସ ଅସ୍ଥିର ଦୃଷ୍ଟିରେ ଅକଳନ୍ତି ହତାଶ ଏବଂ କଣ୍ଠରେ ବେଦନା ଝରାଇ କହିଲା—ଜଙ୍ଗଲ ନଥିଲେ କେବଳ ବାଘମାମୁଁ, ଭାଲୁମଉସା ଓ ବ୍ରହ୍ମରାକ୍ଷସ ଯେ ଆସିବେ ନାହିଁ ତାହା ନୁହେଁ, ଏଇ ଗାଁ ବି ଦିନେ ନଷ୍ଟ ହୋଇଯିବ । ବରଷା ହବନାହିଁ—ମାଟି କ୍ଷୟହୋଇ ଏଇ ଉର୍ବର ଜମିଗୁଡ଼ା ମରୁଭୂମି ପାଲଟିଯିବ, ଦାନ୍ତ ଘସିବାପାଇଁ କାଠିଖଣ୍ଡେ ମିଳିବ ନାହିଁ । ପରସିବାପାଇଁ ପତର ଦୁଇଟା ମିଳିବ ନାହିଁ ।

ଜୋରରେ ହସି ଉଠିଲେ ବୟସ୍କମାନେ । ପିଲାମାନେ ଦବିଗଲେ ସେପରି ।

ନରୋତ୍ତମ ଦାସ ରାଗିଯାଇ କହିଲା; ମୋ କଥା କାନକୁ ଖରାପ ଲାଗୁଛି । ଭଲ କଥା—କାନକୁ ଭଲ ଲାଗେନ ପୁଅ । ଦିନ ଆସିବ ନରୋତ୍ତମ ଦାସର ସାନକୁହା ମନେ-ପକାଇବ । ମୋର କିନ୍ତୁ ବଡ଼ ଦୁଃଖ ! ମୁଁ ସେତେବେଳକୁ ଆଉ ନଥିବି ତୁମ ଦୁଃଖରୁ ଭାଗ ବଣ୍ଟେଇବାପାଇଁ । ମଣିଷ ତ ଏକା ବଂଚେ ନାହିଁ । ସୁଖ ଦୁଃଖ ସମାନଭାବରେ ବାଣ୍ଟିକୁଣ୍ଟି ନେଲେ ସେ ବଡ଼ ହୁଏ । ବାଘ, ଭାଲୁ, ମିରିଗ, ମୟୂର ରହିଲେ ଯାଇ ବଣ ସୁନ୍ଦର ଦିଶେ । ବେଶୀ ବରଷା ହେଲେ ଧାନ ଭଲହୁଏ । ବଣରେ ଫୁଲ ଫୁଟିଲେ ପବନ ପବିତ୍ର ହୁଏ । ଗଛ ଲତାର ଚେର ମୂଳ ଔଷଧ ହୁଏ ।

ନରୋତ୍ତମ ଦାସର ଏଇ କଥାଗୁଡ଼ା ଯିଏ ଶୁଣିଲା ସିଏ କହିଲା—ଅହାରେ ! ନରୋତ୍ତମଟା ପାଗଳ ହୋଇଗଲାରେ ! ଏତେ କମ୍ ବୟସରେ ଭଗବାନ୍ ତା' ସଂସାରଟି ଉଜୁଡ଼ା କରିଦେଲେ ରେ ।

ନରୋତ୍ତମ ଦାସ ଏଇଭଳି ଶୁଣି ଶୁଣି ଦିନେ ସମସ୍ତଙ୍କ ଅଗୋଚରରେ ଅନ୍ତର୍ଦ୍ଧାନ ହୋଇଗଲା ଗାଆଁରୁ । କେହି ଜାଣିଲେ ନାହିଁ, ତା' ସମ୍ପର୍କରେ ଆଉ କେହି ଶୁଣିଲେ ନାହିଁ ।

ନରୋତ୍ତମ ଦାସର କଥା ବ୍ରହ୍ମରାକ୍ଷସର କଥା ପରି ଗାଆଁର କାହାଣୀ ହୋଇଗଲା ।

ମନ୍ଦାର ପର୍ବତର ମାଟି, ଗୋଡ଼, ପଥରର ଟାଣ୍ଡିଆ ଦେହ ସ୍ଵାସ୍ଥ୍ୟହୀନ ହାଡ଼ୁଆ ମଣିଷପରି ଶ୍ରୀହୀନ । ଦଶ ପନ୍ଦର ବର୍ଷ ତଳେ ସେହି ପର୍ବତର ଗୁମ୍ଫାଦ୍ୱାରରେ ବନଖଣ୍ଡମାନଙ୍କର ବୈଠକ ବସୁଥିଲା, ସେମାନେ ମଣିଷର ଜୀବନକୁ ସମୃଦ୍ଧ ଓ ସୁଖୀ କରିବାପାଇଁ ଆଲୋଚନା କରୁଥିଲେ ଏବଂ ଅକୁଣ୍ଠିତ ଓ ଅମ୍ଳାନ ବଦନରେ ସହାୟତା କରୁଥିଲେ । କିନ୍ତୁ ମଣିଷ ଏତେ ସ୍ୱାର୍ଥପର ବୋଲି ସେମାନେ ଯଦି ଜାଣି ଥାଆନ୍ତେ ! ପୂର୍ବଦୃଷ୍ଟି ଥିଲେ କେବଳ ବର୍ତ୍ତମାନ ନୁହେଁ ଅତୀତ ଓ ଭବିଷ୍ୟତର ମୂଲ୍ୟାଙ୍କନ କରିବା ସହଜ ହୁଏ । ଯେଉଁଠାରେ ଏହି ପୂର୍ବଦୃଷ୍ଟିକୁ ସାମୟିକ ଉତ୍ତେଜନା ବା ଉଲ୍ଲାସପାଇଁ ବଳିଦିଆ ଯାଇଛି ସେଠାରେ ସବୁ ଶ୍ରୀହୀନ ହୋଇଯାଇଛି ।

ମନ୍ଦାର ପର୍ବତର ଶିଖର ଦେଶରେ ସମତଳ ଭୂମି ଉପରେ ବସିପଡ଼ି ସେ ପ୍ରଥମେ କାନ୍ଦିଲା ଏବଂ ପରେ ପରେ ସେଥିରୁ ମାଟି ମୁଠିଏ ଟେକି ନେଇ ମୁଣ୍ଡରେ ଛୁଆଁଇଲା । ଗ୍ରେଟ ଗ୍ରେଟ ଗୁଳ୍ମ ଏବଂ ଅନ୍ୟାନ୍ୟ କେତେକ ତରୁଜନ୍ମା କ୍ଷୁଦ୍ର ବୃକ୍ଷଲତା । ସବୁରି ପାଖକୁ ଯାଇ ସେ ଅବୋଧ ଭାଷାରେ କଅଣ ସବୁ ଗୁଣୁଗୁଣୁ ହୋଇ କହିଲା ।

ତିନିଜଣ ଗ୍ରାମବାସୀ ଗୋରୁ ଏବଂ ଛେଳି ନେଇ ଉପରକୁ ଉଠୁଥିଲେ । ଯେ ସେମାନଙ୍କୁ ଉପରୁ ଦେଖିପାରି ନିମିଷକ ମଧ୍ୟରେ ନିଜର ଅପରିବର୍ତ୍ତନୀୟ ସିଦ୍ଧାନ୍ତରେ ଉପନୀତ ହେଲା ।

ପ୍ରଥମେ ଖୁବ୍ ଜୋରରେ ବିକଟାଳ ଚିତ୍କାର କରି କହିଲା—ଖବରଦାର ! ଆଉ ଉପରକୁ ଉଠ ନାହିଁ । ଏ ତୁମର ରାଜ୍ୟ ନୁହେଁ । ଅଉ ଆସିବା ପାଇଁ ସାହାସ ନ କରି ଫେରିଯାଅ । ଫେରିଯାଅ ।

ହସି ଉଠିଲେ ଉନଜଣ ।

ପାଗଳର କଥାରେ ସେମାନେ ଫେରିଯିବେ ?

ସେ ରାଗିଯାଇ କହିଲା ରୂପଚନ୍ଦ୍ର— ହୁସିଆର ! ଆଉ ପାହୁଣ୍ଡେ ଆଗକୁ ଆସିଲେ ନିଶ୍ଚିତ ଭାବରେ ମୃତ୍ୟୁ ବରଣ କରିବ ।

ସେମାନେ ପରସ୍ପରରେ ଘୋଷଣା କଲେ—ଖବରଦାର, ଶ୍ରେଷ୍ଠ ମୁହୂର୍ତ୍ତରେ ବଡ଼କଥା ଆଉ କହନା । ଏ ଜଙ୍ଗଲ ଆମର, ଏ ପର୍ବତ ଆମର । ଆମେ ଏହାର ଭୋକ୍ତା ।

ଅଗ୍ରସର ହେଲେ ଉନଜଣ ।

ରୂପଚନ୍ଦ୍ର ରଣ ହୁଙ୍କାର ସହିତ ଗଡ଼ାଇଦେଲା ଉନନ୍ଧରଶହ ବଡ ବଡ ଚିମା ପଥର । ଗୋଟିଏ ପଥର ପ୍ରବଳ ବେଗରେ ଗଡ଼ି ଆସି ବାଜିଲା ଜଣକ ଦେହରେ । ଲକ୍ଷ୍ୟ ଅବ୍ୟର୍ଥ । ଟଳି ପଡ଼ିଲା ଜଣେ ଏବଂ ସେ ଆହୁରି ଜୋରରେ ଚିମା ପଥର ଫିଙ୍ଗିଲା ରୂପଚନ୍ଦ୍ର । ଆଉ ଦୁଇ ଜଣ ଆଉ ଅଗ୍ରସର ହବା ଆଗରୁ ସାଂଘାତିକ ଭାବରେ ଆହତ ହେଲେ ।

ସେ ଜିଦାଜିଦ ହସରେ ଭସାଇ ଦେଲା ପର୍ବତର ନୁଆଁଣିଆ ତଳ ଦେଶକୁ ।

ହାଃ . . . . . . ହାଃ . . . . . . . . . ହାଃ . . . . . . . . .

ସମଗ୍ର ପର୍ବତ ଦେହରେ ସେଇ ସ୍ୱରବାଜ ପ୍ରତିଧ୍ୱନିତ ହେଲା ହାଃ . . . . . ହାଃ . . . . . ହାଃ . . . . . .

ସେ ଖୁସି ହୋଇ ଦୁଇ ଉନଥର ନାଚିଲା ଉପରକୁ ହାତଟେକି ଏବଂ ବିଜୟୀ ବୀର ପରି ତାପରେ ଗୋଟେ ଶୁଖିଲା ଡାଳରେ ଖଣ୍ଡେ ଲାଲ ପତାକା ଗୁଡ଼େଇ ଦେଇ ପୋତି ଦେଲା ଶୀର୍ଷ ଦେଶରେ ।

ସେହିଦିନୁ ପର୍ବତ ଉପରକୁ ଉଠିବା ପାଇଁ ଆଉ କେହି ଆସିଲେ ନାହିଁ । ଗୋରୁ, ଲୋକମାନେ ମଧ୍ୟ ପର୍ବତର ପାଦଦେଶରୁ ଅଧିକ ଉପରକୁ ଉଠିଲେ ନାହିଁ । ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା ଶୁଣାଗଲା । ନରୋତ୍ତମ ଦାସ ବ୍ରାହ୍ମଣ ହୋଇକି ବ୍ରତ ଓ ବନ୍ଧୁ ନ ହୋଇ ମରିଗଲା ବୋଲି ବ୍ରହ୍ମରାକ୍ଷସ ହୋଇ ବସିଛି ଯାଇଛି ମନ୍ଦର ପର୍ବତ ଉପରେ । ସେ ପର୍ବତର ଅଧିପତି, ଆଉ କାହାର ଅଧିକାରକୁ ସ୍ୱୀକାର କରିବ ନାହିଁ । ଦିନ ରାତି ଚବିଶ ଘଣ୍ଟା ସେଇ ବ୍ରହ୍ମରାକ୍ଷସର ଭୟରେ ଆଉ କେହି ସେ ଆଡ଼କୁ ଭୟରେ ଅନାଇଲେ ନାହିଁ ।

ନରୋତ୍ତମ ଦାସ କିନ୍ତୁ ବହୁ କଷ୍ଟରେ ଯାଇ ପର୍ବତ ଉପରେ ଗୋଟିଏ ଗୁମ୍ଫା ଭିତରେ ନିଜର ଆସନ ପାତିଲା, ଗୋଟିଏ ଶୁଖିଲା ଡାଳରେ ଲାଲ କନା ଖଣ୍ଡେ ଗୁଡ଼େଇ ଦେଇ ପୋତିଦେଲା ମାଟିରେ ଏବଂ ତା'ପରେ ପାଣିର ସନ୍ଧାନ କରି ଫେରି ଆସି ବସିଲା ସେହି ଆସନରେ ।

ବର୍ଷାଦିନ ପ୍ରାୟ ସମାଗତ । ନରୋତ୍ତମ ଆକାଶକୁ ଚାହିଁଲା, ଖଣ୍ଡ ଖଣ୍ଡ କଳାମେଘ ମେଣ୍ଡ ବାନ୍ଧିଥିବାର ଲକ୍ଷ୍ୟ କଲା ଏବଂ ଗୋଟେ ମୁନିଆ ପଥର ଓ ସଙ୍ଗରେ ନେଇଥିବା ନିଜର ମୁନିଆ ଲୁହାଖଣ୍ଡକରେ ଗାତ ଖୋଳିବା ପାଇଁ ଲାଗିଗଲା । ରାତି ହେବା ପରେ ସେଇ ପର୍ବତର ଗୋଟେ ପଥର ଉପରେ ଆଉ ଗୋଟେ ପଥରର ସଂଘର୍ଷ କରି ସେ ଝକମକ ପରି ନିଆଁ ବାହାର କଲା ଏବଂ ନିଆଁ ଜାଳି ଦେଇ ନାଚ ନାଚ ଗୀତ ଗାଇଲା ।

ମନ୍ଦର ପର୍ବତର ପାଞ୍ଚ ମାଇଲ ଦୂରରେ ଜଣପୁର ଗାଆଁର ମାଆ, ଗୋସେଇମାମାନେ ପିଲାମାନଙ୍କୁ କୋଳ ଉପରକୁ ଅଭସ୍ତ ଦବାପାଇଁ ଆଉଜାଇ ଅଣି ଇଷ୍ଟମନ୍ତ୍ର ସ୍ମରଣ କରି କହିଲେ— ସେ ଆଡ଼କୁ ଆଉ ଚାହାଁନା ବାପ ! ବ୍ରହ୍ମରାକ୍ଷସ ନିଆଁ ଜାଳିଛି, ମଣିଷ ମାଉଁସ ରାନ୍ଧିବା ପାଇଁ । ନରମ ମାଉଁସକୁ ଲୋଭ ବେଶୀ । ଶୋଇପଡ଼, ଶୋଇ ପଡ଼ । ଷଷ୍ଠି ମାଆ ତୋତେ ଶହେ ଷାଠିଏ ପରମାୟୁ ଦିଅନ୍ତୁ ।

ପିଲାମାନେ ସେଇ ପର୍ବତର ଚୂଡ଼ା ଉପରେ ଜଳି ଉଠୁଥିବା ନିଆଁର ଶୋଷ ଦେଖୁ ଦେଖୁ ଭୟରେ ଶିହରି ଉଠି ଆଖି ବୁଜୁଥିଲେ ବ୍ରହ୍ମରାକ୍ଷସର କଥା ଶୁଣି ।

ଆଉ କେହି ପର୍ବତର ପାଦଦେଶକୁ ବି ଗଲେ ନାହିଁ ।

ନିର୍ଜନ ପର୍ବତର ଯେଉଁଠି ନରମ ମାଟି ପାଇଲା ସେଇଠାରେ ନରୋତ୍ତମ ପୋତି ଦେଲା ପ୍ରଥମ ବର୍ଷାରେ ଅଙ୍କୁରି ଉଠିଥିବା କଦମ୍ବ କଦମ୍ବର ଗଛ । ଶାଳ, ପିଆଶାଳ, କେନ୍ଦୁ, ଜାମୁ, ଖଇର, ଆମ୍ବ, ପଣସ, ଅଶୋକ . . . . । ପାଖ ଝରଣାରୁ ପାଣି ଆଣି ଢାଳିଲା ପ୍ରତ୍ୟେକ ଗଛ ମୂଳରେ । ତା'ପରେ ହାତ ତାଳି ଦେଇ ନାଚି ନାଚି ଗୀତ ଗାଇଲା—

ଯେତେ ବୃକ୍ଷ ବନସ୍ପତି ଯେତେ ବନଲତା
ଫଳ, ପୁଷ୍ପ, ପତ୍ର, ଶାଖା ଦିଅ ମୋତେ କଥା ।
ଊର୍ଦ୍ଧ୍ୱମୁଖୀ ହୋଇ ଏଇ ଆଲୋକେ ଆଲୋକେ
ଶୁକ୍ଳପକ୍ଷ ଚନ୍ଦ୍ର ପରି ବଢ଼ିବ ପୁଲକେ ।

ତା'ପରେ ସବୁଠାରୁ ଉଚ୍ଚ ପଥରଟା ଉପରେ ଛିଡ଼ା ହୋଇ ପର୍ବତର ଚତୁର୍ଦ୍ଦିଗକୁ ଭଲକରି ପର୍ଯ୍ୟବେକ୍ଷଣ କଲା ନରୋତ୍ତମ ! ଅନୁପ୍ରବେଶକାରୀ ତା'ର ଶତ୍ରୁ । ସେ ଗଛ ପତ୍ର ନଷ୍ଟ କରେ । ସେ ତାକୁ ପ୍ରବେଶ କରିବାକୁ ଦବ ନାହିଁ । ଏହା ନିଷିଦ୍ଧ ଅଞ୍ଚଳ । ଏଠାକୁ ସମସ୍ତଙ୍କର ପ୍ରବେଶ ନିଷେଧ । ବାଧା ଦେଲେ ଚରମ ଶାସ୍ତି ।

ପଶ୍ଚିମ ଦିଗର ପର୍ବତର ତଳଦେଶରେ କଏ ଗୋରୁ ଚରଉ ଥିବାର ଲକ୍ଷ୍ୟ କଲା ନରୋତ୍ତମ ।

ହୋ ! ହୋ ! ହୋ !

ଗୋଟିଏ ଶୁଖିଲା ଡାଳରେ ଗୁଡ଼ା ହୋଇଥିବା ଲାଲ କନାଟିକୁ ଉଡ଼ାଇ ଦେଲା ପୁଣି ପୁଣି ଥର ।

ତା'ପରେ ରଢ଼ ଛାଡ଼ିଲା ଫେରି ଯା.. ଶଳାର ସାହସ କମ୍ ନୁହେଁତ.... ଫେରିଯା.... । ଆଉ ପାଦେ ବଢ଼ିଲେ ଏଇ ଚିମ୍ନି ପଥର ଗଡ଼ାଇ ଦେବି ଶଳା ଉପରକୁ ।

ସେ ପୁଣି ବି ଚିମ୍ନି ପଥର ଗଡ଼େଇ ଦେଇଥିଲା ସେ । ନ ଗଡ଼େଇବ କାହିଁକି ? ଗଛଲତା ଯାହାଥିଲା ସବୁ ନିର୍ମୂଳ ହୋଇଗଲେ ଏଇ ପାଗଳ ମଣିଷର ଖାମଖିଆଲିଆ ଯୋଗୁଁ । ନିଜ ସ୍ୱାର୍ଥ ଯେଉଁମାନେ କେବଳ ଦେଖନ୍ତି ସେମାନଙ୍କ ଆଖିକୁ ଅନ୍ୟକିଛି ଦିଶେ ନାହିଁ । ନିଜ ଅଧିକାର ବା ଉପଭୋଗ ପାଇଁ କାମ କଲାବେଳେ ଆଉ କାହାର ଅଧିକାର ବା ଉପଭୋଗରେ ବାଧା ସୃଷ୍ଟି ହୋଇପାରେ ଏହା ସେମାନେ କଳ୍ପନା ମଧ୍ୟ କରିପାରନ୍ତି ନାହିଁ । ବଣ ଜଙ୍ଗଲ ଶେଷ ହୋଇଯିବାରୁ ଫଳ ମୂଳ ଫୁଲ ପତ୍ର ଅମିଳ ହୋଇଗଲା । ପୁରୁଣା ପତ୍ର ଗଛରୁ ନ ପଡିବାରୁ ଆଉ ମାଟିର ଶକ୍ତି ବୃଦ୍ଧି କଲା ନାହିଁ । ବର୍ଷାଧାର ଧୋଇ ନେଇଗଲା ବଣଜଙ୍ଗଲ ଓ ଜମିର ମାଟି ଅବାଧ ଗତିରେ । ମୃତ୍ତିକା କ୍ଷୟ ହୋଇ ଉର୍ବର ମାଟି ମରୁଭୂମି ପରି ନିଷ୍ଫଳ ହୋଇଗଲା । ବଣ ଜଙ୍ଗଲ ନ ଥିବାରୁ ବର୍ଷା କମିଗଲା ।

ନରୋତ୍ତମ ଆଶ୍ଚର୍ଯ୍ୟ ହୋଇ ଭାବିଲା ଏଇ ଶ୍ରେଷ୍ଠ କଥାଟି କେହି କେମିତି ବୁଝିଲେ ନାହିଁ ? କେହି କେମିତି ବୁଝିଲେ ନାହିଁ ?

ସେ କିନ୍ତୁ ସଂକଳ୍ପବଦ୍ଧ, ପୁଣି ମଧୁବନ ପର୍ବତକୁ ଫଳପୁଷ୍ପରେ ଭରାଇଦେବ । ବନସ୍ପତିମାନଙ୍କର ପୁଣି ବୈଠକ ବସିବ । ସଂସାରର ସମସ୍ତ ଦୂଷିତ ଅଙ୍ଗାରକାମ୍ଳ ଶୋଷିନେଇ ସେମାନେ ଶୁଦ୍ଧ ପବିତ୍ର ଅମ୍ଳଜାନ ମଣିଷକୁ ସୁସ୍ଥ, ସବଳ ଓ ଦୀର୍ଘଜୀବୀ କରିବାପାଇଁ ଦାନ କରିବେ । ଫଳ ପୁଷ୍ପ ଦେଇ ସେମାନଙ୍କୁ ଧନ୍ୟ କରିବେ ।

ଆଗରୁ ଲଗାଇଥିବା ଗଛମାନେ ଅନେକ ବଡ଼ ବଡ଼ ହୋଇ ଗଲେଣି । ପାଞ୍ଚ ବର୍ଷର ପିଲା ପରି ହୁ ହୁ ହୋଇ ବଢ଼ୁଛନ୍ତି ସେମାନେ ବଢିବାରେ କେବଳ ବୃକ୍ଷଲତାର ଆନନ୍ଦ ପ୍ରକଟିତ ହୁଏ ନାହିଁ । ନରୋତ୍ତମ ମଧ୍ୟ ଅନ୍ତର ଭିତରେ ଏକ ପୂର୍ଣ୍ଣତା ବୋଧ ଅନୁଭବ କରେ । ସେ ନିଜର ଦୁଃଖ, କଷ୍ଟ, ନିପୀଡ଼ନ ସବୁ ଭୁଲିଯାଏ ।

କିନ୍ତୁ ଅନ୍ୟମାନେ ସବୁ କଥା ଭୁଲନ୍ତି ନାହିଁ । ଗାଆଁରେ ପ୍ରଚାର ହୋଇ ଯାଇଥିଲା ନରୋତ୍ତମ ଦାସ ପାଗଳ ହୋଇ ପଳାଇ ଯାଇଛି । ହୁଏତ ମରିଯାଇଛି । ମଧୁବନ ପର୍ବତର ଦୁଷ୍ଟ ବ୍ରହ୍ମରାକ୍ଷସ ସେ ପାଗଳ ନରୋତ୍ତମ ବା ତାହାର ପ୍ରେତ ଏ କଥା କେବଳ ଗ୍ରାମବାସୀମାନେ କୁହନ୍ତି ନାହିଁ ପାଖ ଆଖ ଗ୍ରାମର ଲୋକେ ବି ସେହି କଥାରେ ବିଶ୍ୱାସ କରନ୍ତି । ଛୋଟ ଛୋଟ ପିଲାମାନେ ଭୟ ବିହ୍ୱଳ ହୋଇ ସେ ବ୍ରହ୍ମରାକ୍ଷସର ଭୟରେ ଦୁଧ ପିଅନ୍ତି, ଭାତ ଖାଆନ୍ତି ଏବଂ ଆଖି ବୁଜି ମାଆ ପାଖରେ ଶୋଇ ପଡ଼ନ୍ତି ।

ପାଞ୍ଚଜଣ ଲୋକ ଚିମ୍ନି ପଥର ମାଡ଼ରେ ଜଖମ ହୋଇଥିଲେ, ଜଣେ ତ ଯମାଳୟକୁ ଚାଲିଗଲା । ଯେଉଁଠାରେ ଗଛ ବା ଲତାଟିଏ ନ ଥିଲା ସେହି ମଧୁବନ ପର୍ବତ ଏବେ ସବୁଜ ଦିଶୁଛି । ବଢ଼ନ୍ତା ଗଛ ଲତାର ଶ୍ୟାମଳିମାରେ ଦୂରରୁ ଦୃଷ୍ଟି ଆକର୍ଷଣ କରୁଛି । ଶିଆଳର ଏକଛତ୍ର ସାମ୍ରାଜ୍ୟ ଦଖଲ କରି ନେଇଛନ୍ତି ହରିଣ ଏବଂ ହେଟାବାଘ ।

ଲାଲ ପତାକା ଏବେ ବି ପର୍ବତ ଉପରୁ ଦେଖାଯାଏ ।

ଅନେକ ଲୋକଙ୍କ ମୁହଁରେ ଅନେକ ପ୍ରକାର କାହାଣୀ ଶୁଣାଯାଏ । ନରୋତ୍ତମ ଦାସ ମରିଗଲା ପରେ ବ୍ରହ୍ମରାକ୍ଷସ ହୋଇ ରହିଯାଇଛି ମଧୁବନ ପର୍ବତ ଉପରେ । ପାହାଡ଼ ପର୍ବତକୁ ସେ ଅତି ଭଲ ପାଇଥିଲା ବୋଲି ତା'ର ଆତ୍ମା ମୁକ୍ତି ନ ପାଇ ବନ୍ଧନ ଭିତରେ ରହି ଯାଇଛି । ଜୀବଦଶାରେ ନରୋତ୍ତମ ଦାସର ଅନେକ ଅପୂର୍ଣ୍ଣ କାମନା ଓ ବାସନାକୁ ଚରିତାର୍ଥ କରିବାପାଇଁ ଲୋକମାନଙ୍କୁ ଦେଖିଲେ ଉତ୍ପାତ ଏବଂ ଉତ୍ପୀଡ଼ନ କରେ ସେ ।

କେହି କେହି କୁହନ୍ତି—ବ୍ରହ୍ମରାକ୍ଷସକୁ ସେମାନେ ଦେଖିଛନ୍ତି ମୁହଁରେ ଦାଢ଼ିନିଶ ଲମ୍ବା ଲମ୍ବା ନିଖୁରିବାଳ ଲମ୍ବି ଯାଇଛି ମୁଣ୍ଡରୁ । ଦାନ୍ତଗୁଡ଼ା ବଡ଼ ବଡ଼ । ନଖ ଆହୁରି ଲମ୍ବା ଦେହରେ ମୁହଁରେ ଦୁର୍ଗନ୍ଧ......

ସମସ୍ତେ ବିଶ୍ୱାସ କରନ୍ତି, ଭୟ ବିହ୍ୱଳ ହୋଇ ସେଇ ପର୍ବତ ଆଡ଼କୁ ଅନାନ୍ତି । ପାଖକୁ ଯାଆନ୍ତି ନାହିଁ ।

ପର୍ବତ ଉପରୁ ଦିନେ ଦିନେ ରାତିରେ କଏ ରଢ଼ ଛାଡ଼େ । ମଣିଷର ସ୍ୱର ପରି ଶୁଣାଗଲେ ବି ଡରରେ କେହି ସଦାକୁ ବାହାରନ୍ତି ନାହିଁ ଦେଖିବାପାଇଁ । ବ୍ରହ୍ମରାକ୍ଷସର ରଣ କୁହାଟ, କଏ ଜାଣେ କାହାର ଆୟୁ ଦିନେ ଶେଷ ହୋଇଯିବ ତା' ହାବୁଡ଼ରେ ପଡ଼ିଲେ ।

ଜିଲ୍ଲାପାଳ ଖବର ପାଇ ଆଶ୍ଚର୍ଯ୍ୟ ହୋଇଗଲେ ।

ଏ ଯୁଗର ଲୋକ ବି ପ୍ରେତ ଓ ରାକ୍ଷସରେ ବିଶ୍ୱାସ କରନ୍ତି । ଘରଆଡ଼େ ଆତଙ୍କ ଖେଳିଯାଇଛି ଏଇ ଗୋଟିଏ

କଥାକୁ ନେଇ । ମନ୍ଦର ପର୍ବତର ନରେଶ୍ବର ବ୍ରହ୍ମରାକ୍ଷସ ସହଜ ଭୂତ ପ୍ରେତ ନୁହେଁ, ଜୀଅନ୍ତା ମଣିଷକୁ ଗିଳ ପକେଇବ ।

ସଣପୁର ଗ୍ରାମରେ ଦଣ୍ଟା ବେଳକୁ ଭିଡ଼ ଜମିଗଲା ।

ଜିଲ୍ଲାପାଳ ଆସିଛନ୍ତି ମନ୍ଦର ପର୍ବତ ଉପରକୁ ଯିବାପାଇଁ । ସାଙ୍ଗରେ ଗ୍ରାମରକ୍ଷୀ, ସିପାହି, ପିଅନ୍, ବରକନ୍ଦାଜ । ଅନେକ ଗ୍ରାମବାସୀ ଠୁଳ ହୋଇଗଲେ ଖବର ଶୁଣି । ସେମାନଙ୍କ ମଧ୍ୟରେ ଆତଙ୍କର ଛାଇ, କାଳେ ଅମଙ୍ଗଳ ହବ ଗ୍ରାମର । ବ୍ରହ୍ମରାକ୍ଷସର ଅନିଷ୍ଟ କଲେ ଅସନ୍ତୁଷ୍ଟ ଅତୃପ୍ତ ଆତ୍ମା ଆସ୍ଥାନ ଜମେଇ ବସିଛି ପର୍ବତ ଉପରେ । ଶାସ୍ତ୍ରମତେ ତାକୁ ତୃପ୍ତ କରାଯାଇପାରେ । କିନ୍ତୁ ଜିଲ୍ଲାପାଳ ସେମାନଙ୍କ କଥା ହସରେ ଉଡ଼ାଇ ଦେଲେ । ଅନେକ ଭୟରେ ରହିଗଲେ ବି ଅନେକ ସାହାସପାଇ ତାଙ୍କ ସଙ୍ଗରେ ପର୍ବତ ଉପରକୁ ଉଠିବାପାଇଁ ଅଗ୍ରସର ହେଲେ ।

ପଧାନେ କହିଲେ—ହଜୁର ଆଉ ଡନ୍ଦଦନ ଆଗରୁ ଆସିଥିଲେ ଦେଖିଥାଆନ୍ତେ....ରାତିରେ ସେହି ବିକଟ ଶବ୍ଦ ଶୁଣି ଥାଆନ୍ତେ । ଏଇ ଡନ୍ଦଦନ ହେଲା ସବୁ ଚୁପ୍ ଚାପ.. ଯେମିତି ପର୍ବତଟା ଶୋଇ ପଡ଼ିଛି କୁମ୍ଭକର୍ଣ୍ଣ ନିଦରେ ।

ଆକୃଷ୍ଟ ହୋଇ ପଚାରିଲେ ଜିଲ୍ଲାପାଳ—ଡନ୍ଦଦନ ହେଲା କିଛି ଶୁଣା ଯାଉନି ? ଦେଖା ଯାଉନି ?

ହଁ, ହଜୁର, ଡନ୍ଦଦନ ହେଲା । ଲାଲ ପତାକା ଏବେବି ଉଡୁଛି କିନ୍ତୁ ରାତିରେ ଆଉ ସେଇ ବିକଳ ବିକଟାଳ ରଡ଼ି ଭାସି ଆସୁନାହିଁ ।

ଜିଲ୍ଲାପାଳଙ୍କୁ ପଥ କଢ଼େଇ ନେଇ ଯାଉଥିଲେ ଗ୍ରାମରକ୍ଷୀମାନେ ।

ପର୍ବତର ପାଦଦେଶରେ ଗ୍ରାମବାସୀମାନେ ମୁହୂର୍ତ୍ତେ ଛିଡ଼ା ହୋଇଯାଇ ମାଟି ଛୁଇଁ ପ୍ରଣାମ କଲେ ।

କିଏ ଜାଣେ ବୃକ୍ଷ ଶରୀରରେ ଅଶରୀରୀ ଅତୃପ୍ତ ଆତ୍ମା କିଅଣ କରେ । ଭୂତ, ପ୍ରେତ, ରାକ୍ଷସ ସମସ୍ତଙ୍କର ଗୋଟାଏ ନିଆରା ଅଛି । ବୃକ୍ଷ ଶରୀରରେ ଏକ ସଂସାର ଭିତରେ ଅବସ୍ଥିତ ହୁଅନ୍ତି ସେମାନେ । ମଣିଷର ମଙ୍ଗଳ ଅପେକ୍ଷା ଅମଙ୍ଗଳ କରନ୍ତି ସେମାନେ ବେଶୀ । ଅତୃପ୍ତ, ଅଶାନ୍ତ ଆତ୍ମା ତ ! ସୁଖୀ, ସୁସ୍ଥ ମଣିଷକୁ ସହ୍ୟ କରିପାରନ୍ତି ନାହିଁ ।

ଜିଲ୍ଲାପାଳ କହିଲେ—ଏ ସବୁ ଗୁଜବ ପଧାନେ । ସତ କଥାଟା ଏବେ ଜଣା ପଡ଼ିଯିବ । ମୋର ଦୁଃଖ ପାଞ୍ଚ ବରଷ ହେଲା କାହିଁକି କେହିଆସିଲେ ନି କଥାଟାକୁ ପରଖି ଯିବାପାଇଁ ।

ହଜୁରଙ୍କର ମଙ୍ଗଳ ହଉ, ବିମଳା ଭଲରେ ରଖନ୍ତୁ ହଜୁରଙ୍କ । ଆମେ ସାଧାରଣ ଲୋକ, ଭୂତ, ପ୍ରେତ, ରାକ୍ଷସ ସହିତ ଲଢ଼ିବାପାଇଁ ଆମର ସାହସ ନାହିଁ ।

ସମସ୍ତେ ଏକ ମୁହାଁ ହୋଇ ଚାଲି ଥାଆନ୍ତି । ଜଣେ କହିଲା—ହଜୁର, ସେଇ ପାଖରେ ଗୋଟେ ଝରଣା ଅଛି । ଝରଣା ଚାରିପାଖରେ କଦଳୀ, ପିଜୁଳି, ଆମ୍ବ, ପଣସ, କରମଙ୍ଗା, ଜାମୁ, କେନ୍ଦୁ ଅନେକ ଅନେକ ଫଳ ଗଛ ।

ବ୍ରହ୍ମରାକ୍ଷସର ବି ଖାଦ୍ୟ ଲୋଡ଼ା ହୁଏ ପଧାନେ । ନଖାଇଲେ ସେ ବି ମରିଯାଏ । ହୋ ହୋ ହୋଇ ହସି ଉଠି କହିଲେ ଜିଲ୍ଲାପାଳ ।

ଗ୍ରାମରକ୍ଷୀମାନେ ଘୋଷଣା କଲେ: ଉପରକୁ ଆସିଗଲେ ହଜୁର !

ଜିଲ୍ଲାପାଳ ଆଗେଇ ଗଲେ ପ୍ରଥମ ଦେଖିବାପାଇଁ, ପର୍ବତର ଶିଖର ଦେଶରେ ଲୁଚି ରହିଥିବା ବ୍ରହ୍ମରାକ୍ଷସର ପ୍ରଥମ ସାକ୍ଷାତ ପାଇଁ ।

ଲାଲ ପତାକାଟା ପବନରେ ଫର ଫର ଉଡୁଥିଲା । ନିର୍ଜନ, ନିସ୍ତବ୍ଧ ମନ୍ଦର ପର୍ବତର ଶିଖର ପ୍ରଦେଶ ।

ଜିଲ୍ଲାପାଳଙ୍କ ଇଙ୍ଗିତ ପାଇ ଘୋଷଣା କଲା ଗ୍ରାମରକ୍ଷୀ—ଯିଏ ଯେଉଁଠି ଆତ୍ମ ଗୋପନ କରିଛ ବାହାରି ଆସି ଆତ୍ମସମର୍ପଣ କର....। ନ ହେଲେ ଅକ୍ଷିରୁଜା ଗୁଳି ଚାଲିବ ।

ଜିଲ୍ଲାପାଳ ଅପେକ୍ଷା ନ କରି କହିଲେ—ଏଇ ଗୁମ୍ଫା ଭିତରକୁ ମଣିଷ ଯିବାର ପଦଚିହ୍ନ ରହିଛି । ଦେଖ କିଏ ଅଛି ।

ଚାରି ଜଣ ବରକନ୍ଦାଜ୍ ବନ୍ଧୁକ ଧରି ଭିତରକୁ ପଶି ପୁଣି ଅତର୍କିରେ ବାହାରି ଆସିଲେ—ଖୁନ୍ ! ଗୋଟିଏ ଲାସ୍ ହଜୁର ।

ଆଶ୍ଚର୍ଯ୍ୟ ହୋଇଗଲେ ଜିଲ୍ଲାପାଳ ।

ସ୍ତବ୍ଧ ହୋଇଗଲେ ଆଉ ସମସ୍ତେ ।

ଜିଲ୍ଲାପାଳ ଭଲକରି ନିରୀକ୍ଷଣ କରି ଲାସ୍ ବାହାରକୁ ନେଇ ଆସିବ ପାଇଁ କହିଲେ ।

ଲମ୍ବା ଲମ୍ବା ନୁଖୁରା ଚୁଳ ମୁହଁ ଭର୍ତ୍ତି ଦାଢି, ବଡ଼ବଡ଼ ଦାନ୍ତ, ଲମ୍ବା ଲମ୍ବା ନଖ, ସମ୍ପୂର୍ଣ୍ଣ ଉଲଗ୍ନ ।

ବ୍ରହ୍ମରାକ୍ଷସ ।

ନା, ନା ଏ ଆମର ଗାଆଁର ନରେଶ୍ବର ଦାସ ହଜୁର ।

ଜିଲ୍ଲାପାଳଙ୍କୁ ଜଣେ ଦେଖାଇ ଦେଲା ପଥର ଉପରେ ଲେଖାଥିବା ଅଶଂକୁ । ଲେଖାଥିଲା ସେଥିରେ—“ଭଲ ମଣିଷ ହ ପାରିଲ ହୁଏ ଗୋଟିଏ ଆଦର୍ଶ ପାଇଁ । ବଣ ଜଙ୍ଗଲ ମଣିଷର ଶତ୍ରୁ ନୁହେଁ—ମିତ୍ର । ହିଂସ୍ରଜନ୍ତୁ-ମାନଙ୍କୁ ସୁଖୀ ଏବଂ ସମୃଦ୍ଧ କରିବାପାଇଁ ମୁଁ ପାଗଳ ହୋଇ ଏହି ବୃକ୍ଷ ଲତାର ଯତ୍ନ ନେଉଥିଲି । ସେମାନଙ୍କୁ ବଞ୍ଚାଇଲି ସିନା, ମୁଁ ନିଜେ ଆଉ ବଞ୍ଚିବାକୁ ଚାହୁଁନାହିଁ । ମୁଁ ବ୍ରହ୍ମରାକ୍ଷସ ନୁହେଁ, ମୁଁ ଅତି ନଗଣ୍ୟ ମଣିଷ, ସମାଜର ଦାସାନୁଦାସ, ନରୋତ୍ତମ ଦାସ” ।

ଜିଲ୍ଲାପାଳ ସ୍ତବ୍ଧ ହୋଇଗଲେ । ତା'ପରେ ମଥା ନତ କରି ଆଦେଶ ଦେଲେ—ଲାଷ୍ଟ ପୋଷ୍ଟର ବିଗୁଲ ବଜାଇ ସ୍ୟାଲୁଟ ଦିଅ, ସ୍ୟାଲୁଟ୍ ଦିଅ ।

ସମସ୍ତେ ସଲାମ କଲେ ଅଶ୍ରୁ ତର୍ପଣ କରିବାପାଇଁ । ବୃକ୍ଷ ଲତାମାନେ ନିସ୍ତବ୍ଧ ହୋଇ ଯାଇଥିଲେ । ଡାଳମାନଙ୍କର ଚଢ଼େଇମାନେ ତଳକୁ ବେକଲମ୍ବାଇ ବସି ରହିଥିଲେ । ଗଛ ଗହଳରୁ କପୋତୀଟିଏ ବାହୁନି ଉଠିଲା । ହଠାତ୍—ଆଉ ପରେ ପରେ ଅସଂଖ୍ୟ ଚଢ଼େଇ କରୁଣ ସ୍ୱରରେ ବୋବେଇ ଉଠିଲେ ।

●

ଡିଭିଜନାଲ୍ ସୁପରିଣ୍ଟେଣ୍ଡେଣ୍ଟ,
ଦକ୍ଷିଣ-ପୂର୍ବ ରେଳବାଇ, ଖୋର୍ଦ୍ଧା ।

# ଉତ୍କଳମଣି ଗୋପବନ୍ଧୁ ଏକଜାତୀୟ ମହାକାବ୍ୟ

ସେହି ସତ୍ୟବାଦୀ ଗୁପ୍ତ ବୃନ୍ଦାବନେ ବକୁଳ ତମାଳ ତଳେ
କଳିଯୁଗେ ଆଜ ଦ୍ୱାପର ବସିଲେ ଦିଶୁଛି ଆବର ଥରେ
ଦାସ ଗୋପବନ୍ଧୁ ଗୋପ ବାଳଲୀଳା କରନ୍ତି ଭିଆଣ ପୁଣି
କହ ଜମ୍ବୁଦ୍ୱୀପେ କେଁନାହିଁ ନାଆଁଲେ ସେ ଦାସ ପୁଅର ଶୁଣି । (୧)

ବିଂଶ ଶତାବ୍ଦୀର ପ୍ରଥମଭାଗରେ ସତ୍ୟବାଦୀର ମଞ୍ଜୁଳ କୁଞ୍ଜଅନାକୃଷ୍ଟରେ, ଜାତୀୟଜାଗରଣର ଯେଉଁ ପବିତ୍ର ଯଜ୍ଞପୀଠ ପ୍ରତିଷ୍ଠିତ ହୋଇଥିଲା, ତାହାର ଉଦ୍‌ଗାତା ଥିଲେ ଗୋପବନ୍ଧୁ । ଏହି ବକୁଳ-ତମାଳ-ଶ୍ୟାମବନଭୂମି ସାହିତ୍ୟ ସଂସ୍କୃତି, ସଂଗ୍ରାମ ସାଧନା ଓ ତ୍ୟାଗ ତପସ୍ୟାର ବାଣୀ ଉଦାର ଗମ୍ଭୀର କଣ୍ଠରେ ବିକିରଣ କରୁଥିଲା । ବନ୍ୟା-ବାତ୍ୟାଶିକାଗ୍ରସ୍ତ, ଦୁଃଖ-ଦାରିଦ୍ର୍ୟ-ପ୍ରପୀଡ଼ିତ, ଛିନ୍ନମସ୍ତା ଉତ୍କଳଜନନୀର ଦୁଃଖମୋଚନ ନିମନ୍ତେ ଏହାହିଁ ଥିଲା ପ୍ରତିଜ୍ଞା ଓ ପ୍ରସ୍ତୁତିର ପୀଠ । ଆତ୍ମତ୍ୟାଗୀ ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ତାଙ୍କର ସୁଯୋଗ୍ୟ ସହକର୍ମୀ ବୃନ୍ଦ, ବ୍ୟକ୍ତିଗତ ସ୍ୱାର୍ଥ, ସମ୍ମାନ ଓ ସିଦ୍ଧିରେ ଜଳାଞ୍ଜଳି ଦେଇ, ସମାଜ, ସାହିତ୍ୟ, ରାଜନୀତି ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ଉତ୍କଳର କଲ୍ୟାଣ ନିମନ୍ତେ, ଏଠାରେ ଥିଲେ ସାଧନାରତ, ବ୍ୟକ୍ତିଗତ ଜୀବନର ଅଭାବ ଅନାଟନ, ଦୁଃଖଯାତନା ନିନ୍ଦା ସମାଲୋଚନାରେ ତିଳେମାତ୍ର ବିବ୍ରତ ବା ବିଚଳିତ ନ ହୋଇ ନିଷ୍ଠାର ସହ ଜାତିର ଜୀବନ୍ତ-କୋଣାର୍କ ଗଢ଼ିବାରେ ସେମାନେ ତନ୍ମୟ ହୋଇ ଲାଗିଥିଲେ । ଗୋପବନ୍ଧୁଙ୍କର ମହନୀୟ ବ୍ୟକ୍ତିତ୍ୱର ପ୍ରଭାବରେ ପ୍ରତ୍ୟେକ ହୋଇଥିଲେ ଆତ୍ମବିସ୍ମୃତ, ମନ୍ତ୍ରମୁଗ୍ଧ ।

ଏହି ଯାଦୁକରୀ 'ବ୍ୟକ୍ତିତ୍ୱ'ର ଅନ୍ତରାଳରେ ଥିଲା, ତାଙ୍କ ଜୀବନର ନିରାଡ଼ମ୍ବର ସରଳତା, ନେତୃତ୍ୱର ନିରହଙ୍କାରିତା, ମୁନିଜନସୁଲଭ ବିନମ୍ରତା, ପବିତ୍ର ସେବା ମନୋଭାବ, କବିପ୍ରାଣର ସରସ-ସ୍ନିଗ୍ଧତା ଓ ଅଟଳ ଭଗବତ୍ ନିଷ୍ଠା । କେଣ୍ଟ ତାଙ୍କୁ କେହି କେହି ଭାରତରେ ଗାନ୍ଧୀଙ୍କର ସତ୍ସ୍ୱରୂପ

ଶ୍ରୀ ବିଭୁଦତ୍ତ ମିଶ୍ର

୧ । ସାକ୍ଷୀଗୋପାଳ—ଅଲେଖିକା (ପୃ ୬୪) ପଣ୍ଡିତ ଗୋଦାବରୀଶ ମିଶ୍ର

ସ୍ୱବେ ଚିତ୍ରଣ କରିଛନ୍ତି । (୨) ତାଙ୍କ ଜୀବନ, କର୍ମ ଓ ବଚନରେ ଦେଶର ସମସ୍ତ ଧ୍ୟାନ ଧାରଣା, ଆଶା ଆକାଂକ୍ଷା, ସ୍ୱପ୍ନସମ୍ଭାବନା, ଶୌର୍ଯ୍ୟବୀର୍ଯ୍ୟ ଓ ଜୀବନଦର୍ଶନ କେନ୍ଦ୍ରୀଭୂତ ହୋଇ ଏକ ତେଜସ୍ୱୀ ଶିଖାରୂପେ ଉତ୍କଳରେ ପ୍ରଜ୍ଜ୍ୱଳିତ ହୋଇ ଉଠିଥିଲା ; ତାହାହିଁ ତାଙ୍କର ବ୍ୟକ୍ତିତ୍ୱ । ସେହି ଶିଖାର ଆଲୋକରେ ସେ ଏ ଜାତିକୁ ଘୋର ଦୁର୍ଦ୍ଦିନର ଅନ୍ଧକାର ମଧ୍ୟରେ ପଥ ପ୍ରଦର୍ଶନ କରିଛନ୍ତି, ନୈରାଶ୍ୟ ଅବସାଦର ଭୀଷଣ ଆବର୍ତ୍ତ ମଧ୍ୟରେ ଆଶା ଓ ସାନ୍ତ୍ୱନାର ଅମୃତ ବର୍ଷଣ କରିଛନ୍ତି । (୩)

ବାସ୍ତବରେ ଗୋପବନ୍ଧୁଙ୍କ ଜୀବନ ବହୁ ବୈଚିତ୍ର୍ୟ, ଔଦାର୍ଯ୍ୟ ଓ ଗାମ୍ଭୀର୍ଯ୍ୟମୟ । ଏହାର ପ୍ରତ୍ୟେକ ପୃଷ୍ଠାରେ ଅଗଣିତ ଚିନ୍ତାଚେତନା, ରାଗରସ, ତଥ୍ୟ ଓ ତତ୍ତ୍ୱର ସମନ୍ୱୟ ଓ ସମାବେଶ, ତାଙ୍କର ଜୀବନ ଯଥାର୍ଥରେ "ବିଧାତା ରଚିତ ଗୋଟିଏ ସୁମନୋଜ୍ଞ ସୁଲଳିତ କାବ୍ୟ, ଏ କାବ୍ୟରେ ସକଳ ରସର ବିଚିତ୍ର ସମନ୍ୱୟ, ଏ କାବ୍ୟର ଅନୁଶୀଳନ ପାଠକ ପ୍ରାଣରେ ସଞ୍ଚାର କରେ ବ୍ରହ୍ମାନନ୍ଦ ସହୋଦର ପରମ-ଅହ୍ଲାଦ ।" (୧) ଭିନ୍ନ ଭିନ୍ନ ରୂପରେ, ସ୍ୱରରେ, ରସରେ ଗୋପବନ୍ଧୁଙ୍କ କାବ୍ୟରୂପୀ ବ୍ୟକ୍ତିତ୍ୱ ସାଧାରଣ ବ୍ୟକ୍ତିମାନଙ୍କୁ ଉଦ୍ଭାସିତ କରେ, ଅନୁପ୍ରାଣିତ ଓ ଅଭିଭୂତ କରେ ।

ସେ ଥିଲେ ଏକାଧାରରେ କର୍ମୀ ଓ କବି । କର୍ମଜୀବନର ବିଭିନ୍ନ ଅନୁଭବ ଓ ଅନୁଭୂତି ଉପରେ ପ୍ରତିଷ୍ଠିତ ତାଙ୍କର କବିତା ଏବଂ ତାଙ୍କ କାବ୍ୟକବିତାର ବାସ୍ତବ ରୂପାୟନ ହେଉଛି ତାଙ୍କର କର୍ମଧାରା । ରାଧାନାଥଙ୍କ ଭଳି ସେ କେବଳ କାବ୍ୟର କବି ନଥିଲେ ; ଥିଲେ କର୍ମର କବି । "ତାଙ୍କ ବ୍ୟକ୍ତିଗତ କର୍ମମୟ ଜୀବନର ପ୍ରାଚୁର୍ଯ୍ୟ ଗାମ୍ଭୀର୍ଯ୍ୟ, ଔଦାର୍ଯ୍ୟ ଓ ପ୍ରସାରଶୀଳତାର ମନୋମୟ ପ୍ରକାଶ ହେଉଛି ତାଙ୍କର ସାହିତ୍ୟ, ଯହିଁରେ ଅନ୍ୟ କବିମାନଙ୍କ ସନ୍ଦେହ କଲାପରି, ଏଠାରେ ଗୋପବନ୍ଧୁଙ୍କୁ ସନ୍ଦେହ କରିବାର କୌଣସି ଅବକାଶ ନାହିଁ ।" (୨) କାରଣ ତାଙ୍କର କର୍ମ ଓ କବିତ୍ୱ ମଧ୍ୟରେ କୌଣସି ବ୍ୟବଧାନ ନ ଥିଲା । ତାଙ୍କର କର୍ମାଦର୍ଶ ହିଁ ତାଙ୍କର କାବ୍ୟକବିତାରେ ପ୍ରତିଫଳିତ । ତାଙ୍କର ବ୍ୟକ୍ତିତ୍ୱ ହିଁ କାବ୍ୟ ସୌରଭମୟ । (୩) ସଂକ୍ଷେପରେ ପ୍ରକାଶ କଲେ, ଗୋପବନ୍ଧୁଙ୍କର କବିତାହିଁ କର୍ମ, କର୍ମହିଁ କବିତା; "ଯେହେତୁ ତାଙ୍କ କବିତାର ସମସ୍ତ ବକ୍ତବ୍ୟକୁ ସେ ନିଜ ଜୀବନରେ ପ୍ରତିଫଳିତ କରିଥିଲେ, ଅଥବା ତାଙ୍କ ନିଜ ଜୀବନର ବାସ୍ତବ ମହତ୍ତ୍ୱହିଁ ତାଙ୍କ କବିତାରେ ପ୍ରତିଫଳିତ ହୋଇଛି," ଏହି କର୍ମର ପ୍ରେରଣା ଓ ପ୍ରଭାବହିଁ ପ୍ରତିପାଦନ କରିଛି ଯେ—

"ମାନବ ଜୀବନ ନୁହଇ କେବଳ
ବର୍ଷମାସ ଦିନ ଦଣ୍ଡ
କର୍ମେ ଜିଏଁ ନର, କର୍ମ ଏକା ତା'ର
ଜୀବନରମାନଦଣ୍ଡ" । (୫)

ସମଗ୍ର ଜୀବନ ଦେଶ ଓ ଜାତିର ସେବାରେ ଉତ୍ସର୍ଗ କରିଥିବା କବିର କବିତାର ସ୍ୱରୂପ ଏହା ବ୍ୟତୀତ ଆଉ କ'ଣ ହୋଇପାରେ ?

ଗୋପବନ୍ଧୁଙ୍କର କର୍ମକଠୋର ଜୀବନରେ କୋମଳ କବିପ୍ରାଣର ଯେଉଁ ଶାନ୍ତ ସରସ ଅଭିବ୍ୟକ୍ତି ଦେଖିବାକୁ ମିଳେ, ତାହା ବାସ୍ତବରେ ଅନିର୍ବଚନୀୟ । ସେ ବାସ୍ତବଜୀବନ କ୍ଷେତ୍ରରେ ଯେଉଁ ଦୃଢ଼ତା, ନିର୍ଭୀକତା ଓ ସହିଷ୍ଣୁତାର ଉଦାର ପରିଚୟ ଦେଇଯାଇଛନ୍ତି, ତହିଁରେ କବିସୁଲଭ କୋମଳତା, ସ୍ନେହପ୍ରବଣତା, ରସିକତା ଓ ସରସତାର ସୁମଧୁର ସମନ୍ୱୟ ପରିଲକ୍ଷିତ ହୁଏ । ଜୀବନର ପତନ-ଉତ୍‌ଥାନ ମଧ୍ୟରେ ନାନା ଘାତ ପ୍ରତିଘାତ, କ୍ଷତ ଓ କ୍ଷତି ସହି ନିଜର କଠିନ ଆଦର୍ଶ ପଥରେ ଅଗ୍ରସର ହେଉଥିବେଳେ ମଧ୍ୟ ସେ ଅନ୍ତରର ସ୍ୱଭାବ-ସୁଲଭ ସରସତା ଓ ପ୍ରେମ ପ୍ରବଣତା ହରାଇ ନାହାନ୍ତି । ତାଙ୍କ ପାଇଁ—

"ଶୂନ୍ୟ ସଂସାର ମୋର ଶୂନ୍ୟ ସଦନ
ଚୁମ୍ବନ ଆଲିଙ୍ଗନ ମୋତେ ସ୍ୱପନ
କିଏ ବା ଦେବ ନେବ ପ୍ରେମ ପୀୟୂଷ
ନୀରବ ହାହାକାରେ ପିଏ ଅୟୂଷ । (୬)

୨ । ଗାନ୍ଧିବାଦର ପୂର୍ବରୂପ—ଶ୍ରୀ ବିଶ୍ୱନାଥ ଦାସ
୩ । କେତେ ଏ ଜାତି ବୋଇତ ଲାଗି ମହାଦ୍ୱୀପ ସେ ଅଲ୍ପଜନ୍ତୁ ନାଆଏ ତା'ର ପରାଣ ତାପେ, ନିରାଶେ ଯେତେ ଦୁଃଖୀ ମନୁ—ତୋହର ସାଥୀ—ଶ୍ରୀ ଅନନ୍ତ ପଟ୍ଟନାୟକ ।
୧ । କବି ଗୋପବନ୍ଧୁ—ପୃ ୧—ଅଧ୍ୟାପକ ଚିନ୍ତାମଣି ଦାଶ
୨ । କବି ଗୋପବନ୍ଧୁ—ପୃ ୨୨୮—ଅଧ୍ୟାପକ ଚିନ୍ତାମଣି ଦାଶ
୩ । ଯୁଗପୁରୁଷ ଗୋପବନ୍ଧୁ ଦାଶ—ପୃ ୧୬୦
୪ । ଜାତିପ୍ରାଣ ଗୋପବନ୍ଧୁ—ଶ୍ରୀ ମନୋଜ ଦାସ
୫ । ଧର୍ମପଦ—ପୃ ୩୬
୬ । କାରା କବିତା "ବିଶ୍ୱର ମିଳନ ଚିହ୍ନ"—ପୃ ୬୨

ବ୍ୟକ୍ତିଗତ, ପାରିବାରିକ ତଥା ସାଂସାରିକ ସୁଖରୁ ବଞ୍ଚିତ ହୋଇ ମଧ୍ୟ ଗୋପବନ୍ଧୁ ଜୀବନର ଯାହା ପଥରେ ଚିର ଅବିଚଳିତ, ଅକ୍ଲାନ୍ତ ଏକ ଅବିଶ୍ରାନ୍ତ ଯାତ୍ରୀ । କୌଣସି ପ୍ରତିକୂଳ ପରିସ୍ଥିତିର ପ୍ରଭାବରେ ମୁହ୍ୟମାନ ନ ହୋଇ ସେ ସ୍ଥିର, ନିର୍ଭୀକଚିତ୍ତ ସନ୍ୟାସୀ ତୁଲ୍ୟ ନିତ୍ୟ ଅଗ୍ରଗାମୀ ।

ଗୋପବନ୍ଧୁ ଥିଲେ ଆତ୍ମୋତ୍ସର୍ଗ ଅଜ୍ଞାତ ଅମୃତ ସ୍ୱାନ ଏକ କାନ୍ତିକାରୀ ପୌରୁଷର ପ୍ରତିମୂର୍ତ୍ତି । ସେ ବିପ୍ଳବୀ, କିନ୍ତୁ ଲୁହରେ ଲୁହ ମିଶାଇ ସେ ପ୍ରଳୟର ସଙ୍ଗୀତ ସୃଷ୍ଟି କରିଛନ୍ତି, ସ୍ନେହ-ସହାନୁଭୂତି ଓ ମାନବିକତାର ଶରପ୍ରୟୋଗ କରି ଶତ୍ରୁକୁ ଜୟ କରିଛନ୍ତି । ସମଗ୍ର ଜୀବନ ବ୍ୟାପୀ ପ୍ରଶଂସା, ପ୍ରତିପତ୍ତି ଜୟ ଜୟକାରକୁ ପ୍ରତୀକ୍ଷା ନ କରି ସେ ନୀରବ ନିଭୃତରେ ସାଧନା କରି ଯାଇଛନ୍ତି । କୌଣସି ପୁରସ୍କାର, ପ୍ରତିଦାନର ଆଶା ସେ ରଖିନାହାଁନ୍ତି (୧) ତାଙ୍କର କବିତ୍ୱ ଥିଲା ଏକ କର୍ମଜୀବିଷ୍ଟ ଶକ୍ତି, ଏକ କର୍ମ ବର୍ଦ୍ଧିଷ୍ଣୁ ଧାରା । କର୍ମଯୋଗର ଅଭିବ୍ୟକ୍ତି ଦ୍ୱାରା ତାହା ନିୟନ୍ତ୍ରିତ । ମାନବସମାଜରେ, ଦେଶ ବା ଜାତିର ପର୍ଯ୍ୟାୟରେ ପ୍ରତିଭାଶାଳୀ କବି ଗୋପବନ୍ଧୁ ଯେପରି ଏକୀଭୂତ ହୋଇ ଯାଇଛନ୍ତି । ତାହା କୌଣସି ଆଦର୍ଶର ସାମୟିକ ପ୍ରେରଣାରେ ନୁହେଁ, ବରଂ ତାହା ସୁଦୃଢ଼ କର୍ମବିଶ୍ୱାସ, ବଳିଷ୍ଠ ବିଶ୍ୱପ୍ରୀତି ଦ୍ୱାରାହିଁ ଉଦ୍‌ବୁଦ୍ଧ । ତାଙ୍କର ଅନନ୍ୟ ସାଧାରଣ ମାନବ ସେବା, ସ୍ୱାଧୀନତା ପାଇଁ ଆତ୍ମୋତ୍ସର୍ଗ, ଏବଂ ଦୁର୍ଗତ ଦରିଦ୍ର ନାରାୟଣଙ୍କ ପ୍ରତି କରୁଣା ତଥା ଶୈଳିକ ଅଭିବ୍ୟକ୍ତି, ମାନବିକ ଦୃଷ୍ଟିଭଙ୍ଗୀ, ସହାନୁଭୂତି-ଶୀଳ ଦୃଷ୍ଟିକୋଣ, ଏବଂ ଗଣଉପାସନା ତାଙ୍କ କବିତାର ପ୍ରତିଧ୍ୱନିତ ମୂର୍ଚ୍ଛନା । ଦେଶହିଁ ତାଙ୍କ କବିତାର ସ୍ୱପ୍ନ, ଜାତିହିଁ ତାଙ୍କ କବିତାର ଉଦ୍‌ବୋଧନ, ଈଶ୍ୱର ବିଶ୍ୱାସ ଓ ଭଗବତ୍‌ପ୍ରେମ ତାଙ୍କ କବିତାର ନିର୍ଯ୍ୟାସ, ଧର୍ମର ଜୟ, ସତ୍ୟର ଜୟ—ଏହି ଅଫୁରନ୍ତ ବୈଦିକ ବାଣୀ ତାଙ୍କ କବିତାର ଶକ୍ତି ଏବଂ ସାମର୍ଥ୍ୟ । (୨)

ପରିମାଣ ଦୃଷ୍ଟିରୁ ଗୋପ-ସାହିତ୍ୟର ଅବଦାନ ସ୍ୱଳ୍ପ, କିନ୍ତୁ ଗୁଣାତ୍ମକ ଦୃଷ୍ଟିରୁ ବିଚାର କଲେ, ଏହା ମହାର୍ଘ ଜାତୀୟ-ସମ୍ପତ୍ତି । ଚନ୍ଦନପରି ତା'ର ସୌରଭ ଚନ୍ଦନ, ଦିଗ୍‌ବିଦିଗ୍ ବ୍ୟାପୀ; ଉଜ୍ଜ୍ୱଳ ହୀରକ ଖଣ୍ଡ ଭଳି ତା'ର ଦ୍ୟୁତି ଓ ଦୀପ୍ତି ଶାଶ୍ୱତ୍ । ଯୁଗେ ଯୁଗେ ଉଦ୍ଭାସିତ ସେଥିରେ ନୂତନତ୍ୱର ଦିଗ୍‌ଦର୍ଶନ, ସନ୍ୟାସର ବୈରାଗ୍ୟ ସାଧନା, ଅହିଂସାଧର୍ମୀ ବୀର ପୁରୁଷର ରଣହୁଙ୍କାର ଅଛି; କର୍ମଯୋଗର ପ୍ରବୃଦ୍ଧ ସ୍ପନ୍ଦନ ଓ ଜାଗରଣ ଅଛି, ସାମ୍ପ୍ରତିକତା ସହିତ ଚିରନ୍ତନ ସାହିତ୍ୟର ସମ୍ମେଳନ ଅଛି, ଆଶା ନୈରାଶ୍ୟର ଆଲୋକ ଛାୟା ଅଛି, ଜାତିର ସର୍ବତୋମୁଖୀ ଶ୍ରେୟବୋଧର କଲ୍ୟାଣଶ୍ରୀ ମଣ୍ଡିତ ଅଭିପ୍ରକାଶ ଅଛି ଏବଂ ଏକ ଅଚ୍ଛ ସୂତ୍ରରେ ଗ୍ରଥିତ ମଣିଗଣ ପରି ମହାକାଳର ପ୍ରବହମାନ ଚଉଦଶୀ-ତା, ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂଯୋଗ ସାଧନା । (୩) ଯାହା ପବିତ୍ର, ମଧୁର, ସୁନ୍ଦର ଓ କଲ୍ୟାଣକର ତାହାହିଁ ତାଙ୍କ ଜୀବନରେ ଓ ସାହିତ୍ୟରେ ରୂପାୟିତ ହୋଇଛି, ଅପାର ଉଦ୍ଦୀପନ ଓ ମହତ୍ତ୍ୱର ଜାଗୃତ କମଳେ ସେ କାବ୍ୟମନୋବାକ୍ୟରେ ପ୍ରକାଶ କରିଛନ୍ତି ।

କେହି ସମାଲୋଚକ ଗୋପବଂଧୁଙ୍କୁ ଓଡ଼ିଆ ସାହିତ୍ୟରେ ନବଯୁଗର ପ୍ରବର୍ତ୍ତକ ଭାବରେ ଆଖ୍ୟାୟିତ କରିଛନ୍ତି, (୪) ଓଡ଼ିଆ ସାହିତ୍ୟର ଗତାନୁଗତିକ ପାରମ୍ପରିକ ଅଭି-ମୁଖ୍ୟରେ । ବୈପ୍ଳବିକ ପରିବର୍ତ୍ତନ ଆଣି, ସେ ସାହିତ୍ୟକୁ କରିଛନ୍ତି ଗଣାଭିମୁଖୀ । ସର୍ବସାଧାରଣଙ୍କ ମଧ୍ୟରେ ଜାତୀୟ ଜାଗରଣ ଆଣିବା ତାଙ୍କ ସାହିତ୍ୟର ଲକ୍ଷ୍ୟ—ତାହାର ଭାଷା ସହଜ—ସୁବୋଧ—ସରଳ । ଏହା କେବଳ ଗୋପବଂଧୁଙ୍କ ପ୍ରାଣର ଭାଷା ନୁହେଁ, ଲକ୍ଷ ଲକ୍ଷ ଓଡ଼ିଆଙ୍କର ପ୍ରାଣର ଭାଷା । ପ୍ରଗତିଶୀଳ ଓ ବାସ୍ତବବାଦୀ ସାହିତ୍ୟର ପ୍ରଥମ ପଥିକୃତ ଭାବେ ଗୋପବଂଧୁ ପୂର୍ଣ୍ଣ-ମର୍ଯ୍ୟାଦାର ଅଧିକାରୀ । ସାହିତ୍ୟ କ୍ଷେତ୍ରରେ ସେ ଏକକ, ନିଃସଙ୍ଗ, ପଳାୟନପନ୍ଥୀ କିମ୍ବା ଆନନ୍ଦବାଦୀ ନୁହଁନ୍ତି । ଭାଷା ଓ ସାହିତ୍ୟ ମାଧ୍ୟମରେ ସେ ଦେଶ, ଜାତି ଓ ସମାଜର ଭୂୟୋବିକାଶ ସମ୍ଭବପର,ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ନିଜର କର୍ମ ଓ କବିତାକୁ ପରସ୍ପରଠାରୁ ବିଚ୍ଛିନ୍ନ କରି-ଦେଇନାହାନ୍ତି । ଯେଉଁଠାରେ କର୍ମଧାରା ଲୋକସମାଜକୁ ପ୍ରବୁଦ୍ଧ ଓ ପ୍ରଣୋଦିତ କରିବାକୁ ସମର୍ଥ ହୋଇ ନାହିଁ, ସେଠାରେ ସେ କାବ୍ୟକବିତା ମାଧ୍ୟମରେ ମାନବ ହୃଦୟକୁ ଆନନ୍ଦ ସ୍ପନ୍ଦନରେ ଉଦ୍‌ବୁଦ୍ଧ କରି, ମାନବତାର ମହାଝଙ୍କାର ସୃଷ୍ଟି କରି, କର୍ମପ୍ରବାହର ଉଦ୍ଦୀପନା ଓ ଶୃଙ୍ଖଳା ଖେଳାଇ ଦେଇଛନ୍ତି ।

---

(୧) ତୋହର ସାଥୀ—ଲୁହରେ ଲୁହ ମିଶାଇ କେହି ପ୍ରଳୟ ଗୀତ ଜାଳିଛି ଆଜ୍ଞ × × ଶିଳ୍ପୀ ସେ ଯେ ଉହାଡ଼େବସି ନିହାଣେ ଗୀତ ରଚୁଛେ ଥାଇ—ଅନନ୍ତ ପଟ୍ଟନାୟକ

(୨) ଗୋପବନ୍ଧୁଙ୍କ କବିତାରେ ଜୀବନ ଦର୍ଶନ—ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର,

(୩) କବି ଗୋପବନ୍ଧୁ—ପୃ—୧୯ ।

(୪) କବି ଗୋପବନ୍ଧୁ—ପୃ—୨୦୨

ସେ ଥିଲେ ଭାରତୀୟ ପ୍ରାଚୀନ ଐତିହ୍ୟ ଓ ଗୌରବ-ଗରିମା-ସମ୍ପନ୍ନ ପରମ୍ପରାର ପୃଷ୍ଠପୋଷକ ଓ ବାହକ । ଆର୍ଯ୍ୟ ସଂସ୍କୃତିର ସୁଯୋଗ୍ୟ ଦାୟାଦରୂପେ ଭାରତୀୟ ପ୍ରାଚୀନ ସଂସ୍କୃତି ଓ ପବିତ୍ର ପରମ୍ପରା ପ୍ରତି ତାଙ୍କର ଥିଲା ଅପରିସୀମ ଅନୁରାଗ । ପ୍ରାଚୀନ ତପୋବନର ମହନୀୟ ଆଦର୍ଶରେ ସେ ପ୍ରତିଷ୍ଠା କରିଥିଲେ ସତ୍ୟବାଦୀ ବନ ବିଦ୍ୟାଳୟ । ଅବତାରମାନଙ୍କଠାରୁ ମୁନି-ଋଷି-ସାଧୁ ସନ୍ଥ ଓ ମହାପୁରୁଷମାନଙ୍କ-ଦ୍ୱାରା ଆର୍ଯ୍ୟ ପରମ୍ପରା ପରିପୁଷ୍ଟ ଓ ସମୃଦ୍ଧ ହୋଇ ଆସିଛି । ଏହାହିଁ ଭାରତୀୟ ସଂସ୍କୃତିର ପ୍ରାଣବାୟୁ । ଗୋପବନ୍ଧୁ ସେହି ଆର୍ଯ୍ୟ ଜୀବନ, ଆର୍ଯ୍ୟ ଚରିତ ଓ ଆର୍ଯ୍ୟ ପରମ୍ପରାର ପ୍ରତୀକ ଥିଲେ । (୧) ସମଗ୍ର ବିଶ୍ୱର ବସ୍ତୁରାଜି ଓ ଘଟଣା-ବଳୀର ଅନ୍ତରାଳରେ ଯେଉଁ ପରମ ତତ୍ତ୍ୱ ନିହିତ ତାହା ବିଶ୍ୱାତୀତ, ବିଶ୍ୱଗତ ଓ ବ୍ୟଷ୍ଟିଗତ । ଏହାହିଁ ସତ୍ୟ, ଶିବ ଓ ଆତ୍ମାରୂପେ ପ୍ରତିଷ୍ଠିତ । ଆର୍ଯ୍ୟ ପରମ୍ପରାର ଏହି ଆଧ୍ୟାତ୍ମିକ ଓ ଆସ୍ତିକ ଦିଗ ଗୋପବନ୍ଧୁଙ୍କ ଈଶ୍ୱର ପ୍ରୀତିରେ ଫୁଟି ଉଠିଥିଲା । ତୁଷାର ପିଣ୍ଡରୁ ନିର୍ଝର ଯେପରି ପ୍ରବାହିତ ହୁଏ, ସୂର୍ଯ୍ୟଙ୍କ ମଧ୍ୟରୁ ତେଜୋରାଶି ଯେପରି କ୍ଷରିତ ହୁଏ, ସିଦ୍ଧାନ୍ତ ମଧ୍ୟରୁ ଅନୁଶୀଳନ ଯେପରି ପରିସ୍ଫୁଟ ହୁଏ, ଗୋପବନ୍ଧୁଙ୍କ ମଧ୍ୟରୁ ଈଶ୍ୱରପ୍ରୀତି, ଭଗବତ୍‌ପ୍ରେମ ଓ ନିର୍ମଳ ଆଧ୍ୟାତ୍ମ୍ୟ ପ୍ରବୃତ୍ତି ସେହିପରି ପରିସ୍ଫୁଟ ହୋଇଅଛି । ଗୋପବନ୍ଧୁ ଯେପରି ଏକ ଶୁଦ୍ଧ ଆତ୍ମା, ଏକ ନିଷ୍କଳଙ୍କ ଦେବୋପମ ପୁରୁଷ, ଅଶରୀରୀ ଭଗବତ୍ ସତ୍ତା ଓ ଆଲୋକ । (୨) ତାଙ୍କର ସକଳ ପ୍ରେରଣା ଈଶ୍ୱରାନୁମୋଦିତ, ସକଳ ଚିନ୍ତା ଈଶ୍ୱରଗତ, ସେ ସର୍ବଦା ଓ ସର୍ବଥା ବିଭୁଭାବରେ ତନ୍ମୟ ଓ ତଲ୍ଲୀନ—

"ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ, ପ୍ରତି ସ୍ଥାନ ମୋର ପ୍ରିୟ ପୁଣ୍ୟ ଧାମ
ସକଳ ସଲିଳ ପଞ୍ଚତୀର୍ଥ ଜଳ, ପ୍ରତି ଧର୍ମାଳୟ ମୋର ନୀଳାଚଳ
ଭାରତର ପ୍ରତି ବୃକ୍ଷ କଳ୍ପବଟ, ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ
ସାମ୍ୟ ସ୍ୱାଧୀନତା ପ୍ରେମ ସମୁଦାୟ, ନୀଳାଚଳ ଶୁଦ୍ଧ ଭାରତ ହୃଦୟ
ଥିଲେ ଯହିଁ ତହିଁ ଭାରତ ଶରୀରେ, ମରିବି ମୁଁ ଅଛୁ ନୀଳଚକ୍ର ତଳେ ।" (୩)

ଈଶ୍ୱରଚେତନା ଗୋପବନ୍ଧୁଙ୍କ କର୍ମଧାରାକୁ ନିୟନ୍ତ୍ରିତ କରିଛି । ତାଙ୍କର ଆଦିଷ୍ଟ କର୍ମସଂପାଦନ ଓ ସକଳ ଫଳାଫଳ ତାଙ୍କ ଚରଣରେ ନିବେଦନ ଓ ନିଃଶେଷ ଆତ୍ମସମର୍ପଣ ହିଁ ଗୀତାର ବାଣୀ । ଆର୍ଯ୍ୟ ପରମ୍ପରାର ଏହି ବୈଶିଷ୍ଟ୍ୟ ଗୋପବନ୍ଧୁଙ୍କ ଜୀବନରେ ଅବ୍ୟାହତ ଥିଲା । ଉତ୍କଳୀୟ ତଥା ଭାରତୀୟ ସଂସ୍କୃତିର ପୁନରୁଜ୍ଜୀବନ ତାଙ୍କ ଜୀବନ ଓ ସାହିତ୍ୟର ଥିଲା ଚରମ ଲକ୍ଷ୍ୟ । ଅଟଳ ଭଗବତ୍ ବିଶ୍ୱାସ, ସ୍ନେହ, ଦୟା, କ୍ଷମା, ଭକ୍ତି, ମୈତ୍ରୀ ଆଦି ମାନବିକ ସଦଗୁଣ ସମୂହର ବିକାଶ ଓ ପ୍ରସାର ନିମନ୍ତେ ସେ ଥିଲେ ସର୍ବଦା ଯତ୍ନଶୀଳ ; ସତ୍ୟ, ଶିବ ଓ ସୌନ୍ଦର୍ଯ୍ୟର ପରିପ୍ରକାଶ ନିମନ୍ତେ ତାଙ୍କର ଜୀବନ ଓ ସାହିତ୍ୟ ଥିଲା ଅଭିପ୍ରେତ । ତେଣୁ ତହିଁରେ କୌଣସି କ୍ଷୁଦ୍ରତା, ସଂକୀର୍ଣ୍ଣତା, ସ୍ୱାର୍ଥପରତା, ନୀଚତାର ସ୍ଥାନ ନ ଥିଲା । ଗୋପବନ୍ଧୁଙ୍କର ଅନ୍ତର ଥିଲା ଉଦାରଗମ୍ଭୀର, ସାର୍ବଜନୀନ, ବିଶ୍ୱଜନୀନ ମହାଭାବରେ ଉଦ୍‌ବୁଦ୍ଧ । ସେ ଗଭୀରରେ ଥିଲେ ପାରମ୍ପାରିକ, କିନ୍ତୁ ଗତିରେ ଥିଲେ ପ୍ରଗତିଶୀଳ । 'ନବତେଜେ ପୁଣି ବିକାଶୁ ପୁରୁଣା' ଏହି ନୀତିର ସେ ଥିଲେ ନିୟାମକ । ଜାତିଭେଦ-ଶୂନ୍ୟ, ସାମ୍ୟମୈତ୍ରୀପୂର୍ଣ୍ଣ ଜଗନ୍ନାଥ ସଂସ୍କୃତିକୁ ହିଁ ସେ ସର୍ବୋତ୍କୃଷ୍ଟ ଆଦର୍ଶରୂପେ ଗ୍ରହଣ କରିଛନ୍ତି । ତାଙ୍କର ଜୀବନ ତନ୍ତ୍ରୀରେ ବିଶ୍ୱର ଝଙ୍କାର ଅନୁରଣିତ ହୋଇ ଉଠିଛି । ଯେଉଁ ଉତ୍କଳ ଭୂମିର ପ୍ରାଚୀନ ଧର୍ମପୀଠରେ, ଏଣୁ ଉଦାର ମାନବିକତାର ଅଭ୍ୟୁଦୟ ଘଟିଛି, ସେହି ପୀଠରୁ କର୍ମ ଜୀବନର ଜୟଯାତ୍ରା ଆରମ୍ଭ କରି, ଗୋପବନ୍ଧୁ କବିତାରେ ତା'ର ମହତ୍ତ୍ୱ ପ୍ରଚାର କରିଛନ୍ତି—

"ନାହିଁ ଜାତିଭେଦ, ନାହିଁ ଧର୍ମଭେଦ
ସାମ୍ୟ, ମୈତ୍ରୀ ମନ୍ତ୍ର ଗାଏ ଯା'ର ବେଦ
କେ' କରିବ ଭିଟବ
ଦେବତା ମାନବେ
ନୀଳାଚଳେ ତା'ର ପ୍ରବେଶ ନିଷେଧ । (୧)

---

(୧) ଗୋପବନ୍ଧୁ ପରମ୍ପରା-ଅଧ୍ୟାପକ କାଙ୍ଗାଳୀଚରଣ ପତି

(୨) ଗୋପବନ୍ଧୁ ପରମ୍ପରା-ଅଧ୍ୟାପକ କାଙ୍ଗାଳୀଚରଣ ପତି

(୩) ବନ୍ଦୀର ଆତ୍ମକଥା-ପୃ ୨୦ (୫ମ ଭାଗ)

(୧) ସତ୍ୟଧାମ ନୀଳାଚଳ-(କାରାକବିତା ପୃ ୧)

ଜଗନ୍ନାଥ ସଂସ୍କୃତିର ରକ୍ତ ଗୋପବନ୍ଧୁଙ୍କର ପ୍ରତିଟି ଧମନୀରେ ପ୍ରବାହିତ । ତେଣୁ ତା'ର ପୃଷ୍ଠପୋଷକ ଓ ଉଦ୍‌ଘୋଷକ ରୂପେ ଆମେ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଗୋପବନ୍ଧୁଙ୍କୁ ଦେଖିବାକୁ ପାଉ । ରାଜନୀତି, ସମାଜସେବା, ସାହିତ୍ୟ, ସାମ୍ବାଦିକତା ସବୁଠି ଉତ୍କଳୀୟ ସଂସ୍କୃତିର ମର୍ଯ୍ୟାଦା ପୁରୁଷ ରୂପେ ଗୋପବନ୍ଧୁ ପ୍ରତିଷ୍ଠିତ । ତାଙ୍କ ଅନ୍ତରକୁ ଛଳନା, ପ୍ରତାରଣା, ଶଠତା କୂଟନୀତି ଆଦି ସ୍ପର୍ଶ କରି ନାହିଁ । ଅନ୍ତରର ସରଳ ସୁନ୍ଦର ଆବେଗ ହିଁ ତାଙ୍କୁ ପ୍ରତ୍ୟେକ କର୍ମଯୋଜନାରେ ପ୍ରବୃତ୍ତ କରାଇଛି ।

ଗୋପବନ୍ଧୁଙ୍କର ବ୍ୟକ୍ତିଗତ ଜୀବନ ବହୁ-ବାଧା-ବିଘ୍ନିତ, ବହୁ ବ୍ୟର୍ଥତା-ବିଡ଼ମ୍ବିତ, ବହୁ ବେଦନା-ବିଦଗ୍ଧ । ତାଙ୍କରି ଭାଷାରେ—

"ଦେଖି ନାହିଁ ମାତୃ ମୁଖ ଅଜ୍ଞାନ ଶୈଶବେ
ପିତା ପୁତ୍ର ପତ୍ନୀ ବନ୍ଧୁ ବିୟୋଗ ବିଘାତ
ବାର ବାର ତଡ଼ନେଇ ଶୋକ ମହାର୍ଣ୍ଣବେ
ବୁଡ଼ାଇ ଦେଇଛି ବୁକେ ତୀବ୍ର କଶାଘାତ" (୨)

ଏହି ବ୍ୟର୍ଥତାର, କଶାଘାତ-ଜର୍ଜରିତ ବ୍ୟକ୍ତି, ସ୍ୱୀୟ ବ୍ୟକ୍ତିଗତ ଜୀବନର ସଂକୀର୍ଣ୍ଣ ସୀମାରେଖା ଅତିକ୍ରମ କରି, ସମଗ୍ର ବିଶ୍ୱର ଦଳିତ, ଅବହେଳିତ, ନିର୍ଯ୍ୟାତିତ ମାନବଜାତି ପାଇଁ, ସ୍ନେହ, ସହାନୁଭୂତି ଓ ସମବେଦନାର ସ୍ୱର ଉତ୍ତୋଳନ କରିଛନ୍ତି, ଅଗଣିତ ମାନବର ମୁକ୍ତି ଲାଗି ବାରବାର କାରାବରଣ କରିଛନ୍ତି, ଜାତୀୟ କଳଙ୍କର କ୍ଷାଳନ ନିମନ୍ତେ ଅଶ୍ରୁପାତ କରିଛନ୍ତି ଏବଂ ଅସହାୟ, ସମ୍ବଳହୀନ ନିଃସ୍ୱ ଜନତାର ଲାଞ୍ଛନା ନିବାରଣ ନିମନ୍ତେ ନିଜ ରକ୍ତରେ ତର୍ପଣ କରିଛନ୍ତି । ଜଗତର ଦୁଃଖ, ଅଗଣିତ ଜନତାର ଯନ୍ତ୍ରଣା ଓ ଅସହାୟ ଅକ୍ଷମର ଆକୁଳ ଆର୍ତ୍ତନାଦ ମଧ୍ୟରେ ତାଙ୍କ ବ୍ୟକ୍ତିଗତ ଜୀବନର ବ୍ୟଥା, ବ୍ୟର୍ଥତା, ଅଶ୍ରୁ, ଅବସାଦ ବିଲୁପ୍ତ ହୋଇ, ସେ ଗୀତା ବର୍ଣ୍ଣିତ ସ୍ଥିତପ୍ରଜ୍ଞ ମହାପୁରୁଷ ରୂପ ସୁଖ ଦୁଃଖ ଉଭୟ ଅବସ୍ଥାରେ ସମ୍ପୂର୍ଣ୍ଣ ନିରୁଦ୍‌ବିଗ୍ନ ରହି ନିଜର କର୍ତ୍ତବ୍ୟ କରି ଚାଲିଛନ୍ତି । ତେଣୁ—

"ସୁଖ ଦୁଃଖ ତେଣୁ ମୋର ସମ ସହଚର
ଜନମେ ମରଣେ ନାହିଁ ହରଷ ବିଷାଦ
ଆହ୍ଲାଦେ ଆପଦେ ମୋର ସମାନ ଆଦର
ସବୁ ଶୁଭ ବିଧାତାଙ୍କ ଶୁଭ ଆଶୀର୍ବାଦ ।" (୩)

ଜାତୀୟ ଜୀବନର ବିପୁଳ-ଜୀବନ ପ୍ରବାହ ମଧ୍ୟରେ ଗୋପବନ୍ଧୁ ଅନୁସ୍ୟୂତ, ବିଶ୍ୱଚେତନା ଓ ସାର୍ବଜନୀନ ପ୍ରୀତିର ପବିତ୍ର ପରିପ୍ରକାଶ ତାଙ୍କର କର୍ମ ଜୀବନ ଓ କାବ୍ୟ-କୃତିକୁ ଅଧିକ ମହନୀୟ ଓ ମହତ୍ କରି ତୋଳିଛି । ତେଣୁ ସିନା ସେ କହି ପାରିଛନ୍ତି—

ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବି ବିଶ୍ୱପ୍ରେମେ ପରମାନନ୍ଦେ ।

ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ ପସରା (୪)

ଗୋପବନ୍ଧୁଙ୍କ ପ୍ରାଣରେ ନିରନ୍ତର ଯେଉଁ ଶ୍ରେୟବୋଧ ଓ ସଦିଚ୍ଛା ପୋଷିତ ଥିଲା ତାହାର ବାଙ୍ମୟ ପରିପ୍ରକାଶହିଁ ତାଙ୍କର ସାହିତ୍ୟ । ତେଣୁ "ଜାତୀୟ ମମତା, ବିଶ୍ୱଜନ ପ୍ରୀତି" ଉତ୍କଳବାସୀର ନୀତି ହେଉ ବୋଲି ସେ ନିବେଦନ କରିଛନ୍ତି । 'ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ' ସମର୍ପଣ କରିବାପାଇଁ ସେ ଉଦ୍‌ବୋଧନ ଦେଇଛନ୍ତି । ତାଙ୍କ ଦୃଷ୍ଟିରେ 'ସମଗ୍ର ବିଶ୍ୱ ଏକ ପରିବାର' 'ସେ ନିଜେ ବିଶ୍ୱ ଓ ବିଶ୍ୱ ମଧ୍ୟେ ସେହି' ଭଳି ପ୍ରତିଫଳିତ ହୋଇଛି; 'ପରର ହିତ ସାଧନ' ହିଁ ପୌରୁଷରୂପେ ବିବେଚିତ ହୋଇଛି । 'ଏକର ବିନାଶରେ, ଅନେକର ଉଦୟ' ହେଉଛି ତାଙ୍କର ଆଦର୍ଶ । ସେ ନିଜେହିଁ 'ଧର୍ମପଦ' । ଏ ଜାତିର କୋଣାର୍କ ଶିଖରୁ, ସେ ଅଗଣିତ ଜାତିଭାଇଙ୍କର ମଙ୍ଗଳ ନିମନ୍ତେ ଆତ୍ମୋତ୍ସର୍ଗ କରିଛନ୍ତି । ଏଇ ତ୍ୟାଗ, ତିତିକ୍ଷା ଓ ଆତ୍ମାହୁତିର ମହାବାଣୀହିଁ ରୂପାୟିତ ହୋଇଛି ତାଙ୍କର କାବ୍ୟରେ—

"ନହୋଇ ବ୍ୟାକୁଳ ଗ୍ରାମହିତେ କୁଳ
ବରଜନ୍ତି ସାଧୁଜନ

ଦେଶହିତେ ଗ୍ରାମ, ଜଗତ କଲ୍ୟାଣେ
କର ଦେଶ ବିସର୍ଜନ ।" (୨)

---

(୨) କାରାରେ ଜଣେ ବନ୍ଧୁଙ୍କ ବିୟୋଗ ବାର୍ତ୍ତା ଶୁଣିଲା ପରେ (କାରାକବିତା ପୃ ୫୨)

(୩) କାରାରେ ଜଣେ ବନ୍ଧୁଙ୍କ ବିୟୋଗ ବାର୍ତ୍ତା ଶୁଣିଲା ପରେ (କାରାକବିତା ପୃ ୫୦)

(୪) ବିଶ୍ୱର ମିଳନ ଲକ୍ଷ (କାରାକବିତା ପୃ—୭୩)

(୨) ଧର୍ମପଦ (୭ମ ଭାଗ) ପୃ—୩୩

ଜୀବନର ଦୈନନ୍ଦିନ ରୂକ୍ଷତାରୁ ସେ ଅନ୍ୟମାନଙ୍କୁ ମାନବିକତାର ଊର୍ଦ୍ଧ୍ୱଦେଶକୁ ଉତ୍ତୋଳନ କରିନେଇଛନ୍ତି; ଯେଉଁଠାରେ କ୍ଷୁଦ୍ର ସ୍ୱାର୍ଥପରତାର କୁତ୍ସିତ ସଂଘର୍ଷ ନାହିଁ, ପରଶ୍ରୀକାତରତାର ପ୍ରତାରଣା ନାହିଁ, ଜାତିଗତର ଭେଦାଭେଦ ଜ୍ଞାନ ନାହିଁ, ଅର୍ଥର ଉତ୍କଟ ଜ୍ୱାଳାମୟୀ ଲିପ୍ସା ନାହିଁ, ସତ୍ୟର ଅପଲାପ ନାହିଁ, କିମ୍ବା ଘୋର ନାସ୍ତିକତା, ଶୂନ୍ୟ ଦାମ୍ଭିକତା ନାହିଁ । (୩) ଧର୍ମପଦର ପ୍ରାର୍ଥନା, ଧର୍ମପଦର ମୃତ୍ୟୁ, କବି ଗୋପବନ୍ଧୁଙ୍କର, ତ୍ୟାଗୀ ଗୋପବନ୍ଧୁଙ୍କର । ଏଥିରେ ଯେଉଁ ବିଶ୍ୱପ୍ରେମ ଆଦର୍ଶ ପ୍ରତିଫଳିତ ଓ ବିଶ୍ୱଚେତନା ପ୍ରସ୍ଫୁଟିତ ତାହା ଗୋପବନ୍ଧୁଙ୍କର ନିବିଡ଼ାନୁଭୂତି ପ୍ରସୂତ । ଏହି ପ୍ରାର୍ଥନାର ପ୍ରାଣେ ପ୍ରାଣେ ଈଶ୍ୱର ମହାପ୍ରଭୁ, ବିଶ୍ୱର ଏକୀଭୂତ ପ୍ରାଣ, ବିଶ୍ୱସଙ୍ଗୀତ ଲହରୀ ତଥା ବିଶ୍ୱରୂପ ଭଗବାନଙ୍କର ବିଶ୍ୱବ୍ୟାପକତା ସରସ, ସୁନ୍ଦର ସୁଷମ ଓ ଜୀବନ୍ତ ହୋଇ ଫୁଟି ଉଠିଛି । କବି ଗୋପବନ୍ଧୁ ଏହି ଚେତନାର ପ୍ରତିନିଧି । ସେ ଏକରେ ବହୁ, ବହୁରେ ଏକ, ତ୍ୟାଗରେ ଭୋଗ, ଭୋଗରେ ତ୍ୟାଗ ବ୍ୟକ୍ତରେ ଅବ୍ୟକ୍ତ ଓ ଅବ୍ୟକ୍ତରେ ପ୍ରକାଶ— ଏହି ନିସ୍ୱାର ବିଶେଷ ତତ୍ତ୍ୱକୁ ବିହ୍ୱଳ ବିମୁଗ୍ଧ ଦୃଷ୍ଟିରେ ଉପଲବ୍ଧି କରିଥିଲେ—ତାଙ୍କ ପାଖରେ ସଚରାଚର ପୃଥିବୀ ହୋଇ ଉଠିଛି ଏକ ପରିବାର ବୃକ୍ତ, ଏକପ୍ରାଣ, ଏକକ ଓ ଅଭିନ୍ନ । ଫଳରେ—

ଜଳସ୍ଥଳ ନଭ ହୋଇଲା ଏକ ଭାବ
ଲଭିଗଲା ଏକତା

ଅନନ୍ତ ଅଭେଦେ, ପରମ ନିର୍ବେଦେ
ବ୍ୟକ୍ତ ବିଶ୍ୱ ମହାସତ୍ତ୍ୱ (୪)

ଗୋପବନ୍ଧୁ ଥିଲେ ରାଜନୈତିକ ନେତା, ନବ ଓଡ଼ିଶାର ନିର୍ମାତା, ନବଯୁଗର ପ୍ରବର୍ତ୍ତକ । ଜାତୀୟ ଚେତନାର, ଅସହଯୋଗ ଆନ୍ଦୋଳନର ଜୟଧାରକୁ ଓଡ଼ିଶାରେ ସେ ହିଁ ପ୍ରଥମେ ଆବାହନ କରିଥିଲେ । ସେ ହିଁ ଏ ଜାତିର ଯଥାର୍ଥ ଉନ୍ନତିରଥ, ସେ କେବଳ ବ୍ୟକ୍ତିବିଶେଷ ନଥିଲେ; ଥିଲେ ଏକ ବଳିଷ୍ଠ ବହୁମୁଖୀ ଜାତୀୟ ଅନୁଷ୍ଠାନ—ଏକ ଦେଶପ୍ରେମମାନ ଚରିତ୍ର ଜଳଧାର । ଯାହାର ସାମାନ୍ୟତମ ସ୍ପର୍ଶ ବ୍ୟକ୍ତି ଓ ଜାତିର ଜୀବନରେ ଆଣିଥିଲା ଅଭିନବ ପରିବର୍ତ୍ତନ । କିନ୍ତୁ ନେତୃତ୍ୱର ସାମାନ୍ୟତମ ଅହମିକା ତାଙ୍କୁ ସ୍ପର୍ଶ କରିନଥିଲା । ତାଙ୍କର ରାଜନୀତି ନଥିଲା ଭୋଗ ସର୍ବସ୍ୱ; ଥିଲା ତ୍ୟାଗପୂତ, ସେବାସର୍ବସ୍ୱ; ନଥିଲା ଅହଂକୈନ୍ଦ୍ରିକ ଥିଲା ବିଶ୍ୱକୈନ୍ଦ୍ରିକ । ଶାସନଗାଦି ବା କ୍ଷମତାଲୋଭ ଲାଗି ସେ ରାଜନୀତି କରି ନଥିଲେ; ମଣିଷର ମଙ୍ଗଳ ଲାଗି, ଜନତା-ଜନାର୍ଦ୍ଦନର ସେବାପାଇଁ ସେ ରାଜନୀତିର କଣ୍ଟକିତ ପଥ ଅମ୍ଳାନ ବଦନରେ ବରଣ କରି ନେଇଥିଲେ । ତହିଁରେ ଈର୍ଷାଦ୍ୱେଷ, ହିଂସା ଅସୂୟା, ପ୍ରତିଶୋଧ ପ୍ରତିହିଂସାର ପିପାସା ନଥିଲା । ମାତୃଭୂମିର ମୁକ୍ତି ସକାଶେ ତାହା ଥିଲା ପୂର୍ଣ୍ଣତୋଷା ଆତ୍ମାହୁତିର ପ୍ରସ୍ତୁତି । ସେ ଥିଲେ ମୁକ୍ତିଯୁଦ୍ଧର ସୈନିକ, ରାଜନୈତିକ ବୈରାଗୀ । ଅବର୍ଣ୍ଣନୀୟ ସଂସାର ଜଞ୍ଜାଳ, ପାରିବାରିକ-ସାଂସାରିକ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ, ସମ୍ମାନ-ପ୍ରତିପତ୍ତି ଲାଳସାକୁ ସେ ବିସର୍ଜ୍ଜନ ଦେଇଥିଲେ । ଭାରତର ସ୍ୱାଧୀନତା ସଂଗ୍ରାମରେ ସେ ନିଜକୁ ସାମିଲ୍ କରିଥିଲେ ଓ ମହାତ୍ମାଙ୍କ ଜାତୀୟ ଚେତନାରେ ଉତ୍କଳ-ପ୍ରବାହକୁ ନେଇ ମିଳାଇ ଦେଇଥିଲେ । ତାଙ୍କର ଧ୍ୟାନ ଥିଲା 'ସ୍ୱରାଜ୍ୟସାଧନ', ଭାରତ ଏବଂ ଦେଶର କଲ୍ୟାଣ, ଉତ୍କଳ ଏବଂ ତା'ର ସନ୍ତାନ, ଭାଷା, ସାହିତ୍ୟର ଉନ୍ନତି, ମାନବ ମନରେ ଦେବତ୍ୱର ବିକାଶ— ଏହାହିଁ ଥିଲା ତାଙ୍କର ରାଜନୀତି । ତାଙ୍କର କଣ୍ଠସ୍ୱର ଥିଲା ଅତି ଦୃଢ଼ ଓ ଉଦ୍ଦେଶ୍ୟ ଥିଲା ନିର୍ଦ୍ଦିଷ୍ଟ—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ

ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼

ମୋ ଜୀବନ ଦାନେ ଚାଲେ ହେଲେ ନର
ସ୍ୱାଧୀନତା ପଥେ ହେଉ ଅଗ୍ରସର (୫)

ରାଜନୈତିକ ଚେତନା ଓ ସ୍ୱଦେଶ ପ୍ରେମର ପରିପ୍ରକାଶ ଓ ପରିପ୍ରସାର ଥିଲା ସତ୍ୟବାଦୀର ସାଧକମାନଙ୍କର ଲକ୍ଷ୍ୟ । ସରଳ ଭାଷା ଓ ସହଜ ସ୍ୱତଃସ୍ଫୂର୍ତ୍ତ ପ୍ରକାଶଭଙ୍ଗୀ ମାଧ୍ୟମରେ ନିଜ ସଂଗ୍ରାମୀ ଜୀବନର ଅନୁଭୂତ ବର୍ଣ୍ଣନା କରି ନୂଆ ଆଦର୍ଶରେ ଦେଶବାସୀଙ୍କୁ ଅନୁପ୍ରାଣିତ କରିବା ଥିଲା ଗୋପବନ୍ଧୁଙ୍କର ଉଦ୍ଦେଶ୍ୟ । ମୂକ ଜନତାର, ମୂକଯୁଗର ଅବ୍ୟକ୍ତ ଅବଦମିତ କଣ୍ଠର ବାଣୀ ହିଁ ତାଙ୍କର ଲେଖନୀ ମୁନରେ ରୂପାୟିତ ହୋଇଛି । ରାଜନୈତିକ ଚିନ୍ତାଧାରାକୁ, ସାହିତ୍ୟରେ ରୂପାନ୍ତରିତ କରି ତା'ରି ମାଧ୍ୟମରେ ଲୋକ ସମାଜରେ ଜାଗରଣ ଆଣିବାରେ ଗୋପବନ୍ଧୁ ଥିଲେ ଧୁରନ୍ଧର । ତେଣୁ ତାଙ୍କର କବିତାର ପଂକ୍ତି ଏ ଦେଶରେ ଅବହେଳିତ ଜନତାର ପ୍ରାଣରେ ତଡ଼ିତ୍‌ର କମ୍ପନ ଓ ଶିରେରେ ଶିହରଣ ସୃଷ୍ଟି କରି ପାରିଛି ।

(୩) କବି ଗୋପବନ୍ଧୁ ପୃ—୨୦୭

(୪) ଧର୍ମପଦ ପୃ—୪୫ (୧ମ ଭାଗ)

(୫) ବ୍ୟକ୍ତିତ୍ୱ ଗୋପବନ୍ଧୁ— ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ

ବ୍ୟବସ୍ଥାପକ ସଭାରେ ସେ ଥିଲେ, କୋଟିକରେ ଗୋଟିଏ (୨) ଇଂରାଜୀ ଆଇ. ସି. ଏସ୍. ଅଫିସର ତାଙ୍କ ଭାଷଣ ଶୁଣି ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ବାଲ୍‌ଫୋର୍‌ଙ୍କ ବକ୍ତୃତା ପରି ମନେ କରିଥିଲେ । ବିହାର ଓଡ଼ିଶାର ଲାଟ୍‌ସାହେବଙ୍କୁ ଗୋପବନ୍ଧୁ-ବିଧାନ ବ୍ୟବସ୍ଥା ପରିଷଦ ହିଁ ଭଲ ଲାଗିନାହିଁ । (୩) ତାଙ୍କର ଅସାଧାରଣ ବାଗ୍ମିତା, ବିଚକ୍ଷଣ ଯୁକ୍ତି, ନିର୍ଭୀକ ସତ୍ୟ ପ୍ରକାଶ, ତେଜସ୍ୱିତା ଓ ସ୍ପଷ୍ଟବାଦିତା ସଂପ୍ରତିକ ରାଜନୈତିକ ଜୀବନରେ ଏକ ବହୁ ଦୁର୍ଲଭ ସ୍ୱପ୍ନ । ତେଣୁ ମଧୁସୂଦନ ରାଓଙ୍କ "କୋଟିଏ ସନ୍ତାନ ମାଗୋ ଧରିଅଛୁ କୋଳେ । ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲି ତୋଳେ" ପଂକ୍ତିକୁ ସଂଶୋଧନ କରି "ଗୋଟିଏ ମନୁଷ୍ୟ ଆଜି ଦେଖିଲି ମୁଁ ତୋଳେ" ବୋଲି ପଢ଼ିବାକୁ କୁଳବୃଦ୍ଧ ମଧୁସୂଦନ ଯେଉଁ ମତାମତ ଦେଇଥିଲେ, ତାହା ଥିଲା ଗୋପବନ୍ଧୁଙ୍କୁ ଲକ୍ଷ୍ୟକରି । ସେହି ଗୋପବନ୍ଧୁ ହିଁ କେବଳ ତତ୍କାଳୀନ ଇଂରାଜୀ ଲାଟସାହେବଙ୍କୁ କୁହାଇ ପାରିଥିଲେ "What ought to have been done, has not been done". ଏହା କିଛି କମ୍ କଥା ନୁହେଁ ।

ତାଙ୍କ ରାଜନୀତି ଥିଲା ସକାଳର ସୂର୍ଯ୍ୟପରି ସତ୍ୟ, ଅଗ୍ନିର ଶିଖାପରି ଶୁଦ୍ଧ, ଗଙ୍ଗାର ସ୍ରୋତ ପରି, ପବିତ୍ର, କୁଟ କପଟତାପୂର୍ଣ୍ଣ ଧୂର୍ତ୍ତତା, ମିଥ୍ୟା ପ୍ରତାରଣାସର୍ବସ୍ୱ କୂଟନୀତି, ଛଳନା ପ୍ରବଞ୍ଚନାର ସ୍ପର୍ଶ ମାତ୍ର ତାଙ୍କ ରାଜନୀତିରେ ନଥିଲା ! ତାହା ଥିଲା ଧର୍ମ, ପ୍ରେମ ଓ ତ୍ୟାଗରେ ଅଭିମଣ୍ଡିତ । ସତ୍ୟ-ରୂପକ ଅଗ୍ନିରେ ହୃଦୟକୁ ପ୍ରଜ୍ୱଳିତ ନକଲେ ଦେବତ୍ୱର ପ୍ରତିଷ୍ଠା ନରପ୍ରାଣରେ ଅସମ୍ଭବ । ସାର୍ବଜନୀନ ପ୍ରେମରେ ଉଦ୍‌ବୁଦ୍ଧ ନହେଲେ ଭାରତର ମୁକ୍ତି ଆନ୍ଦୋଳନରେ ସାଫଲ୍ୟ ଲାଭର ଆଶା ସୁଦୂର ପରାହତ । ଏହା ହିଁ ଥିଲା ଗୋପବନ୍ଧୁଙ୍କ ରାଜନୀତିର ମୂଳତତ୍ତ୍ୱ । ତେଣୁ ତାଙ୍କର ନିର୍ଦ୍ଦେଶ—

"ମାନବ ଜୀବନ ନୁହେଁ ମିଥ୍ୟା ଭାଣ
କିବା କୂଟନୀତି କୌଶଳ ପ୍ରଧାନ ।
ଏ ଜୀବନ ତତ୍ତ୍ୱ ଶୁଦ୍ଧ ସାରତତ୍ତ୍ୱ
ତତ୍ତ୍ୱ ଅନୁବନ୍ଧ ମାନବର ସତ୍ତ୍ୱ
ଯା ଜୀବନ ଗତି ତତ୍ତ୍ୱ ଅଭିମୁଖୀ
ସେହି ଏକା କୃତୀ, ସେହି ଏକା ସୁଖୀ (୧)

ମାନବ ଜୀବନ ସଂପର୍କରେ ଏହି ମହାସ୍ଥାନ୍ ଓ ଉଦାର ତତ୍ତ୍ୱ ସମ୍ବନ୍ଧରେ ଗୋପବନ୍ଧୁଙ୍କର ମତାମତ ଏକ ଚିରନ୍ତନ ସତ୍ୟ । ରାଜନୀତି, ସମାଜନୀତି ଓ ସାହିତ୍ୟ ଚର୍ଚ୍ଚା ସମସ୍ତ କ୍ଷେତ୍ରରେ ଏହି ତତ୍ତ୍ୱର ଗଭୀର ପ୍ରୟୋଜନ । ଆଜିର ରାଜନୈତିକ ଜୀବନ ଏହି ଶୁଦ୍ଧ ସାରତତ୍ତ୍ୱ ଅଭାବରେ ଦୂଷିତ, ଦୁର୍ନୀତିଗ୍ରସ୍ତ ଓ ଦୁର୍ବିସହ ହୋଇଉଠିଛି । ଗୋପବନ୍ଧୁ ତେଣୁ ନେତୃତ୍ୱର ଅହଙ୍କାର, ରାଜନୈତିକ ଉଚ୍ଚାକାଂକ୍ଷା, କ୍ଷମତାମୋହର କାରସାଦିଠାରୁ ଅନେକ ଦୂରରେ ଥାଇ ଜନତା-ଜନାର୍ଦ୍ଦନର ହିତସାଧନ ନିମନ୍ତେ ଏକ ଉତ୍ସର୍ଗୀକୃତ ଜୀବନ ଯାପନ କରୁଥିଲେ । ନେତା ଓ ନୀତି ମଧ୍ୟରେ କୌଣସି ପାର୍ଥକ୍ୟ ସେ ଦେଖିନାହାନ୍ତି, ବରଂ କର୍ମ ଭୂମିରେ ସମସ୍ତେ ନିମିତ୍ତ ମାତ୍ର । ଉତ୍କଳରେ ସେ ଥିଲେ ସ୍ୱରାଜ୍ୟମନ୍ତ୍ରର ପ୍ରଥମ ବାର୍ତ୍ତାବହ, ଅସହଯୋଗ ଆନ୍ଦୋଳନର ପ୍ରଥମ ପୁରୋଧା ଓ ପ୍ରବର୍ତ୍ତକ । ସେଥିଲାଗି କିନ୍ତୁ ତାଙ୍କ ମନରେ ତିଳାର୍ଦ୍ଧେ ମାତ୍ର ଅଭିମାନ ବା ଗର୍ବ ନଥିଲା । ନିଜର ସକଳ କୃତିତ୍ୱକୁ ସେ ବନ୍ଧୁପ୍ରୀତି ଓ ଆତ୍ମ-ପ୍ରସାରରେ ମ୍ଳାନ ଓ ଲୀନ କରି ଦେଇଛନ୍ତି । ତେଣୁ ଏହି ସରଳପ୍ରାଣ ନିଃସ୍ୱାର୍ଥପର ନେତା ଯେତେବେଳେ ନିଜର ରାଜନୈତିକ ସହକର୍ମୀମାନଙ୍କ ଦ୍ୱାରା ପରବର୍ତ୍ତୀକାଳରେ ସମାଲୋଚିତ ହୋଇଛନ୍ତି, ସେତେବେଳେ ବ୍ୟଥାବିଗଳିତ ପ୍ରାଣରେ ସେ ପ୍ରଶ୍ନ କରିଛନ୍ତି—

"ଜୀବନ କି ଖାଲି ନିସ୍ୱାର୍ଥର ବାଲି
ମରୁ ମରୀଚିକା ସେନେହ ପ୍ରୀତି

ତେବେ କି ଆଶାରେ କହ ଏ ସଂସାରେ
ପରଲାଗି ନର ମରୁଛି ନୀତି"

* * *

ଶତ ଆବର୍ଜ୍ଜନା ସହସ୍ର ତାଡ଼ନା,
କିବା ଶତ ସିନ୍ଧୁ ସୁମନହାର
ଏ ପ୍ରେମ କଲ୍ଲୋଳେ ସମାନ ସକଳେ
ପରମ ସାଦର ସ୍ନେହ ସମ୍ଭାର (୨)

(୧) ବନ୍ଦୀର ଆତ୍ମକଥା (୧ମ ଭାଗ ପୃ—୨)

(୩) କବି ଗୋପବନ୍ଧୁ—ପୃ—୧୯୦, ଅଧ୍ୟାପକ ଚନ୍ଦ୍ରମଣି ଦାସ

(୧) ବନ୍ଦୀର ଆତ୍ମକଥା—ପୃ :୧୯

(୨) ବ୍ୟଥିତ ପ୍ରାଣର ଆତ୍ମମ ଅଶ୍ରୁ (କାରାକବିତା ପୃ :୨)

ଏଥିରେ ନାହିଁ ରାଜନୀତିର କୁଟିଳ, ଚକ୍ରୁଳ ବାକ୍ଚାତୁରୀ, ଏଥିରେ ଫୁଟି ଉଠିଛି ସରଳ ତରଳ ମାନବାତ୍ମାର ବ୍ୟାକୁଳ ଆର୍ତ୍ତବାଣୀ ! କବି ଗୋପବନ୍ଧୁଙ୍କର ହୃଦୟ ବିଶ୍ୱପ୍ରେମର ଏକ ଉତ୍ସ ଅଥଚ ପାରାବାର—ତହିଁରେ ରାଜନୈତିକ ଜୀବନର ସମସ୍ତ ଆବର୍ଜନା, ଲାଞ୍ଛନା, ରୁକ୍ଷତା ଓ ହୀନତା ମୁହୂର୍ତ୍ତକ ମଧ୍ୟରେ ମଗ୍ନ ହୋଇ ଯାଉଛି । ମାନବିକତା ପରିପ୍ଳୁତ ବିଶ୍ୱପ୍ରୀତି ଓ ବିଶ୍ୱଦେବତ୍ୱବୋଧ ତାଙ୍କ ରାଜନୈତିକ ଜୀବନ ଗତିଧାରାକୁ ନିୟନ୍ତ୍ରିତ କରିଅଛି ।

ଗୋପବନ୍ଧୁ ଥିଲେ ଅନ୍ୱେଷକ । ଜୀବନ ବ୍ୟାପି ସେ ଦ୍ୱାରରୁ ଦ୍ୱାରକୁ, ବ୍ୟକ୍ତିଠାରୁ ବ୍ୟକ୍ତି ନିକଟକୁ ବୁଲିବୁଲିଛନ୍ତି । ତାଙ୍କ ମନପ୍ରାଣରେ ଚିରନ୍ତନ ଅନ୍ୱେଷାର ଯେଉଁ ଶୁଭ ଶଙ୍ଖ ଧ୍ୱନିତ ହେଉଥିଲା, ତାହାର ଆହ୍ୱାନରେ ସେ ଆଗକୁ ଆଗକୁ ଅଗ୍ରସର ହୋଇଛନ୍ତି; ଧୂଳିମାଟିର ଧୂସର ଧରଣୀରେ ସତ୍ୟ ଶିବ ସୁନ୍ଦରର ଚିନ୍ମୟ ସ୍ୱରୂପ ଅନ୍ୱେଷଣ କରିଛନ୍ତି, ରକ୍ତମାଂସର ରୁକ୍ଷ ମାନବ ଶରୀରରେ ଦେବତାର ଦ୍ୟୁତି ସନ୍ଧାନ କରିଛନ୍ତି ଏବଂ ନୈରାଶ୍ୟ ନିର୍ଯ୍ୟାତନାର ମସିମୟ ଅନ୍ଧକାର ମଧ୍ୟରେ ଖୋଜିଛନ୍ତି ଆଶା, ଆନନ୍ଦ ଓ ଅମୃତର ଆଲୋକ ଶିଖା । ଯେତେବେଳେ ମାନବଜାତି ହିଂସାଦ୍ୱେଷ, ଈର୍ଷାଅସୂୟାର ଅନ୍ଧକାର ମଧ୍ୟରେ ପଥଭ୍ରଷ୍ଟ; ସ୍ୱାର୍ଥ, ସୁଖ ସମ୍ଭୋଗ ଲାଳସାରେ ନଷ୍ଟଚକ୍ଷୁ, ସେତେବେଳେ ତାଙ୍କର ପ୍ରାର୍ଥନା—

"ହେ ଦିବ୍ୟ ଅଞ୍ଜନ, ପ୍ରଭୁ ନିରଞ୍ଜନ
ଦିଅ ଏ ନୟନରେ ବାରେ ହେ
ତବ ଜ୍ୟୋତି ରେଖା ହେଉ ପଥେ ଦେଖା
ଅଛି ଅମା ଅନ୍ଧକାରେ ହେ (୩)

ପ୍ରେମବାଦୀ କବି ଏଠାରେ ପ୍ରେମକୁ ମାନବୀୟ ସ୍ତରରୁ ଊର୍ଦ୍ଧ୍ୱକୁ ଉନ୍ନୀତ କରାଇ ଆଧ୍ୟାତ୍ମିକ ବିଶ୍ୱାସରେ ଓ ଭକ୍ତିରେ ରୂପାୟିତ କରିଛନ୍ତି । ତାହାର ପ୍ରାବଲ୍ୟରେ ଅନୈତିକତା, ଅସାରତା, ଆବିଳତା କିମ୍ବା ଛଳନା, କାହାର ସ୍ଥିତି ସମ୍ଭବ ନୁହେଁ । ଏହା ପବିତ୍ର, ମଂଗଳମୟ ଓ ମହିମମୟ । ଏହି ଜ୍ୟୋତି-ରେଖାର ସ୍ପର୍ଶରେ ମର୍ତ୍ତ୍ୟ ଚର୍ମ ଚକ୍ଷୁରେ ମଧ୍ୟ ଦିବ୍ୟାନନ୍ଦମୟ ଶାଶ୍ୱତ ଜ୍ୟୋତିଧାରାକୁ ଅବଲୋକନ କରେ ।

ଗୋପବନ୍ଧୁ ଥିଲେ ଆତ୍ମସମାଲୋଚକ । ନିଜର ପ୍ରତ୍ୟେକ କାର୍ଯ୍ୟକଳାପ ଓ ନିଜ ଜୀବନର ପ୍ରତିଟି ଘଟଣାକୁ ସେ ତନ୍ନ ତନ୍ନ କରି ବିଚାର କରିଛନ୍ତି । ରାଜନୀତି କ୍ଷେତ୍ରରେ ଯେଉଁ ପନ୍ଥା ଅବଲମ୍ବନ କରିଥିଲେ, ତାହାର ଯଥାର୍ଥତା ସମ୍ବନ୍ଧରେ ମନରେ ଦୃଢ଼ ବିଶ୍ୱାସ ଆଣିବାପାଇଁ ସେ ନାନା ବିଷୟର ଆଲୋଚନା ପୂର୍ବକ ନିଜ ନିଷ୍ପତ୍ତିର ନିର୍ଭୁଲତା ପ୍ରତିପାଦନ କରିଛନ୍ତି । କୌଣସି ଚିନ୍ତା ବା କାର୍ଯ୍ୟରେ କିଛି ତ୍ରୁଟି ବା ବିଚ୍ୟୁତି ହେଲା କି ନାହିଁ; ତାହା ସେ ନିଜକୁ ନିଜେ ବାରମ୍ବାର ପ୍ରଶ୍ନ କରି, ସନ୍ତୋଷଜନକ ଉତ୍ତର ନ ପାଇଲା ପର୍ଯ୍ୟନ୍ତ ଆଉ ସେ ଦିଗରେ ଅଧିକ ଅଗ୍ରସର ହୋଇ ନାହାନ୍ତି । ଏହି ଦୃଷ୍ଟିକୋଣ ଫଳରେ ତାଙ୍କର ପ୍ରତ୍ୟେକ ଚିନ୍ତା ଓ କାର୍ଯ୍ୟ ନିର୍ମଳ ଓ ଦୋଷଶୂନ୍ୟ ହୋଇପାରିଛି । ସେ ନିଜକୁ ନିଜେ ପଚାରିଛନ୍ତି "ମୁଁ କି ଦୋଷୀ" ? ତାଙ୍କର ଅନ୍ତର୍ଗତ ଆତ୍ମାରୁ ଉତ୍ତର ଆସିଛି "ନାହିଁ ନାହିଁ ନାହିଁ ।" ଏ ଅଟଳ ଆତ୍ମ ବିଶ୍ୱାସ, କେବଳ ଗୋପବନ୍ଧୁଙ୍କ ଭଳି ଜଣେ ଶୁଦ୍ଧମନା ସିଦ୍ଧ ସାଧକଙ୍କ ନିକଟରେ ହିଁ ସମ୍ଭବପର । ସ୍ୱୀୟ ରାଜନୈତିକ ଅଭିମୁଖ୍ୟ ସମ୍ପର୍କରେ ତାଙ୍କର ବିଶ୍ଳେଷଣ ଅଧିକ ମର୍ମସ୍ପର୍ଶୀ । ଭାରତୀୟ ଜନତାର ଲାଞ୍ଛନା, ନିର୍ଯ୍ୟାତନା, ଦୈନ୍ୟ ଦୁର୍ବିପାକ, ତାଙ୍କର ହୃଦୟକୁ କରିଛି ବିଚଳିତ ଓ ବିଗଳିତ । 'ରାଜତନ୍ତ୍ର'ର ଯେଉଁ କରୁଣ ଅଧଃପତନ ଭାରତ ଭୂମିରେ କୋଟି ଜନତାର ନୟନରୁ ଅବାରିତ ଅଶ୍ରୁ ସ୍ରୋତ ଛୁଟାଇ ଦେଇଛି, ତାହାହିଁ ତାଙ୍କୁ କରିଛି ବିପ୍ଳବୀ । ଯେଉଁ ଆର୍ଯ୍ୟଭୂମିର ରାଜଧର୍ମ ପ୍ରଜାରଞ୍ଜନ, ଯାହାକି ରାମଚନ୍ଦ୍ର, ହରିଶ୍ଚନ୍ଦ୍ର, ଦିଲ୍ଲୀପ, ଅଶୋକ ପ୍ରଭୃତି ପ୍ରଥିତଯଶା ନରପତିମାନଙ୍କ ଦ୍ୱାରା ସୁପ୍ରତିଷ୍ଠିତ, ସେ ଭୂମିରେ ରାଜତନ୍ତ୍ରର ନୈତିକ ସ୍ଖଳନହିଁ ଗୋପବନ୍ଧୁଙ୍କୁ ରାଜନୀତିର ଉତ୍ଥାନ-ପତନମୟ ଉପଦବନ୍ଧୁର ପରିସର ମଧ୍ୟକୁ ଟାଣି ନେଇଛି । ଯେଉଁ ଭାରତ ଭୂମିରେ—

'ରାଜପଦ ଅର୍ଥ ଯହିଁ ପରଜା ରଞ୍ଜନ
ସହେ ପ୍ରଜା ତହିଁ ଏବେ କି ଗୁରୁ ଗଞ୍ଜନ
ରାଜଧର୍ମ, କ୍ଷାତ୍ରଧର୍ମ ଛରିଁ କରେ ତ୍ରାଣ
ରାଜନୀତି ଲୁଟେ ଯେବେ ଛଳ ପ୍ରଜାପ୍ରାଣ" (୧)

ଜନନୀ ଜନ୍ମଭୂମିର ଦୁରବସ୍ଥା, ଦେଶବାସୀଙ୍କର ବିକଳ ଜୀବନ ଧାରା ତାଙ୍କ ପ୍ରାଣରେ ଦାରୁଣ ଦୁଃଖ ଦେଇଛି । ଯେଉଁ ଦେଶବାସୀଙ୍କର ଦୁର୍ଦ୍ଦଶା ଦର୍ଶନରେ ମହାତ୍ମା ଗାନ୍ଧୀ ଅନଶନରେ ପ୍ରାଣତ୍ୟାଗ କରିବାପାଇଁ ଇଚ୍ଛା କରିଥିଲେ (୨) ସେହି ଦୁର୍ଦ୍ଦଶା ଓ ଦୁର୍ଦ୍ଦିନର ଅବସାନ ପାଇଁ ଗୋପବନ୍ଧୁ ରାଜନୈତିକ ଅହିଂସ-ଅସହଯୋଗ ଆନ୍ଦୋଳନରେ ଯୋଗ

(୩) କାହିଁ ଅଛୁ (କାରାକବିତା ପୃ :୨)

(୧) ପିତୃମନ୍ତ୍ର ତର୍ପଣ (କାରାକବିତା ପୃ: ୧୦)

(୨) ଦେଖିଣ ମହାତ୍ମା କାତର ଅନ୍ତରେ....ଅନଶନେ ଅଛି ତେଜନ୍ତି ଜୀବନ—ବନ୍ଦୀର ଆତ୍ମକଥା ପୃ: ୨୦ ।

ବେଇଛନ୍ତି ଓ ବାର ବାର କାରାବରଣ କରିଛନ୍ତି । ନିଜର ପ୍ରତିଟି କର୍ମଯୋଜନାର ଉଦ୍ଦେଶ୍ୟ ଦେଶବାସୀଙ୍କ ନିକଟରେ ସଠିକ୍‌ଭାବରେ ପହଞ୍ଚାଇ ସେମାନଙ୍କୁ ସ୍ୱକୀୟ ଆଦର୍ଶରେ ଉଦ୍‌ବୁଦ୍ଧ କରିବା ନିମନ୍ତେ ଓ ନିଜ କର୍ମପନ୍ଥାର ଯଥାର୍ଥତା ପ୍ରତିପାଦନ ଉଦ୍ଦେଶ୍ୟରେ ସେ ନିଜର କବିତ୍ୱ ଶକ୍ତିକୁ ଏକ ବଳିଷ୍ଠ ମାଧ୍ୟମରୂପେ ବ୍ୟବହାର କରିଛନ୍ତି । ତାଙ୍କର ଅଟଳ ସଂକଳ୍ପ, ଦୃଢ଼ନିଷ୍ଠା ଓ ଉଦାର ଦୃଷ୍ଟିକୋଣ ତାଙ୍କ କବିତାରେ ପ୍ରତିଫଳିତ । ଯେଉଁ ଆଦର୍ଶ ଓ ଉଦ୍ଦେଶ୍ୟରେ ଉଦ୍‌ବୁଦ୍ଧ ହୋଇ ସେ କାରାକ୍ଳେଶ ବରଣ କରିଛନ୍ତି ତାହାର ପରିଚୟ ତାଙ୍କ କବିତାରେହିଁ ପ୍ରମାଣିତ । କାରଣ—

''ମାନବ କର୍ତ୍ତବ୍ୟ ଜ୍ଞାନ ଥିବ ଯା'ର ଲେଶ
ଅନୁଭବେ ଅନ୍ତରେ ସେ ମୋ ଜାତି ଦେଶ
ଅହିଂସାରେ ଶାନ୍ତିପଥେ ଏଥି ପ୍ରତିବାଦ
କରେ ଯେବେ ସେହି ତା'ର କିବା ଅପରାଧ'' (୩)

ଏକ ପରାଧୀନ, ଆତ୍ମ ମର୍ଯ୍ୟାଦାହୀନ ଦେଶର ଦାସ୍ୟାଦ ଭାବରେ ଗୋପବନ୍ଧୁ ଗଭୀର ଆତ୍ମଗ୍ଲାନିରେ ମର୍ମାହତ ହୋଇ ପିତୃପୁରୁଷଙ୍କୁ ତର୍ପଣ ପ୍ରଦାନ କରିଛନ୍ତି । ଯେଉଁ ସନ୍ତାନ ଅତୀତ-ଗୌରବ-ଗରିମା ସମ୍ମାନ-ସମ୍ପଦକୁ ଅବହେଳାକରି ନିଜର ସଂକୀର୍ଣ୍ଣ ସ୍ୱାର୍ଥସିଦ୍ଧିରେ ନିମଗ୍ନ ହୁଏ, ସେ ଜାତି ଓ ଦେଶର କଳଙ୍କ । କିନ୍ତୁ

''ସେହି ଏକା ସୁସନ୍ତାନ କୁଳର ଗୌରବ
ଅଣେ ଯେ ଫେରାଇ ପୁଣି ଅତୀତ ବିଭବ'' ।

(୧) ଏହି ପବିତ୍ର ଆଦର୍ଶରେ ଅନୁପ୍ରାଣିତ ହୋଇ 'ସୁସନ୍ତାନ'ର ଉପଯୁକ୍ତ କର୍ତ୍ତବ୍ୟ ପାଳନ ନିମନ୍ତେ ଗୋପବନ୍ଧୁଙ୍କର ରାଜନୀତିରେ ପ୍ରବେଶ ଓ କାରାବରଣ । ତେଣୁ ଗୋପବନ୍ଧୁଙ୍କ ସାହିତ୍ୟରେ ଏ ଜାତିର ଗୌରବମୟ ଅତୀତ ଓ ପରମ୍ପରା ପ୍ରତି ପୂରେଦୃଷ୍ଟି ଅତି ସ୍ପଷ୍ଟ ଓ ଉଜ୍ଜ୍ୱଳ । ପ୍ରାଚୀନ ଗୌରବର ପୁନଃ ପ୍ରତିଷ୍ଠା, ପ୍ରାଚୀନ କଳା ଓ ସ୍ଥାପତ୍ୟର ଉଦ୍ଧାର, ପ୍ରାଚୀନ ପରମ୍ପରାର ପୁନରୁତ୍‌ଥାନ ନୈତିକତା ଓ ଆର୍ଯ୍ୟ [ଜୀବନଧାରାରେ ଆଧୁନିକ ଜୀବନର ପୁନର୍ଗଠନ ଏ ସାହିତ୍ୟର ପ୍ରାଣବାଣୀ (୨) ଅତୀତ ପ୍ରଶଂସା ଦୃଷ୍ଟିଭଙ୍ଗୀ ନେଇ ସେ ଉତ୍କଳର କୀର୍ତ୍ତି-କଳା-ଶୌର୍ଯ୍ୟର ଯେପରି ଅବତାରଣା କରିଛନ୍ତି, ସେହିପରି ମଧ୍ୟ ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଥିବା ମହାପୁରୁଷମାନଙ୍କର ସ୍ମୃତି ସ୍ମରଣକରି ସେମାନଙ୍କ ପ୍ରତି ସାରସ୍ୱତ-ଅର୍ଘ୍ୟ ନିବେଦନ କରିଛନ୍ତି । ''ଉତ୍କଳର ବ୍ୟାସ ଜଗନ୍ନାଥ ଦାସ'' କବିକୁଳକଣ୍ଠ ଉପେନ୍ଦ୍ର ଭଞ୍ଜ'' ''ଉତ୍କଳ-ଭରଦ୍ୱାଜ ଶମ୍ଭୁକର ବାଜପେୟୀ, ଖୁର୍ଦ୍ଦାମୁକୁଟ ସାରଳା ଦାସ, କ୍ଷେତ୍ରକୁଳ ଧୂମକେତୁ ଶ୍ରୀପୁରୁଷୋତ୍ତମ ପ୍ରଭୃତି ଜାତୀୟ-ବୀରମାନଙ୍କର ସାଧନାସିଦ୍ଧ ଜୀବନର ଲଳିତ-ମଧୁର, ଭାବ-ଗମ୍ଭୀର କାବ୍ୟରୂପ ଉପସ୍ଥାପନ କରିଛନ୍ତି । ଅତୀତର ପ୍ରେରଣାରେ 'ବର୍ତ୍ତମାନ'କୁ ଉଜ୍ଜ୍ୱଳ ଓ ଉନ୍ନତ କରିବାହିଁ ଥିଲା ତାଙ୍କର ଲକ୍ଷ୍ୟ । ତେଣୁ ମଧୁସୂଦନଙ୍କ ପରି (୩) ଜାତୀୟ ଇତିହାସରୁ ଶକ୍ତି ଓ ସ୍ଫୂର୍ତ୍ତି ଆହରଣକରି ଜାତୀୟ-ଚରିତ୍ର ଗଠନ ନିମନ୍ତେ ଉଦ୍ୟମ କରିଛନ୍ତି । ତାଙ୍କ ମତରେ—

''ପୂର୍ବ ପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ
ମାନବ ଜୀବନ ହୁଅଇ ସଫଳ
ଏ ମହାଶିକ୍ଷା କି ବୁଝିବ ଉତ୍କଳ'' (୪)

ଉତ୍କଳ ଓ ଉତ୍କଳବାସୀ ଏ ମହାଶିକ୍ଷାରେ କେତେଦୂର ଅନୁପ୍ରାଣିତ ହେଲେ କି ନହେଲେ ତାହା ଭିନ୍ନ କଥା, କିନ୍ତୁ 'ଇତିହାସ'କୁ ଭାବଦୃଷ୍ଟିରେ ଦେଖି, ସେଇ ଆଦର୍ଶରେ ଜାତୀୟଜୀବନକୁ ଗଠନ କରିବାର ପରିକଳ୍ପନା ଗୋପବନ୍ଧୁଙ୍କ ସାହିତ୍ୟରେହିଁ [ପ୍ରଥମଥରପାଇଁ ଅତି ସ୍ପଷ୍ଟ ଓ ପ୍ରାଞ୍ଜଳ ଭାବରେ ଫୁଟି ଉଠିଛି । ଦେଶ, ଜାତି ଓ ଜନତାପାଇଁ ଅଶ୍ରୁତର୍ପଣ, କାରାବରଣ, ସାହିତ୍ୟସାଧନ ଭଳି ଇତିହାସର ରୋମନ୍ଥନ ମଧ୍ୟ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ଦିଗ । ଗୋପବନ୍ଧୁଙ୍କ ଏହି 'ମହାଶିକ୍ଷା' ହିଁ ସମଗ୍ର ଭାବରେ ସମସାମୟିକ ସାହିତ୍ୟ ସୃଷ୍ଟିର ମୂଳସୂତ୍ର । ସତ୍ୟବାଦୀର ଲେଖକମଣ୍ଡଳୀ ଉତ୍କଳର ପ୍ରାଚୀନ କମ୍ବଦନ୍ତୀ ଓ ଇତିହାସର ଅନୁସରଣକରି ଏବଂ ଦେଶର ଅତୀତ ଇତିହାସରୁ ପ୍ରେରଣା

---

(୩) ପିତୃପକ୍ଷ ତର୍ପଣ (କାରାକବିତା ପୃ : ୧୪)

(୧) ପିତୃପକ୍ଷ ତର୍ପଣ (କାରାକବିତା ପୃ : ୧୬)

(୨) ଗୋପବନ୍ଧୁ ସ୍ମରଣିକା ପୃ : ୧୧୩

(୩) ଜାତିଇତିହାସ ଜାତିର ନିର୍ଝର, ତହୁଁ ବହେ ସଦା ଜାତି ପ୍ରାଣଧାର, ଯେ ଧାରରୁ ନୀର ପିଇଛି ଯେ ନର, ନିଷ୍ଠୁ ସ୍ୱ ହେବ ସେ ଜାତି କର୍ମବୀର । (ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ) ପୃ : ୯୨ ।

(୪) ବନ୍ଦୀର ଆତ୍ମକଥା ପୃ : ୩

ସମ୍ପୂର୍କର ଏଇ ଜଡ଼ ଓ ନିଶ୍ଚେଷ୍ଟ ଜାତିକୁ କର୍ମ ଉଦ୍ଦୀପନାର ବାଣୀ ଶୁଣାଇବା ସଙ୍ଗେ ସଙ୍ଗେ ଦେଶବାସୀଙ୍କୁ ଦେଶାତ୍ମବୋଧର ପବିତ୍ର ମନ୍ତ୍ରରେ ଦୀକ୍ଷିତକରି ଜାତୀୟ ପ୍ରଗତିର ଦ୍ୱାର ଉନ୍ମୋଚନ କରିଛନ୍ତି । ଏକ ପରାଧୀନତା-ବିଷ-ଜର୍ଜ୍ଜରିତ, ପଙ୍ଗୁ ଅସୂବିଧ୍ୱସ୍ତ ଜାତିର ପ୍ରାଣରୁ ସମସ୍ତ ନୈରାଶ୍ୟ, ଅବସାଦ ଅସ୍ୱଚ୍ଛନ୍ଦତା ଦୂରକରି ଦୃଢ଼ ଆତ୍ମ ପ୍ରତ୍ୟୟ ଓ ଆତ୍ମାଭିମାନ ଜାଗ୍ରତ କରାଇବାରେ ସତ୍ୟବାଦୀଯୁଗୀୟ ସାହିତ୍ୟର ବୈଶିଷ୍ଟ୍ୟ ନିହିତ । (*) ଗୋପବନ୍ଧୁଙ୍କୁ ଏହି ଉଦ୍ୟମର ପଥପ୍ରଦର୍ଶକ ଓ ବୈଶିଷ୍ଟ୍ୟ-ବିକାଶର ମୂଳ ଉତ୍ସ । କାରାକକ୍ଷର ବକ୍ଷ ଭେଦକରି ମଧ୍ୟ ସେ ଉତ୍କଳର ସ୍ୱର୍ଣ୍ଣାଭ ଅତୀତର ସ୍ମରଣରେ ଅଧୀର ହୋଇ ପଡ଼ିଛନ୍ତି ଓ ଭବିଷ୍ୟତର ସୁରୁଚିର କଳ୍ପନାର ତୂଳୀରେ ଆଙ୍କି ଯାଇଛନ୍ତି ।

ଗୋପବନ୍ଧୁ ମୁଖ୍ୟତଃ ଟ୍ରାଜେଡ଼ିର କବି । ତାଙ୍କର ବ୍ୟକ୍ତିଗତ ଜୀବନପରି, ତାଙ୍କ ରଚିତ କବିତାସମୂହ ମଧ୍ୟ କାରୁଣ୍ୟ-ଜର୍ଜ୍ଜରିତ, ବିଷାଦ-ବିହ୍ୱଳ । ତା'ସତ୍ତ୍ୱେ ଗୋପବନ୍ଧୁ ବିଷାଦବାଦୀ ବା ନୈରାଶ୍ୟବାଦୀ ନୁହନ୍ତି । କାରୁଣ୍ୟର କମନୀୟ ଉଚ୍ଛ୍ୱାସ ଅନ୍ତରାଳରେ ତାଙ୍କ କର୍ମକଠୋର ଜୀବନର ବଳିଷ୍ଠ ବିଶ୍ୱାସ, ଅଟଳ ସଂକଳ୍ପ, ଭଗବତ୍ ପ୍ରୀତି ଓ ଆଧ୍ୟାତ୍ମିକତାର ଦିବ୍ୟ ବର୍ଣ୍ଣବିଭା ପ୍ରକଟିତ । ସମସ୍ତ ଦୁଃଖ ନିର୍ଯ୍ୟାତନା ଓ ମାନସିକ ଅବସାଦ ଅବସନ୍ନତା ସତ୍ତ୍ୱେ ସଂଗ୍ରାମୀ ଗୋପବନ୍ଧୁଙ୍କର ଦୃଢତା, ମନୋବଳ ସତ୍ୟପ୍ରୀତି ଓ ସ୍ୱାଧୀନତା-ପିପାସାର ଅବସାନ ଘଟିନାହିଁ । ସକ୍ରେଟିସ୍‌ଙ୍କ ଜୀବନରେ ଯେଉଁ ନିଦାରୁଣ ସତ୍ୟର ଅଭିନୟ ଘଟିଥିଲା, ତାହାର ସ୍ମରଣରେ ଗୋପବନ୍ଧୁ ନିଜ ଅନୁଭୂତିସିକ୍ତ ଜୀବନର ପୃଷ୍ଠଭୂମିରେ ଘୋଷଣା କରିଛନ୍ତି—

"ସତ୍ୟ ସ୍ୱାଧୀନତା ଲାଗି ଯାର କାରାବାସ
ତା'ଲାଗି ଏ ପୃଥ୍ୱୀବଳେ କରେ ମୁଁ ବିଶ୍ୱାସ । (୧)

ଶାନ୍ତ ଓ ସୁଶାସନ ଆଳରେ କେତେ ପାଶବିକ ଅତ୍ୟାଚାର, ମାନବିକତାର ମହାଅପମାନ, ସତ୍ୟ ଓ ସ୍ୱାଧୀନତା ମସ୍ତକରେ କେତେ ବର୍ବର ପ୍ରହାର, ଅନ୍ଧକାର କାରାକକ୍ଷରେ କେତେ ସାଧୁଜନର ଶୋଚନୀୟ ନିର୍ଯ୍ୟାତନା ମାନବ ସଭ୍ୟତାର ମୁଖରେ ଜଳନ୍ତ କାଳିମା ବୋଳି ଦେଇଛି, କେତେ ଦେବଦୂତ ଅମାନୁଷିକ ନାରକୀୟ ଯନ୍ତ୍ରଣା ଭୋଗ କରି ପ୍ରାଣ ବିସର୍ଜ୍ଜନ କରିଛନ୍ତି, ତାହାର ଇୟତ୍ତା ନାହିଁ, କିନ୍ତୁ

"ଉଡ଼ି ଅଛି ଅବଶେଷେ ସତ୍ୟର ନିଶାଣ,
ବାଜି ଅଛି ସ୍ୱାଧୀନତା ବିଜୟ ବିଷାଣ" । (୨)

ଗୋପବନ୍ଧୁ ଯଥାର୍ଥରେ 'ଉତ୍କଳମଣି' । କ୍ଷୁଦ୍ରବୁଦ୍ଧି, ସଂକୀର୍ଣ୍ଣତାବଦ୍ଧ କେତେ ସମାଲୋଚକ ତାଙ୍କୁ ପ୍ରାଦେଶିକ ମନୋଭାବାପନ୍ନ ବୋଲି ଆକ୍ଷେପ କଲେ ମଧ୍ୟ ସେ ଥିଲେ ଜାତୀୟ-ପୁରୁଷ, ଯୁଗ-ମାନବ । ଜନ୍ମଭୂମି ଉତ୍କଳର ଗିରିଦରୀ, କାନନ କନ୍ଦର, ସାଗର ସରିତ, ଓ ନରନାରୀ ସମସ୍ତଙ୍କ ପ୍ରତି ତାଙ୍କ ପ୍ରାଣର ଅକୃତ୍ରିମ ଅନୁରାଗ ଲକ୍ଷ୍ୟ କରିବାର ବିଷୟ । ରୁଦ୍ଧ କାରାକକ୍ଷରେ ମଧ୍ୟ ତାଙ୍କ ଦୃଷ୍ଟି ସମ୍ମୁଖରେ ଶୋଭାମୟୀ ଉତ୍କଳ ଜନନୀର ସୁରୁଚିରରୂପ ଉଦ୍ଭାସିତ ହୋଇ ଉଠିଛି । ଦକ୍ଷିଣ ପବନର ସ୍ପର୍ଶରେ ତାଙ୍କର ତପ୍ତ ପ୍ରାଣରେ ସୃଷ୍ଟି ହୋଇଛି ଅନନୁଭୂତ-ଶିହରଣ ଓ ପବିତ୍ର-ପୁଲକ-ପ୍ରବାହ । ପଲକ ମଧ୍ୟରେ ବାଲ୍ୟ ଜୀବନର କେତେ ସୁଖସ୍ମୃତି, କେତେ ସୁରୁଚିର, ତାଙ୍କ ଅନ୍ତଃଚକ୍ଷୁ ସମ୍ମୁଖରେ ନାଚି ଯାଉଛି । ସ୍ୱର୍ଗଙ୍ଗା ତୀରର ସୌରଭ-ସଂକୁଳ ଶାନ୍ତ-ସମୀରଣ ଗ୍ରାମବାସୀମାନଙ୍କ ବିଭିନ୍ନ ଲୀଳା-ବିଳାସ, ଉତ୍କଳର ପୁରପଲ୍ଲୀର ସାୟନ୍ତନ-ଶୋଭାଶ୍ରୀର ସ୍ମୃତି ତାଙ୍କ ପ୍ରାଣରେ କାରାଗାରର କଠୋର ରୁକ୍ଷ ପରିବେଶରେ ମଧ୍ୟ କୋମଳ କବିତାର ଝଙ୍କାର ତୋଳିଛି । କାରଣ ଗୋପବନ୍ଧୁ ଓଡ଼ିଶାର ମାଟିକୁ ଭଲ ପାଉଥିଲେ । ଓଡ଼ିଶାର ନଈନାଳ ତୋଟା ଓ ପାହାଡ଼କୁ ଭଲ ପାଉଥିଲେ । କିନ୍ତୁ ମୂଳତଃ ସେ ଓଡ଼ିଶାର ମଣିଷକୁହିଁ ଭଲ ପାଉଥିଲେ । ××× ଆପଣା ମଣିଷ ହୃଦୟର ପ୍ରସାର ଦେଇ ସେମାନେ ଜାତିକୁ ଚହ୍ନିଥିଲେ, ଦେଶର ଆବିଷ୍କାର କରିଥିଲେ ଓ ଦେଶ ଏବଂ ଜାତି ଲାଗି ଆପଣା କର୍ତ୍ତବ୍ୟର ନିର୍ଣ୍ଣୟ କରିଥିଲେ । ××× ସେମାନେ ରାଜନୀତି କରୁଥିଲେ ସତ, ମାତ୍ର ସେହି ରାଜନୀତି ଉପରେ ସେମାନଙ୍କର ହୃଦୟନୀତିହିଁ ସର୍ବପ୍ରଧାନ ନିର୍ଣ୍ଣାୟକ ହୋଇ ରହିଥିଲା । (୩) ତେଣୁ ତ ସେ ଦେଶର ଭବିଷ୍ୟତ ବଂଶଧର, ଜାତିର ଏକମାତ୍ର ଆଶାଭରସାର ସ୍ଥଳ, ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେବାକୁ ଆବେଗଦ୍‌ଗଦ ସ୍ୱରରେ ଦିନେ କହିଥିଲେ— "ବାପାମାନେ; ତୁମେ ସମସ୍ତେ ମିଶି ଓଡ଼ିଆ ଜାତି ଗଢ଼ିବ ।

(*) ସତ୍ୟବାଦୀ ଯୁଗ—ଅଧ୍ୟାପକ ବୃନ୍ଦାବନ ଆଚାର୍ଯ୍ୟ
(୧) ବନ୍ଦୀର ସାନ୍ଧ୍ୟ ଭକ୍ତି (କାରା କବିତା ପୃ—୨୨)
(୨) ବନ୍ଦୀର ସାନ୍ଧ୍ୟ ଭକ୍ତି (କାରା କବିତା ପୃ—୨୩)
(୩) ଗୋପବନ୍ଧୁ ଦରବାର ଶ୍ରୀ ଚିତ୍ତରଞ୍ଜନ ଦାସ,

ଗୋଟିଏ ବିରାଟ ଜାତିର ଏବେ ଯେଉଁ ଦାରିଦ୍ର୍ୟ-ବିପର୍ଯ୍ୟୟ ହୋଇଛି; ଯେଉଁ ଦୁଃଖ ଦୁର୍ଦ୍ଦଶାରେ ପଡ଼ି ସେ ଆଜି ବିକଳାଙ୍ଗ, ଯେଉଁ ଦୁର୍ବିଷହ କଷାଘାତ ସେ ସହୁଛି, ଯେଉଁ ତୀବ୍ର ଉପହାସର ଆଜି ସେ ଶରବ୍ୟ, ସେଥିରୁ ତୁମ ମାତୃଭୂମିକୁ ଉଦ୍ଧାର କରିବା ଖାଲି ତୁମ୍ଭମାନଙ୍କ ଯୋଗ୍ୟତା ଉପରେହିଁ ନିର୍ଭର କରେ । ତେଣୁ, ତୁମେ ପାଠ ପଢ଼ି ଯୋଗ୍ୟତା ହାସଲ କରି ଦେଶର ଓ ଦଶର ଉପକାରରେ ବ୍ରତୀ ହୁଅ, ଏହାହିଁ ଭଗବାନ୍‌ଙ୍କଠାରେ ମୋର ପ୍ରାର୍ଥନା" । (୪)

ଜାତି ଓ ଦେଶର ସର୍ବାଙ୍ଗୀନ ଉନ୍ନତି ସାଧନ ଥିଲା ଗୋପବନ୍ଧୁଙ୍କ ଜୀବନର ପରମ ତପସ୍ୟା ଓ ଚରମ ଲକ୍ଷ୍ୟ । ତେଣୁ 'ଧ୍ରୁବତାରା' ପରି ଜନ୍ମଭୂମି ଉତ୍କଳର ସ୍ମୃତି ତାଙ୍କ ମନ-ଆକାଶରେ ଥିଲା ଚିରଭାସ୍ୱର ଓ ସ୍ଥିର ଅବିଚଳିତ । ଫଳରେ ସୁଦୂର ହଜାରିବାଗର ନିର୍ଜନ କାରାଗୃହରେ ତାଙ୍କର ଖେଳୁଛି, ଅପୂର୍ବ ରମଣୀୟ ମାନସ-ଯାତ୍ରା, ମଞ୍ଜୁଷା-ଠାରୁ ସମ୍ବଲପୁର ପର୍ଯ୍ୟନ୍ତ । ଦକ୍ଷିଣ-ଉତ୍କଳର ସୀମାନ୍ତ ପର୍ବତ, ମଞ୍ଜୁଷାର ମୁକୁଟ ସ୍ୱରୂପିଣୀ ମହେନ୍ଦ୍ର ପର୍ବତଠାରୁ ଆରମ୍ଭ କରି, ଉତ୍ତର-ପଶ୍ଚିମର ମହାନଦୀ-ମେଖଳାବୃତା ସମ୍ବଲପୁର ପର୍ଯ୍ୟନ୍ତ ସମଗ୍ର ଉତ୍କଳର ଭୌଗୋଳିକ ଚିତ୍ର ଚୁମ୍ବକରେ ପ୍ରଦାନ କରି କବି ନିଜ ସ୍ୱଦେଶପ୍ରୀତି, କବିତ୍ୱ ଚାତୁରୀ ଓ ଅନୁଭବ ଶୈଳୀର ସୂକ୍ଷ୍ମ, ସରସ ପରିଚୟ ଦେଇ ଯାଇଛନ୍ତି । ଫଳରେ ବନ୍ଦୀର ସ୍ୱଦେଶଚିନ୍ତା କବିତା ଓଡ଼ିଶାର ଏକ କାବ୍ୟାନ୍ୱିତ ମାନଚିତ୍ର ।

କାଳିଦାସଙ୍କର 'ମେଘଦୂତ' ବା 'ନୈଷଧର' ହଂସଦୂତ ପରି ବସନ୍ତ ମଳୟ ଏକ ସହୃଦୟ ବାର୍ତ୍ତାବହ । ସେ ଜଡ଼ ନୁହେଁ ଜୀବନ୍ତ, ମୂକ ନୁହେଁ ମୁଖର । ସେ ସ୍ପର୍ଶ କରୁଛି ମହେନ୍ଦ୍ର ପର୍ବତର ବିକଶିତ ସୁବାସିତ କୁସୁମ ନିଚୟ, ଆଘ୍ରାଣ କରୁଛି ଉଦ୍ୟାନ ଖଣ୍ଡର ରସାଳ ଫଳରାଜି, ଶ୍ରବଣ କରୁଛି ଋଷିକୁଲ୍ୟା ତଟିନୀତଟରେ କଳିତ ଚମ୍ପୁର ମଧୁରରାଗିଣୀ, ଆଲିଙ୍ଗନ କରୁଛି ଶ୍ୟାମ-ସ୍ନିଗ୍ଧ ଚିଲିକାର ଚଟୁଳ ସର୍ବାଙ୍ଗ । ଶ୍ରୀକ୍ଷେତ୍ରରେ ମହୋଦଧି ଜଳରେ ସ୍ନାନ ସାରି, ନୀଳଚକ୍ର ଚୂଳରେ ନେତ୍ର ଜୁଡ଼ାଇ ଦେଇ ସେ ପ୍ରବେଶ କରୁଛି ବସନ୍ତ ମାଧୁରୀ ଉଚ୍ଛ୍ୱସିତ, ଦେବଦଉଧାମ ସତ୍ୟବାଦୀର ମଞ୍ଜୁଳ ତୁରୀଅନା-ବକୁଳ କୁଞ୍ଜରେ । ବନ-ପ୍ରକୃତିର ବିମୋହନ ରୂପଶ୍ରୀ ଓ ସ୍ୱାଗତ ସମ୍ଭାଷଣର ଆନ୍ତରିକତାରେ ଉତ୍‌ଫୁଲ୍ଲିତ ବସନ୍ତ-ବାୟୁ ସାକ୍ଷୀଗୋପାଳଙ୍କ—

"ଦେଖିଲେ ପ୍ରବେଶି ଗୋପୀନାଥ ବଂଶୀ
ରନ୍ଧ୍ରେ ରଚିଥିବ ଅଷ୍ଟ ସ୍ୱନ
ରାଧିକା ଅଞ୍ଚଳ ଛଡ଼ାଇ ଚଞ୍ଚଳ
କରିଥିବ ଜାଣି ବେନଙ୍କ ମନ ।
ହସି ଉଠିଥିବେ ମୁରଲ ମୂରତି
ଖସି ପଡ଼ିଥିବ ଶ୍ରୀଅଙ୍ଗୁ ଫୁଲ
ନବଘନ ଶିରେ ଅହ୍ଲାଦ ଭରରେ
ହଲିଥିବ ତାଙ୍କ ମୟୂରଚୂଳ । (୫)

ଆଧ୍ୟାତ୍ମିକତା, କଳ୍ପନାବିଳାସ, ସ୍ୱଦେଶପ୍ରୀତି, ରସିକତା କବିତ୍ୱ ଚାତୁରୀ ଓ ଭାବାନୁରୂପ ଲଳିତ କୋମଳ ପଦ-ବିନ୍ୟାସର ସୁସମନ୍ୱୟରେ ଉପରୋକ୍ତ ପଦର ପଟାନ୍ତର ଓଡ଼ିଆ ସାହିତ୍ୟରେ ଦୁଷ୍ପ୍ରାପ୍ୟ । ସେଠାରୁ ମଳୟ ଯାତ୍ରା କରିଛି ପ୍ରାଚୀନ ଉତ୍କଳର ଗୌରବ ଶ୍ମଶାନ, ମନ୍ଦିରମାଳିନୀ ଭୁବନେଶ୍ୱର ଓ ଖଣ୍ଡଗିରିକୁ । ସେଠାରେ ଉତ୍କଳୀୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଜରାଜର୍ଜ୍ଜରିତ, ଶୈବାଳାବୃତ, ବିବର୍ଣ୍ଣ-ବିକୃତ-ଭଗ୍ନ-ସ୍ୱରୂପ ସ୍ୱଦେଶବତ୍ସଳ କବିଙ୍କର ମାନସ-ଦୂତ ମଳୟପ୍ରାଣରେ ଦାରୁଣ ବିଷାଦ-ବେଦନା ଜାଗ୍ରତ କରିଛି । ଅବଶ-ଅବସନ୍ନ ଚିତ୍ତରେ ସେ ଗତି କରିଛି ମହାନଦୀ ଅଭିମୁଖରେ । 'ମହାନଦୀ ତ କବିଙ୍କର ଅତି ପ୍ରିୟ—ଏଠାରେ ନଦୀ ନାରୀ, ବହୁ ବିଚିତ୍ରଭାବରେ ମହାନଦୀର ଏ ସୌନ୍ଦର୍ଯ୍ୟର ଉପଲବ୍ଧି କବିଙ୍କ ସ୍ୱଦେଶପ୍ରାଣତାର ଜ୍ୱଳନ୍ତ ପରିଚୟ । ପ୍ରେମାନୁରଞ୍ଜିତା ନାରୀ ଦେହର ସାତ୍ତ୍ୱିକ ବିକାର ବର୍ଣ୍ଣନା କରିବାରେ ଗୋପବନ୍ଧୁ ମଧ୍ୟ ସୁନିପୁଣ ଶିଳ୍ପୀ । × × ମହାନଦୀ ସହିତ କବିଙ୍କର ଏ ଘନିଷ୍ଠ ଆତ୍ମୀୟତା, ତାହାର ଏହି ପ୍ରେମାନୁଲିପ୍ତ ପୁଲକର ବର୍ଣ୍ଣନା, ତାହାର ଏହି ନାରୀଜନସୁଲଭ କାନ୍ତକୋମଳ ବ୍ୟକ୍ତିତ୍ୱର ମାଧୁରୀ ପ୍ରକୃତି ସୁରେଖା ରାଧାନାଥ ସାହିତ୍ୟରେ ବା କାହିଁ ? (୬)

ଗୋପବନ୍ଧୁ ମୁଖ୍ୟତଃ ଜାତୀୟ କବି । ଜାତୀୟ ଜୀବନକୁ ସଂଗଠିତ ଓ ସୁନିୟନ୍ତ୍ରିତ କରିବା ନିମନ୍ତେହିଁ ତାଙ୍କର କାବ୍ୟସାଧନା କିନ୍ତୁ ତାଙ୍କର କବିତା କେବଳ ଅଗ୍ନିର-ବିଗ୍ରହ-ଉପଗ୍ରହୀନ ପ୍ରଚାର-ସାହିତ୍ୟ ନୁହେଁ । ଏଥିରେ କବିଙ୍କ ରାଜନୈତିକ ଜୀବନର ଚିନ୍ତାଧାରା ପ୍ରକଟିତ ହୋଇଛି ଓ ପାରମାର୍ଥିକ ଦୃଷ୍ଟିକୋଣ ପ୍ରତିଫଳିତ ହୋଇଛି ସତ୍ୟ, କିନ୍ତୁ ତହିଁରେ ମାନବସୁଲଭ କବିପ୍ରାଣର ସ୍ୱତଃ-ସ୍ଫୂର୍ତ୍ତି-ଆବେଗର ଧାରା ମଧ୍ୟ ପ୍ରବାହିତ ଜୀବନର ବହୁବିଧ ବିଚିତ୍ର ଅନୁଭୂତି ଓ କ୍ଷୁଦ୍ରାତିକ୍ଷୁଦ୍ର ଦୃଶ୍ୟର ଚିତ୍ର ଏଠେ ଜୀବନ୍ତ

(୪) ଗୋପବନ୍ଧୁ ମୁଖର ଓଡ଼ିଆ ଗ୍ରନ୍ଥ—ଶ୍ରୀ ସତ୍ୟନାରାୟଣ ରାଜଗୁରୁ ।

(୫) ବନ୍ଦୀର ସ୍ୱଦେଶଚିନ୍ତା (କାରା କବିତା ପୃ—୩୦)

(୬) କବି ଗୋପବନ୍ଧୁ—ଅଧ୍ୟାପକ ଚିନ୍ତାମଣି ଦାସ (ପୃ—୧୦୪)

ଓ ଉପାଣିତ ଭାବରେ ତାଙ୍କ କବିତାରେ ରୂପାୟିତ ହୋଇଛି ଯେ, ତାହା ତାଙ୍କୁ ସମର୍ଥ-କବିର ଗୌରବରେ ଭୂଷିତ କରିଛି । ହୁଏତ ରାଜନୀତିର ଜଟିଳ-ଆବର୍ତ୍ତ ମଧ୍ୟରେ ଗୋପବନ୍ଧୁଙ୍କର ଶୁଭ୍ର-ସରସ କବିପ୍ରାଣ ବାରବାର ରୁଦ୍ଧ ହୋଇ ଅଣନିଶ୍ୱାସୀ ହୋଇଉଠିଛି ଓ ତାହାର ସ୍ୱଚ୍ଛନ୍ଦ ବିକାଶ ନିମନ୍ତେ ଯଥେଷ୍ଟ ସମୟ ଓ ସୁଯୋଗ ମିଳିନାହିଁ । ଏ ସବୁ ସତ୍ତ୍ୱେ ତତ୍କାଳୀନ ରାଜନୈତିକ ମତବାଦ ଓ ସାମାଜିକ ଅଭିମୁଖ୍ୟକୁ ଗୋପବନ୍ଧୁ ଯେପରି ସରସ-କାବ୍ୟିକ-ସ୍ପର୍ଶ ଦେଇପାରିଛନ୍ତି, ତାହା ତାଙ୍କର ଅନନ୍ୟ ସାଧାରଣ ପ୍ରତିଭାର ପରିଚୟ । ଅନ୍ୟ ପକ୍ଷରେ ଉତ୍କଳର ପ୍ରକୃତି ଗୋପବନ୍ଧୁଙ୍କ ଲେଖନୀ ମୁନରେ ଯେଉଁ ନବଜନ୍ମ ଲାଭ କରିଛି ତାହା ତାଙ୍କ ସାହିତ୍ୟିକ-ବ୍ୟକ୍ତିତ୍ୱର ଅନ୍ୟ ଏକ ସବୁଜ-ଦିଗନ୍ତ । ଭାର୍ଗବୀ ତୀରରେ ସଂଧ୍ୟା, ନୀଳକେଶୀ ଚିଲିକାର ଶୋଭାଶ୍ରୀ, ପୁଣ୍ୟନୀଳାଚଳର ବାଲିବନ୍ତ, ସତ୍ୟବାଦୀର ବକୁଳ-ତମାଳତରୁ, ଭୁବନେଶ୍ୱରର ଭଗ୍ନ-ସ୍ତୂପାବଳୀ, ଖଣ୍ଡଗିରିର ଜୀର୍ଣ୍ଣଗୁମ୍ଫାରାଜି, ସବୁକିଛି ତାଙ୍କ ଚିତ୍ର-ତୂଳିକାର ସ୍ପର୍ଶରେ ହୋଇଉଠିଛି ପ୍ରାଣବନ୍ତ । ରାଧାନାଥଙ୍କ ପରେ ପ୍ରକୃତି ଚିତ୍ରଣରେ ଏଇ ସରସତା ସହ ବଳିଷ୍ଠ ଜାତୀୟ-ଚେତନାର ତନ୍ମୟତା, ବୋଧହୁଏ ଅନ୍ୟ କୌଣସି ପ୍ରତିଭା ପକ୍ଷରେ ସମ୍ଭବପର ହୋଇପାରିନାହିଁ । ପୁଣି ପ୍ରକୃତି ସହ ଜୀବନର, ବା ଚିତ୍ର ସହ ଚରିତ୍ରର ସଂଯୋଗ ଓ ସଂଶ୍ଳେଷ ସାଧନରେ ଗୋପବନ୍ଧୁ କିଛି କମ୍ ଧୂରୀଣତାର ପରିଚୟ ଦେଇନାହାନ୍ତି । ଜୀବନ ସହ ସାହିତ୍ୟର ସାମଞ୍ଜସ୍ୟ-ସାଧନରେ ଗୋପବନ୍ଧୁ ଯେଉଁ ଅଭିନବ ଭୂମିକାର ଅବତାରଣା କରିଛନ୍ତି, ତାହାହିଁ ପ୍ରମାଣ କରେ ଯେ ତାଙ୍କର କବିତାହିଁ କର୍ମ ଓ କର୍ମହିଁ କବିତା । ସେ କର୍ମୀମାନଙ୍କ ମଧ୍ୟରେ କବି ଓ କବିମାନଙ୍କ ମଧ୍ୟରେ କର୍ମୀ ।

ଗୋପବନ୍ଧୁଙ୍କର ବ୍ୟକ୍ତିଗତ ଜୀବନହିଁ ଏକ କାବ୍ୟ-ଜାତୀୟ ମହାକାବ୍ୟ । ଏ କାବ୍ୟର ଛନ୍ଦେ ଛନ୍ଦେ କେତେ ରୂପରସ, ଚରିତଚରିତ୍ର, ପୁରୁଷପ୍ରକୃତି, ବୈରାଗ୍ୟ ଅନୁରାଗ ଇନ୍ଦ୍ରିୟ ଅତୀନ୍ଦ୍ରିୟର ବର୍ଣ୍ଣାଢ଼୍ୟ ସମାବେଶ । ଏହା ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟ ଭରା, ଐତିହ୍ୟ-ସଂସ୍କୃତି-ସଂପନ୍ନ, ସ୍ୱର୍ଗ-ମର୍ତ୍ତ୍ୟର-ବାର୍ତ୍ତାବହ ! ଏହାର ବ୍ୟାପ୍ତି ଓ ବିସ୍ତୃତି ଦେଶ-କାଳ-ସୀମାତୀତ । ଏହା କର୍ମ ଓ ଧର୍ମର ଏକ ମିଶ୍ରିତ ରସ । ତାଙ୍କର ଜୀବନକୁ ତାଙ୍କ କାବ୍ୟଠାରୁ ବା ତାଙ୍କ ସାହିତ୍ୟକୁ ତାଙ୍କ ଜୀବନଠାରୁ ପୃଥକ୍‌କରି ଦେଖିବା ସହଜ ନୁହେଁ, ସମ୍ଭବ ନୁହେଁ, ନୁହେଁ ମଧ୍ୟ ଶ୍ଳାଘ୍ୟ ; କାରଣ ସେ ଦୁହେଁ ଏକ, ଅଭିନ୍ନ ଓ ଏକାତ୍ମା । ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ମଧ୍ୟରେ ଢଳ ଢଳ ହେଉଛି ଏକ କାବ୍ୟର ଆତ୍ମା, ଏବଂ ତାଙ୍କ କବିତା ମଧ୍ୟରେ ଉଜ୍ଜ୍ୱଳ ଭାବରେ ପ୍ରତିଫଳିତ ହେଉଛି ଏକ ଶୁଦ୍ଧପୂତ, ସାଧକ ସନ୍ନ୍ୟାସୀର ଜୀବନଧାରା । ଏଇଠି ହିଁ ତାଙ୍କର ଆଉ ତାଙ୍କ ସାହିତ୍ୟର ଅଭିନବ ଆକର୍ଷଣ । "ସେ ଆଜି ଓଡ଼ିଶାର ନବଯୁଗର ପ୍ରବର୍ତ୍ତକ ଭାବରେ ପୂଜିତ, କିନ୍ତୁ ତାଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟ ଦର୍ଶନର କ୍ରମାଗତ ସୁରକ୍ଷାର ଅନୁଶୀଳନ, ତନେ ତାଙ୍କୁ କେବଳ ଆଧୁନିକ ଯୁଗର ନୁହେଁ, ଏକ 'ଅନାଗତ' 'ହିରଣ୍ମୟ' କାଳର ପୂର୍ବଦ୍ରଷ୍ଟା ସୂତ୍ରଧର-ରୂପେ ସୁପ୍ରତିଷ୍ଠିତ କରିବ (୧) ।

(୧) ଜାତିପ୍ରାଣ ଗୋପବନ୍ଧୁ—ଶ୍ରୀ ମନୋଜ ଦାସ ।

---

ରହିବ ନାହିଁ ଏ ନୀତି କାଳେ କାଳେ
ନାଶଯିବ ସତ୍ୟ-ନ୍ୟାୟ-କଳିକାଳେ ।
ପ୍ରଜାଲାଗି କଲେ ପ୍ରଜାପତି ସୃଷ୍ଟି
ପ୍ରଜାଲାଗି ଇନ୍ଦ୍ର କରେ ଜଳ ବୃଷ୍ଟି ।
ପ୍ରଜାଲାଗି ଉଦେ ରବି ଶଶୀ ତାରା
ପ୍ରଜାଲାଗି ବହେ ଶତ ନଦୀ ଧାରା ।
ପ୍ରଜାଲାଗି ରାଜ୍ୟ ପ୍ରଜାର ଶାସନ
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ ।

× × ×

ନ ଅଟକେ କର୍ମ ନେତାର ଅଭାବେ
ଧର୍ମ ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।

× × ×

ଭାରତବାସୀର ଧର୍ମବଳ ସାର
ଧର୍ମ ବିନା ଆଜି ଏଡ଼େ ହାହାକାର !
ଦଅ ସ୍ୱାର୍ଥବଳି ଦେଖାଅ ସେ ତ୍ୟାଗ
ଭାରତ ଜାତୀୟ ମହାଯାଗେ ଲାଗ ।
ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧ ବିଶ୍ୱହିତ ତେଜି ଅଭିମାନ ।

**ଗୋପବନ୍ଧୁ**

# ମହାଦୀପ

ଶ୍ରୀ ଫଣୀ ମହାନ୍ତି

ଆସିଛି ମୁଁ ଆଜ ଆସିଛି ;
ମସୀ ଅନ୍ଧାର ବ୍ୟୂହଭେଦ କରି
ମରଣ ବେଦୀର ତୋରଣକୁ ଡେଇଁ
ଉଠିପଡ଼ି ମୁଁ ଯେ ଆସିଛି ।।

କୋଟିଏ କଣ୍ଠେ ଗୋଟିଏ ରାଗିଣୀ
ଚେତନାରେ ଜଳ ସ୍ଥଳ ଓ ଧରଣୀ
କାହିଁ ଗଲା ସବୁ ମିଛ ଆଳାପନା
ମିଛ ବାହାଘର, ମିଛର ରୋଷଣୀ
ଆଖି ଖୋଲି ସବୁ ଦେଖୁଛି ।।

ରକ୍ତର ନଦୀ ପାରହୋଇ ମୁହିଁ ଆସିଛି
ମନ୍ଥନ ବେଗରେ ତରଳ ତରଙ୍ଗ ଆସିଛି
ବନ୍ୟା ମଡ଼କ ଅର୍ଗଳ ଭେଦ
ନିଜ ସ୍ୱାର୍ଥରେ ରଚି ମୁଁ ସମାଧି
ସହଳ ସହଳ ଆସିଛି ।।

ମୋ ଦେଶ ମାଟିରେ ମିଶୁ ମୋର ହାଡ଼ ମାଉଁସ
ଉନ୍ମାଦ ମୋର ଜଳିପୋଡ଼ି ହେଉ ପାଉଁଶ
ଧନ ମାନ ଜନ କ୍ଷମତା ଶାସନ
ଗୋଲାମି ସଲାମି ଅପକୀର୍ତ୍ତିମାନ
ସବୁତ ପଦାରେ ପଡ଼ୁଛି
ଆଶା-ଆଲୋକର ଜୀବନ ଦୋଳିରେ
ଦଗ୍ଧ ପବନ ବୁଲୁଛି ।।

ଶୁଭି ଉଠୁଛି କୋଟିଏ ମୁଖର କମ୍ପନ
କୋଟିକରେ ଗୋଟେ ସୁନାଲି ସୁଢ଼ାଳ ଦଂଶନ
ମାନବିକତାରେ ପୂତ ଅନ୍ତର ଭଙ୍ଗୁଛି
'ଅତିମାନବ'ର ଧରାବତରଣେ
ଲୌହ-ଶୃଙ୍ଖଳ ଛିଣ୍ଡୁଛି ।।

ତୋଷାମଦ କରି ଅରଜିବା କୋଉ ମାନରେ ?
ତୋଷାମଦିଆଂକ ବହୁପ ଦେଖୁଛି ଧନରେ
ଅନୁଚ କଂଠେ ଏତିକିନ୍ତୁ ମୋର ମାଗୁଣି
ନୂତନ ଆଲୋକେ ହସିଉଠୁ ଆମ ଧରଣୀ
ଚିର ଉହାଡ଼େ ଭାଗ୍ୟ ବିଧାତା ହସୁଛି ।।

ଆସିଛି ମୁଁ ଆସିଛି ;
'ବାପର ନୁହେଁ ମୁଁ, ପୁଅର ନୁହେଁ ମୁଁ'
ଦଳର ନୁହେଁ ମୁଁ କଳର ନୁହେଁ ମୁଁ
ଲଢ଼ନିଆଁ ପରି ଜଳୁଛି ଜୀବନ
ବୁଝି ବିଶ୍ୱର ମୁଁ ଖେଳୁଛି ।।

ନିଆଁ ହୁଳା ସାଥେ ଖେଳିବାକି ଏତେ ସହଜ ?
ସାଧବ ପୁଅର ନୁହେଁ ସେତ ସ୍ୱେଚ୍ଛା ବଣିଜ
ଥର ଥର କରି ଅପଣା ମନକୁ ପଚାର
ଗଢ଼ି ପାରିବାକି ନିଜ ସ୍ୱାର୍ଥପରେ କବର ?

ଅମର ଲକ୍ଷ୍ୟରେ ଆମ ଦୁନିଆଁର ସପନ
ଶୋଷଣ ପେଷଣ ଅତ୍ୟାଚାରର ଦହନ
ଅଂତିମ କାଳେ ମହାପ୍ରାପତିଏ ଉଠିଛି
ଆସୁଛି ମୁଁ ଆଜ ଆସିଛି ।।

ଅଧ୍ୟାପକ
ସାମନ୍ତ ଚନ୍ଦ୍ର ଶେଖର କଲେଜ, ପୁରୀ

---



ପୁରୀ ଜିଲ୍ଲାର ସତ୍ୟବାଦୀଠାରେ ଅକ୍ଟୋବର ୯ ତାରିଖ ଦିନ ଆୟୋଜିତ ଗୋପବନ୍ଧୁ ଜନ୍ମ ଶତବାର୍ଷିକୀ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଉଦ୍‌ବୋଧନ ଦେଉଛନ୍ତି ।

# ପଣ୍ଡିତ ଗୋପବନ୍ଧୁ ଓ ସତ୍ୟବାଦୀ ବନ ବିଦ୍ୟାଳୟ

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶାକୁ କରଗତ କଲେ । ତା'ପୂର୍ବରୁ ଭାରତର ସମସ୍ତ ଅଞ୍ଚଳରେ ସେମାନଙ୍କ ଅଧିକାର ପ୍ରତିଷ୍ଠିତ ହୋଇସାରିଥିଲା । ସେ ସମୟରେ ଓଡ଼ିଶାରେ ଏକପ୍ରକାର ଅରାଜକତା ବ୍ୟାପିଥିଲା । ମରହଟ୍ଟା ଓ ମୋଗଲ ଶାସନ ନାମକୁମାତ୍ର ଥିଲେ ମଧ୍ୟ ଓଡ଼ିଶାର ରାଜନୀତି, ଅର୍ଥନୀତି, ଶିକ୍ଷା, ସାମାଜିକ ପରିସ୍ଥିତି ଅତି ନିମ୍ନସ୍ତରକୁ ଆସିଥିଲା । ପୂର୍ବର ସଂସ୍କୃତ ଶିକ୍ଷା, ଜ୍ଞାନାଲୋଚନା କ୍ରମଶଃ ଲୋପ ପାଇଯାଇଥିଲା । ଲୋକମାନେ ଦୁର୍ବଳ, ଭୀରୁ ଓ ଭୀତତ୍ରସ୍ତ ହୋଇପଡ଼ିଥିଲେ । ସେତେବେଳେ ଲୋକପ୍ରବାଦ ପ୍ରଚଳିତ ଥିଲା—

"ଖାଇବ୍ରି ଯଅଳ, ପିନ୍ଧିବ୍ରି ମଅଳ
ଦାଣ୍ଡଘର ଖଣ୍ଡି ଅଛୁଅଁ କର ।
କେବେ ଯାଇ ଏ ରାଇଜେ କରିବୁ ଘର ।"

ଇଂରେଜମାନେ ବିଦେଶୀ । ସେମାନଙ୍କ ବେଶପୋଷାକ, ଚାଲିଚଳଣି, ଭାଷା, ଧର୍ମ ଅନ୍ୟ ପ୍ରକାର । ବିଜେତାଭାବରେ ସେମାନଙ୍କ ପ୍ରତାପ ମଧ୍ୟ କମ୍ ନଥିଲା । ଜନସାଧାରଣଙ୍କୁ ଯେପରି ଘୃଣା କରୁଥିଲେ, ସେହିପରି ସେମାନଙ୍କୁ ସର୍ବଦା ଭୀତତ୍ରସ୍ତ କରି ରଖିବାକୁ ପଛାଉ ନଥିଲେ । ତେଣୁ ଲୋକେ ସେମାନଙ୍କଠାରୁ ଦୂରରେ ରହିବାକୁ ବରାବର ଚେଷ୍ଟା କଲେ । ପୁଣି ଯେତେବେଳେ ଏ ଦେଶରେ ପାଶ୍ଚାତ୍ୟ ଶିକ୍ଷା—ଇଂରାଜୀ ଶିକ୍ଷାର ମୂଳଦୁଆ ପକାଗଲା, ସେତେବେଳେ ଜନସାଧାରଣ ତାକୁ ଗ୍ରହଣ କରିନେଇ ପାରିଲେ ନାହିଁ । ଯେଉଁ ମୁଷ୍ଟିମେୟ କେତେଜଣ ପ୍ରଥମେ ସେ ଶିକ୍ଷା ଗ୍ରହଣ କଲେ, ସେମାନେ ସେହି ଶିକ୍ଷାର ପ୍ରଭାବରେ ନିଜ ପରିବାର, ନିଜ ସମାଜ ଓ ନିଜ ଗ୍ରାମବାସୀଙ୍କଠାରୁ ମଧ୍ୟ ଦୂରେଇ ଗଲେ । କେହି ହେଲେ ଖ୍ରୀଷ୍ଟାନ ବା କେହି ନବପ୍ରବର୍ତ୍ତିତ ବ୍ରାହ୍ମ ଧର୍ମରେ ଦୀକ୍ଷିତ ହେଲେ । ସେମାନେ ନିଜ ବଂଶ ପରମ୍ପରାର ବିଶ୍ୱାସ ଓ ଧାର୍ମିକ କଳାପକୁ ଘୃଣା କଲେ । ନିଜକୁ ଗୋଟିଏ ସ୍ୱତନ୍ତ୍ର ସଂପ୍ରଦାୟ ବୋଲି ଭାବିଲେ । ମୁରବୀମାନେ ଏଥିରେ ପ୍ରମାଦ ଗଣିଲେ । ନିଜର ପିଲାମାନଙ୍କୁ ଆଉ ପାଶ୍ଚାତ୍ୟ ଶିକ୍ଷା ଦେବାକୁ ସାହସ କଲେ ନାହିଁ ।

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ଏହି ପରିସ୍ଥିତି ଲାଗିରହିଲା। ଏହି ଅନ୍ଧକାର ଯୁଗରେ ଯେଉଁମାନେ ଆଲୋକବର୍ତ୍ତିକା ଜାଳିବାକୁ ପ୍ରୟାସ କରିଥିଲେ, ସେମାନଙ୍କ ମଧ୍ୟରେ ସତ୍ୟବାଦୀର ମନୀଷିଗଣ ଅଗ୍ରଗଣ୍ୟ। ଆଗରୁ ବ୍ୟକ୍ତିଗତ ସ୍ତରରେ କେହି କେହି ଏ ଦିଗରେ ପ୍ରୟାସୀ ହୋଇଥିଲେ ମଧ୍ୟ ସମୂହସ୍ତରରେ ସେପରି କୌଣସି ଉଦ୍ୟମ ହୋଇନଥିଲା। ସତ୍ୟବାଦୀ ଯୁଗର ନେତୃବୃନ୍ଦ ଅସୀମ ସାହସ ଓ ଦୃଢ଼ତାର ସହିତ ସମାଜ ଉପରେ ରହି ସମାଜର କୁସଂସ୍କାର ଦୂର କରିବା ସଙ୍ଗେ ସଙ୍ଗେ ଶିକ୍ଷାବିସ୍ତାର ଦ୍ୱାରା ଦେଶର ସର୍ବବିଧ କଲ୍ୟାଣସାଧନ କରିବାକୁ ତତ୍ପର ହୋଇଥିଲେ। ସେମାନଙ୍କ ନେତା ଥିଲେ ପଣ୍ଡିତ ଗୋପବନ୍ଧୁ।

ଯୁଗୋପଯୋଗୀ ଚେତନାର ବର୍ତ୍ତିକା ପ୍ରଜ୍ୱଳିତ କରିବା, ସର୍ବୋପରି ଧନୀ-ଦରିଦ୍ର, ଜାତି-ଅଜାତି, ସ୍ୱଧର୍ମୀ-ବିଧର୍ମୀ ସମସ୍ତଙ୍କ ମଧ୍ୟରେ ସମନ୍ୱୟ ଆଣି ଦେଶ ଓ ଦଶର ସର୍ବାଙ୍ଗୀଣ ଉନ୍ନତି ପୂର୍ବକ ଏହି ଅନୁନ୍ନତ ଅଞ୍ଚଳକୁ ବିଶ୍ୱ ଦରବାରରେ ଠିଆ କରାଇବା ତାଙ୍କର ଧର୍ମ ବୋଲି ଗ୍ରହଣ କରିଥିଲେ।

ଏଥିର ପ୍ରଥମ ସୋପାନ ହେଲା ଲୋକଙ୍କୁ ଶିକ୍ଷିତ କରାଇବା। ସେ ସମୟରେ ଇଂରେଜ ସରକାରଙ୍କ ବିଧାନ ଅନୁସାରେ ଶିକ୍ଷା ଅତ୍ୟନ୍ତ ବ୍ୟୟବହୁଳ ହୋଇଉଠିଥିଲା। କେବଳ ସହରରେ ଭବ୍ୟ ଭବ୍ୟ କୋଠାଘରମାନଙ୍କରେ ବିଦ୍ୟାଳୟ ପ୍ରତିଷ୍ଠା କରାଯିବ, ଆନୁଷଙ୍ଗିକ ଖର୍ଚ୍ଚ ସେହିପରି



ବନ ବିଦ୍ୟାଳୟରେ ବ୍ୟବହୃତ ହେଉଥିବା ସିମେଣ୍ଟ ବେଞ୍ଚ।

ସେ ସମୟରେ ଯେ ପାଶ୍ଚାତ୍ୟ ଶିକ୍ଷାରେ ଶିକ୍ଷିତ ହେଲେ ଅନ୍ତଃସାର ଶୂନ୍ୟ, ସେ ନିଜକୁ ଶାସକ ଶ୍ରେଣୀର ଅଂଶରୂପେ ଧରିନେଲା। ସରକାରଙ୍କ ଅଧୀନରେ କୌଣସି ନା କୌଣସି ପଦରେ ଅଧିଷ୍ଠିତ ହୋଇ ନିଜର ଧନ, ମାନ ଓ ପ୍ରଭୁତ୍ୱ ବଢ଼ାଇବା ଏହାହିଁ ହେଲା ତା'ର ଜୀବନର ଏକମାତ୍ର ଲକ୍ଷ୍ୟ। ଏହି ଧାରଣା ମୂଳରେ ପ୍ରଥମେ କୁଠାରଘାତ କଲେ ପଣ୍ଡିତ ଗୋପବନ୍ଧୁ। ଛାତ୍ରାବସ୍ଥାରୁ ସେ ଶପଥ ନେଲେ, ଏ ଦେଶରେ ଶିକ୍ଷାବିସ୍ତାରର ବ୍ୟାପକ ବ୍ୟବସ୍ଥା କରିବା, ସମାଜ ମଧ୍ୟରେ ରହି ସମାଜର କୁସଂସ୍କାର ଦୂର କରିବା, ଦେଶର ଜନସାଧାରଣଙ୍କ ସହିତ ମିଶି ସେମାନଙ୍କ ମଧ୍ୟରେ ବହୁ ପରିମାଣରେ ହେବ, ଛାତ୍ରମାନେ ବେଶ ପୋଷାକରେ ବିଳାସ ବ୍ୟସନରେ ବହୁ ଅର୍ଥ ଲଗାଇବେ—ଏହାହିଁ ସାଧାରଣ ଧାରଣା ହୋଇ ଉଠିଥିଲା। ତେଣୁ ଶିକ୍ଷା କେବଳ ମୁଷ୍ଟିମେୟ ଧନୀକ ପରିବାରର ଏକଚାଟିଆ ହୋଇ ପଡ଼ିଥିଲା।

ଅଥଚ ଭାରତର ଶିକ୍ଷା ପଦ୍ଧତି ଥିଲା ଏଥିଠାରୁ ସମ୍ପୂର୍ଣ୍ଣ ଭିନ୍ନ। ବଣଜଙ୍ଗଲରେ, ଋଷି ଆଶ୍ରମରେ ରାଜାମହାରାଜାଙ୍କ ସନ୍ତାନଠାରୁ ଆରମ୍ଭକରି ଦେଶର ଦରିଦ୍ରତର ଶିକ୍ଷାଲିପ୍ସୁ ବାଳକମାନେ ବିନା ଖର୍ଚ୍ଚରେ ଏକତ୍ର ଶିକ୍ଷା ପାଉଥିଲେ।

ଜ୍ଞାନଗତ ଶିକ୍ଷା ସଙ୍ଗେ ସେମାନଙ୍କୁ ଶାସନଗତ, ବିଭିନ୍ନ ବୈଷୟିକ ଓ ଶାରୀରିକ ଶ୍ରମର ଶିକ୍ଷା ଦିଆଯାଉଥିବାରୁ ଶିକ୍ଷାକ୍ଷେତ୍ରରୁ ଅପସୃତ ପରେ ସେମାନେ ସାଂସାରିକ କ୍ଷେତ୍ରରେ ଆଉ ନିଜକୁ ଅସହାୟ ମନେ କରୁନଥିଲେ । ସେ ଯେଉଁ କ୍ଷେତ୍ରରେ ପ୍ରବେଶ କରୁଥିଲେ ସେ ସେଥିରେ ବେଶ୍ କୃତିତ୍ୱ ହାସଲ କରୁଥିଲେ । କୌଣସି ପ୍ରକାର ଶାରୀରିକ ଶ୍ରମ ପ୍ରତି ସେମାନଙ୍କର ଘୃଣା ରହୁନଥିଲା ।

ଗୋପବନ୍ଧୁଙ୍କର ପ୍ରଥମ ଲକ୍ଷ୍ୟ ହେଲା, ଯୁଗର ପ୍ରଭାବ ସହିତ ସାମଞ୍ଜସ୍ୟ ରକ୍ଷି ଏହି ପ୍ରାଚୀନ ଶିକ୍ଷାପଦ୍ଧତି ଦ୍ୱାରା ଦେଶରେ ଶିକ୍ଷା ବିସ୍ତାର କରିବା । ଶିକ୍ଷାରେ ବ୍ୟୟବହୁଳତା ଦୂର ହେବ ଏବଂ ଶିକ୍ଷାନୁଷ୍ଠାନରୁ ଉତ୍ତୀର୍ଣ୍ଣ ଯୁବକ ସଂସାର କ୍ଷେତ୍ରରେ ଯେ କୌଣସି ଉପାୟରେ ଜୀବନଧାରଣ କରିବାକୁ ନିଜକୁ ସମର୍ଥ କରିପାରିବ । ସେଇ ଉଦ୍ଦେଶ୍ୟ ପୂରଣ ଲାଗି ସେ ସତ୍ୟବାଦୀରେ ପ୍ରତିଷ୍ଠା କଲେ ମୁକ୍ତାକାଶ ତଳେ ବନବିଦ୍ୟାଳୟ । ମନୋରମ ପରିବେଶ ମଧ୍ୟରେ ପ୍ରକୃତି କୋଳରେ ବୃକ୍ଷ ମୂଳରେ ବସି ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ, ଅତି ଦୂରଦୂରାନ୍ତ ସ୍ଥାନରୁ ଶତ ଶତ ଛାତ୍ର ଆସି ସେଠାରେ ସମବେତ ହେଲେ । ପଣ୍ଡିତ ଗୋପବନ୍ଧୁଙ୍କ ଆଦର୍ଶରେ ପ୍ରଭାବିତ ସେ ଯୁଗର କେତେଜଣ ଅତି ଶ୍ରେଷ୍ଠ ଜ୍ଞାନୀ ଓ ସେବକ ଯଥା—ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପଣ୍ଡିତ କୃପାସିନ୍ଧୁ, ପଣ୍ଡିତ ଲିଙ୍ଗରାଜ, ଶ୍ରୀଯୁକ୍ତ ବାସୁଦେବ ମହାପାତ୍ରଙ୍କ ସାହାଯ୍ୟ ଓ ସହଯୋଗରେ ଏହି ଶିକ୍ଷାନୁଷ୍ଠାନ କେବଳ ଓଡ଼ିଶାରେ ନୁହେଁ, ସମଗ୍ର ଭାରତରେ ଅତି ଅଳ୍ପ ସମୟ ମଧ୍ୟରେ ବେଶ ଖ୍ୟାତି ଅର୍ଜନ କଲା ।

୧୯୧୫ ମସିହାରେ ବ୍ରିଟିଶ ଶିକ୍ଷାବିତ୍ ତତ୍କାଳୀନ ସ୍କୁଲ୍ ଇନ୍ସପେକ୍ଟର ସଦ୍ୟ ବିଲାତ ଆଗତ ମ'କୋମ୍ସ ସାହେବ ଏହି ସ୍କୁଲ ସମ୍ପର୍କରେ ମନ୍ତବ୍ୟ ଦେଇଥିଲେ—"ଏଠାରେ ବକୁଳ-କୁସୁମିତ କୁଞ୍ଜରେ ଯେପରି ଶିକ୍ଷାଦାନ କାର୍ଯ୍ୟ ଚାଲିଛି, ସେଥିରେ ମୁଁ ବିଶେଷ ଖୁସି । ତା' ପାଖରେ ଯେଉଁ କୋଠାଘର ତିଆରି ହେଉଛି, ତାହା ଅନାବଶ୍ୟକ ବୋଲି ମୋର ମନେହୁଏ । ବର୍ଷାଦିନେ କାମ ଚଳିଗଲାଭଳି ଗୋଟିଏ ଛାଳଘର ତିଆରି କଲେ ଚଳିବ ଓ ଉଦ୍ୟୋକ୍ତାମାନଙ୍କ ବହୁ ଅଯଥା ବ୍ୟୟରୁ



ସତ୍ୟବାଦୀର ବକୁଳବନରେ ଯେଉଁ ବିଦ୍ୟାଳୟ ଚାଲୁଥିଲା, ସେଥିରେ ବ୍ୟବହୃତ ହେଉଥିବା ସିମେଣ୍ଟ ଚଉକି ଓ ଟେବୁଲ । ତା'ର ଉପରେ ବସି ଶିକ୍ଷକ ପାଠ ପଢାଉଥିଲେ ।

ମଧ୍ୟ ନିଶ୍ଚିତ ମିଳିବ । ଦୈବ୍ୟବଶତ ବିଦ୍ୟାଳୟର ଛାତ୍ରମାନେ ଉନ୍ମୁକ୍ତ ଆକାଶତଳେ ପ୍ରକୃତିର ରମଣୀୟ ପରିସ୍ଥିତି ମଧ୍ୟରେ ପାଠ ପଢ଼ାଇବାର ଯେଉଁ ପଦ୍ଧତି ଆବିଷ୍କାର କଲେ, ତାହା ଅନ୍ୟ କେଉଁ ସାହେବର ସହିତ ଦରପାଣ ନ ଥିଲେ ।”

ଋଷି ଆଶ୍ରମ ଆଦର୍ଶରେ ଏହି ଶିକ୍ଷାନୁଷ୍ଠାନ ଥିଲା “ଆବାସିକ ସ୍କୁଲ ।” ସମସ୍ତ ଛାତ୍ର ସ୍କୁଲ ସଂଲଗ୍ନ ଛାତ୍ରାବାସରେ ଶିକ୍ଷକମାନଙ୍କ ଗହଣରେ ଅବସ୍ଥାନ କରୁଥିଲେ । ସରଳ ଜୀବନଯାପନ ସଙ୍ଗେ ସଙ୍ଗେ ଉଚ୍ଚ ଚିନ୍ତା ଭାବନାରେ ସେମାନେ ଅଭ୍ୟସ୍ତ ହୋଇ ଉଠୁଥିଲେ । ତା ସହିତ ଦୀନ-ଦରିଦ୍ର, ବିପନ୍ନ ଅସହାୟଙ୍କ ସେବା କରିବା, ଆପଦ ବିପଦରେ ଲୋକଙ୍କୁ ସାହାଯ୍ୟ କରିବା-ପାଇଁ ଛାତ୍ରମାନଙ୍କୁ ଯଥେଷ୍ଟ ପ୍ରେରଣା ଦିଆଯାଉଥିଲା । ପୁସ୍ତକ ଅଧ୍ୟୟନ ସହିତ ନିୟମିତ କୃଷି ଭିତ୍ତିକ ଶିକ୍ଷାର ବ୍ୟବସ୍ଥା ହୋଇଥିଲା; କାଷ୍ଠ ଉପକରଣ ତିଆରି, ବସ୍ତ୍ର ବୟନ, ମୂର୍ତ୍ତି ଗଠନ ଓ କୃଷି କାର୍ଯ୍ୟରେ ଛାତ୍ର-ମାନଙ୍କୁ ତାଲିମ ଦିଆଯାଉଥିଲା । ଶିକ୍ଷା ବିଭାଗର ନିର୍ଦ୍ଦିଷ୍ଟ ପାଠ୍ୟକ୍ରମ ବ୍ୟତୀତ ଛାତ୍ରମାନଙ୍କର ବିଭିନ୍ନ ଦିଗରେ ସାଧାରଣ ଜ୍ଞାନ ବୃଦ୍ଧି ପାଇଁ ଉପଯୁକ୍ତ ଶିକ୍ଷାର ବ୍ୟବସ୍ଥା ହୋଇଥିଲା । ଏହିସବୁ ପାଠ୍ୟକ୍ରମ ଏବଂ ଛାତ୍ର-ମାନଙ୍କର ମାନସିକ, ଶାରୀରିକ ଅଭିବୃଦ୍ଧି ଦେଖି ସେ ସମୟର ବିଶିଷ୍ଟ ମନୀଷୀମାନେ ଅନୁଷ୍ଠାନର ଭୂୟସୀ ପ୍ରଶଂସା କରିଥିଲେ ।

ତତ୍କାଳୀନ ବିହାର-ଓଡ଼ିଶାର ଲେଫ୍ଟନାଣ୍ଟ ଗଭର୍ଣ୍ଣର ସାର୍ ଏଡ୍‌ୱାର୍ଡ଼ ଗେଟ୍ ସ୍କୁଲ ପରିଦର୍ଶନ କରି ଯେଉଁ ମନ୍ତବ୍ୟ ଦେଇଥିଲେ, ସେଥିର ଗୋଟିଏ ଅଂଶ ହେଉଛି—“About thirty boys did some gymnastic exercise and displayed considerable proficiency. They are evidently extremely well taught and I was glad to learn that this subject is practically compulsory.

* * * *

Other commendable features of this school are the instruction in carpentry, the combined bank and store and the general atmosphere of simplicity and good fellowship”.

ଓଡ଼ିଶା ଡିଭିଜନ ସ୍କୁଲ ଇନ୍‌ସପେକ୍ଟର ମ୍ୟାକ୍‌ଲିନ୍, ହ୍ୱଫ୍‌କେ, ଡ଼ହ୍ୱବ, ବିହାର-ଓଡ଼ିଶା ଶିକ୍ଷା ବିଭାଗ ଡିରେକ୍ଟର ଜେନିଙ୍ଗ୍‌ସ, କଲିକତା ବିଶ୍ୱବିଦ୍ୟାଳୟର ଭାଇସ ଚାନ୍‌ସେଲର ସାର୍ ଆଶୁତୋଷ ମୁଖାର୍ଜି, ଡକ୍ଟର ଦେବପ୍ରସାଦ ସର୍ବାଧିକାରୀ, ଡକ୍ଟର ସୁରେଶ ପ୍ରସାଦ ସର୍ବାଧିକାରୀ, ଆଚାର୍ଯ୍ୟ ଯୋଗେଶ ଚନ୍ଦ୍ର ରାୟ, ବିଦ୍ୟାନିଧି ପ୍ରମୁଖ ସେ ଯୁଗର ଗଣ୍ୟମାନ୍ୟ ଶିକ୍ଷାବିତ୍-ମାନଙ୍କ ବ୍ୟତୀତ ସ୍ୱନାମଧନ୍ୟ ଆଇ. ସି. ଏସ୍. ଅଫିସର କେ. ଜି. ଗୁପ୍ତ (ଓଡ଼ିଶାର କମିଶନର) ଏଫ୍. ସି. ଡ଼ିକସନ, ପଣ୍ଡିତ ଆର୍. ବି. ମିଶ୍ର, ଏମ୍. କେ. ଦେବ ପ୍ରଭୃତି ବହୁ ମନୀଷୀ ଏହି ଶିକ୍ଷାନୁଷ୍ଠାନର କାର୍ଯ୍ୟକଳାପର ପ୍ରଶଂସାରେ ଶତମୁଖ ହୋଇ ଉଠିଥିଲେ । ଭାରତୀୟ ଯକ୍ଷ୍ମା ରୋଗ ଅନୁସନ୍ଧାନ ଅନୁଷ୍ଠାନର ସ୍ୱତନ୍ତ୍ର ଗବେଷକ-ରୂପେ ଭାରତକୁ ଆସିଥିବା ଜଣେ ବିଶେଷଜ୍ଞ ଡାକ୍ତର ଏ. ଲଙ୍କାଷ୍ଟାର ଲେଖିଥିଲେ—

“× × × It was delightful to see how thoroughly the school was being run on simple open air lines without any sacrifice of real efficiency. The way in which the classes are isolated from one another by the undergrowth in the beautiful leafy groves where tuition was being carried on was especially note-worthy.”

ଆଚାର୍ଯ୍ୟ ଯୋଗେଶ ଚନ୍ଦ୍ର ରାୟ ତାଙ୍କର ଏକ ଦୀର୍ଘ ପ୍ରବନ୍ଧରେ ସ୍କୁଲରେ ବିଦ୍ୟାଶିକ୍ଷା ଓ ଛାତ୍ରମାନଙ୍କ ସ୍ୱଭାବ ଚରିତ୍ର ସମ୍ପର୍କରେ ଲେଖିଥିଲେ—

“ରାତି ଘ ୭-୩୦ରେ ରେଳଗାଡ଼ି ଧରିବାକୁ ହେବ । ଆଉ ବିଳମ୍ବ କଲେ ଚଳିବ ନାହିଁ । ଅଥଚ ସ୍କୁଲର ବାଳକମାନଙ୍କ ସହିତ କଥାବାର୍ତ୍ତା କରିବାକୁ ସମୟ ନାହିଁ । ସେଥିପାଇଁ ଛାତ୍ରାବାସର ୮।୧୦ ଜଣ ବାଳକଙ୍କୁ ମୋ ସହିତ ଷ୍ଟେସନ ପର୍ଯ୍ୟନ୍ତ ଆସିବାକୁ ଆହ୍ୱାନ କଲି । ବାଟରେ ସେମାନଙ୍କ ସହିତ ବାକ୍ୟାଲାପ ଆରମ୍ଭ କରିଦେଲି—ଏକଥା, ସେକଥା, ଘର ଓ ପରିବାରର କଥା, ସ୍କୁଲ ଓ ଶିକ୍ଷକଙ୍କ କଥା ପଚାରିଲି । ଦେଖିଲି ସଙ୍କୋଚ ନାହିଁ, ସମ୍ଭ୍ରମ ଅଛି । ପିତା ମାତା, ପରିବାର ଛାଡ଼ି ସ୍କୁଲରେ ଆସି ରହିଲେ କଷ୍ଟ ଅଧିକ ହେବ, ସେ ଧାରଣା ବି ସେମାନଙ୍କର ନାହିଁ । ଶିକ୍ଷକମାନେ

ଛାତ୍ରମାନଙ୍କୁ କି ମନ୍ତ୍ରରେ ମୁଗ୍ଧ କରି ଦେଇଛନ୍ତି, ଜାଣେ ନାହିଁ । ପିଲାମାନେ ବନର ପକ୍ଷୀଭଳି ସ୍ୱାଧୀନତା ଭୋଗ କରୁଛନ୍ତି, ଅଥଚ ସଂଯମୀ ।

"ଅନ୍ଧକାର ରାତି । ବାଟରେ ଅସୁ ଅସୁ ମନେ ହେଲା, ଦିଗ ଭ୍ରମ ହୋଇଛି । ଗୋଟିଏ ପିଲାକୁ ପଚାରିଲି ଆମେ କେଉଁ ଦିଗରେ ବାଟ ଚାଲିଛେ ? ସଙ୍ଗେ ସଙ୍ଗେ ଜବାବ ମିଳିଲା, "ଉତ୍ତର ଦିଗରେ ।" "କିପରି ଜାଣିଲ ?" ଏହି ପ୍ରଶ୍ନର ଉତ୍ତରରେ ସେ କହିଲା, "ଆକାଶରେ ସପ୍ତର୍ଷି ନକ୍ଷତ୍ର ଯେ ଆଗରେ ଦେଖାଯାଉଛି ।" ଏହି ଉତ୍ତର ଶୁଣି ଜାଣିଲି, ପିଲାମାନେ କେବଳ ପାଠ୍ୟପୁସ୍ତକ ମୁଖସ୍ଥ କରନ୍ତି ନାହିଁ, କେବଳ ଗଛରେ ଚଢ଼ି ଡୁଡୁ ଖେଳି, ଯାତ୍ରୀମାନଙ୍କ ସେବା କରି ଦିନ କାଟନ୍ତି ନାହିଁ ବିଦ୍ୟା ଶିଖନ୍ତି ।"

କଲିକତା ବିଶ୍ୱବିଦ୍ୟାଳୟର କୁଳପତି "ବଙ୍ଗଳାର ବାଘ" ସାର୍ ଆଶୁତୋଷ ମୁଖର୍ଜୀ ମନ୍ତବ୍ୟ ଦେଇଥିଲେ—

"It is obvious to me that the school is backed by more than one devoted and enthusiastic young men. They have further realised that true education is possible without expensive and luxurious equipments; indeed, such equipments are rather a hindrance than an assistance to the cause of the spread of education amongst an essentially poor people. × × × The promoters of this school have set a laudable example to the country. × × × One can not but wish that every village in Bengal should possess a genuine place of instruction like the Satyabadi School."

ବଙ୍ଗଳାର ଗ୍ରାମେ ଗ୍ରାମେ ସତ୍ୟବାଦୀ ସ୍କୁଲ ଆଦର୍ଶରେ ଶିକ୍ଷାନୁଷ୍ଠାନମାନ ପ୍ରତିଷ୍ଠା କରାଯାଉ ବୋଲି କେବଳ ସାର୍ ଆଶୁତୋଷ ଆଶା କରି ନଥିଲେ, ବିହାରର "ବିହାର ଆଡଭୋକେଟ" ପ୍ରଭୃତି ଲୋକପ୍ରିୟ ପତ୍ରିକା ସବୁ ବିହାରର ପ୍ରତି ଗ୍ରାମରେ ଏହିଭଳି ଶିକ୍ଷାନୁଷ୍ଠାନ ଗଠନ ଲାଗି ସେଠାର ଶିକ୍ଷାବିତ୍, ଜନସାଧାରଣ ତଥା କର୍ତ୍ତୃପକ୍ଷଙ୍କୁ ପରାମର୍ଶ ଦେଇଥିଲେ ।

ସତ୍ୟବାଦୀ ବନ ବିଦ୍ୟାଳୟର ପ୍ରଥମ ଭିତ୍ତି ସ୍ଥାପନ କରାଯାଇଥିଲା ମାତ୍ର ୧୯ ଜଣ ଛାତ୍ରଙ୍କୁ ନେଇ ୧୯୦୯ ମସିହାରେ ଗୋଟିଏ ମଧ୍ୟ ଇଂରାଜୀ ସ୍କୁଲ ରୂପରେ । ୧୯୧୧ରେ ହାଇସ୍କୁଲର ପ୍ରଥମ ଶ୍ରେଣୀ ଖୋଲିଲା ଏବଂ ୧୯୧୭ରେ ପ୍ରଥମଥର ପାଞ୍ଚ ଛାତ୍ରମାନେ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେଲେ ଏବଂ ସମସ୍ତ ଛାତ୍ର ଉତ୍ତୀର୍ଣ୍ଣ ହୋଇଥିଲେ । ୧୯୨୧ରେ ପଣ୍ଡିତ ଗୋପବନ୍ଧୁ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ଏହି ଶିକ୍ଷାନୁଷ୍ଠାନକୁ ଜାତୀୟ ସ୍କୁଲରେ ପରିଣତ କରିଦେଲେ । ମହାତ୍ମା ଗାନ୍ଧୀଙ୍କ ପ୍ରଭାବରେ ସମଗ୍ର ଭାରତରେ ଏହି ଆନ୍ଦୋଳନରେ ଯୋଗ ଦେଇଥିବା ଯେଉଁ ସହସ୍ର ସହସ୍ର ଦେଶପ୍ରେମୀ ନିଜର ଧନ ସମ୍ପତ୍ତି, ଖ୍ୟାତି, ପ୍ରତିପତ୍ତି ତ୍ୟାଗ କରିଥିଲେ, ସେ ସମସ୍ତ ତ୍ୟାଗ ମଧ୍ୟରେ ପଣ୍ଡିତ ଗୋପବନ୍ଧୁଙ୍କର ଏହି ତ୍ୟାଗ ଯେ ସର୍ବାଗ୍ରଗଣ୍ୟ, ଏହା ନିଃସନ୍ଦେହରେ କୁହାଯିବ । ଜାତୀୟ ବିଦ୍ୟାଳୟ ହେବା ସମୟରେ ଏହାର ଛାତ୍ର ସଂଖ୍ୟା ଥିଲା ପ୍ରାୟ ଛଅଶହ । ମାତ୍ର ବାରବର୍ଷ ସମୟ ମଧ୍ୟରେ ଏ ଅନୁଷ୍ଠାନ ଯେପରି ସମଗ୍ର ଭାରତରେ ପ୍ରସିଦ୍ଧି ଲାଭ କରିଥିଲା ଏବଂ ତା'ର ପ୍ରଭାବ ଏବେ ମଧ୍ୟ ଯେପରି ବୁଦ୍ଧିଜୀବୀ ଶିକ୍ଷାବିତ୍‌ମାନଙ୍କ ମନରୁ ଲୋପ ପାଇ ନାହିଁ, ସେକଥା ଚିନ୍ତା କଲେ, ସେହି ପଣ୍ଡିତ ଗୋପବନ୍ଧୁଙ୍କ ଅମରବାଣୀହିଁ ମନରେ ପଡ଼ିଯାଏ ।

ମାନବ ଜୀବନ ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ,
କର୍ମେ ଜୀଏଁ ନର କର୍ମ ଏକା ତା'ର
ଜୀବନର ମାନଦଣ୍ଡ ।

ନାଓ୍ୱା ସମ୍ପାଦକ 'ସମାଜ', କଟକ

ଥିଲେ ଯହିଁ ତହିଁ ଭାରତ ବକ୍ଷରେ ମରିବି ମୁଁ ଅଛୁ ଆପଣା କକ୍ଷରେ ।
ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ ପ୍ରତିସ୍ଥାନ ମୋର ପ୍ରିୟ ପୁଣ୍ୟଧାମ ।
ସକଳ ସଲିଳ ପଞ୍ଚତୀର୍ଥ ଜଳ ପ୍ରତି ଧର୍ମାଳୟ ମୋର ନୀଳାଚଳ ।
ଭାରତର ପ୍ରତି ବୃକ୍ଷ କଳ୍ପବଟ ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ ।
ସାମ୍ୟ ସ୍ୱାଧୀନତା ପ୍ରେମ ସମୁଦୟ ନୀଳାଚଳ ଶୁଦ୍ଧ ଭାରତ ହୃଦୟ ।
ଥିଲେ ଯହିଁ ତହିଁ ଭାରତ ଶଯ୍ୟାରେ ମରିବି ମୁଁ ଅଛୁ ନୀଳଚକ୍ରତଳେ ।

—ଗୋପବନ୍ଧୁ

# "ଶ୍ୟାମଳା" ୧୫,୧୫,୧୫

ଯବକ୍ଷାର ଯାନ, ଫସଫେଟିକ ଓ ପଟାସର ସମ୍ମିଶ୍ରଣରେ ପ୍ରସ୍ତୁତ ଏହି ସାର **"ଶ୍ୟାମଳା"** ଶସ୍ୟ କ୍ଷେତରେ ପ୍ରୟୋଗ କରି ଅଧିକ ଫସଲ ଅମଳ କରନ୍ତୁ ।

ଆପଣଙ୍କ ନିକଟସ୍ଥ ଆଞ୍ଚଳିକ ବାଣିଜ୍ୟ ସମବାୟ ସମିତି ଓ "ସେବା ସମବାୟ"
ସମିତିଗୁଡ଼ିକରେ ଅନୁଧ୍ୟାନ କରନ୍ତୁ

ଓଡ଼ିଶା ରାଜ୍ୟ ସମବାୟ ମାର୍କେଟିଙ୍ଗ୍ ଫେଡେରେସନ
ଭୁବନେଶ୍ୱର—୭

# ଶ୍ରୀଅରବିନ୍ଦଙ୍କ ଯୋଗରେ ଗାନ୍ଧିଜୀଙ୍କ ସିଦ୍ଧାନ୍ତର ସମନ୍ୱୟ

ଶ୍ରୀ ରାମକୃଷ୍ଣ ଦାସ

ପ୍ରଶ୍ନ—ଶ୍ରୀଅରବିନ୍ଦଙ୍କ ଯୋଗ କ'ଣ ମହାତ୍ମା ଗାନ୍ଧୀ ଓ ବିନୋବାଜୀଙ୍କ ସିଦ୍ଧାନ୍ତର ବିରୁଦ୍ଧ ?

ଏହି ପ୍ରଶ୍ନଟି ବହୁ ବ୍ୟକ୍ତିଙ୍କ ସହିତ ଭିନ୍ନ ଭିନ୍ନ ରୂପରେ ବହୁବାର ଆଲୋଚିତ ହୋଇଛି । ଏବେ ମଧ୍ୟ ବହୁତ ବ୍ୟକ୍ତି ଏହି ପ୍ରଶ୍ନଟି ବାରମ୍ବାର ପତ୍ରଦ୍ୱାରା ଆଗତ କରୁଅଛନ୍ତି । ସେହି କାରଣରୁ ଆଜି ଏହି ପ୍ରଶ୍ନଟିର ଆଲୋଚନା କରାଯାଉଛି ।

ଏହି ପ୍ରଶ୍ନର ଉତ୍ତର ଦେବା ପୂର୍ବେ କହିଦେବା ଉଚିତ ହେବ—ଏଠାରେ କେବଳ ଆଲୋଚନା ହେବ ପ୍ରଧାନତଃ ଶ୍ରୀଅରବିନ୍ଦଙ୍କ ଯୋଗ ଗାନ୍ଧିଜୀ ତଥା ବିନୋବାଜୀଙ୍କ ସିଦ୍ଧାନ୍ତର ସହାୟକ ନା ବିରୁଦ୍ଧ, କିନ୍ତୁ ସେମାନଙ୍କର ବ୍ୟକ୍ତିତ୍ୱ ସମ୍ବନ୍ଧରେ ଏକବାରେ ବିଚାର କରାଯିବ ନାହିଁ । ଏହା ସମ୍ଭବ ନୁହେଁ ଏବଂ ଏହାର ପ୍ରୟୋଜନ ମଧ୍ୟ ନାହିଁ । ମହାପୁରୁଷମାନେ ଯେଉଁ ଚେତନାରେ ନିବାସ କରନ୍ତି ସେ ଚେତନାରେ ନ ପହୁଞ୍ଚି ତାଙ୍କ ବ୍ୟକ୍ତିତ୍ୱ ସମ୍ବନ୍ଧରେ ବିଚାର କରିବା ଅନଧିକାର ଚେଷ୍ଟା ଛଡ଼ା ଆଉ କିଛି ନୁହେଁ ।

ଗାନ୍ଧିଜୀ ତଥା ବିନୋବାଜୀଙ୍କ ସିଦ୍ଧାନ୍ତରେ ଶ୍ରୀଅରବିନ୍ଦଙ୍କ ଯୋଗ ଏକବାରେ ବିରୁଦ୍ଧ ନୁହେଁ, ପୂର୍ଣ୍ଣତଃ ସହାୟକ ଏବଂ ଅଧିକ ବ୍ୟାପକ । କାରଣ ସେମାନେ ମନୁଷ୍ୟଜାତିର ଯେଉଁ ଯେଉଁ ସୁଖ ସ୍ୱାଚ୍ଛନ୍ଦ୍ୟ ଚାହୁଁଛନ୍ତି, ଶ୍ରୀଅରବିନ୍ଦଙ୍କ ଯୋଗ ତାହା ଅପେକ୍ଷା ଅଧିକ ସ୍ଥାୟୀ, ଅଧିକ ବ୍ୟାପକ ଏବଂ ଅଧିକ ଉନ୍ନତଭାବରେ ତାହାହିଁ ଚାହୁଁଅଛି ।

ଶ୍ରୀଅରବିନ୍ଦଙ୍କ ଯୋଗର ଲକ୍ଷ୍ୟ—ଅତିମାନସ ଶକ୍ତି ଦ୍ୱାରା ମନୁଷ୍ୟର ମନ, ପ୍ରାଣ, ଶରୀର ତାହାର ଦିବ୍ୟ ଚିନ୍ମୟ ତତ୍ତ୍ୱରେ ପୂର୍ଣ୍ଣ ରୂପାନ୍ତର କରିହେବ, ଯାହା ଫଳରେ ମନୁଷ୍ୟ ଜରା, ବ୍ୟାଧି, ମୃତ୍ୟୁ, ହିଂସା, ଦ୍ୱେଷ, ଈର୍ଷା, ବିରୋଧରୁ ପୂର୍ଣ୍ଣ ମୁକ୍ତହେବ । ତାହାର ସମସ୍ତ ସତ୍ତା ଭଗବାନଙ୍କ ସହିତ ଏକହୋଇ ଭଗବାନଙ୍କ

ଦ୍ୱାରା ପରିଚାଳିତ ହେବ । ତାହାର ମନ, ପ୍ରାଣର ସ୍ଥାନକୁ ଅଧିକାର କରିବ ଭାଗବତୀ ଶକ୍ତି । ସେ ଅହଂ ଆଉ ସ୍ୱାର୍ଥରୁ ହେବ ପୂର୍ଣ୍ଣ ମୁକ୍ତ । ତାହାର ସମସ୍ତ ସତ୍ତା ଭଗବାନଙ୍କ ସହିତ ଏକ ହେବାରୁ ଜ୍ଞାନ, ଭକ୍ତି, ଆନନ୍ଦ, ଶାନ୍ତି, ସମତା ତାହା ମଧ୍ୟରେ ଅବିଚ୍ଛିନ୍ନ ରୂପେ ପ୍ରବାହିତ ହେବ । ଭଗବାନ ସ୍ୱୟଂ ବନ୍ଧୁ ହୋଇ ଜଗତରେ ବିଭିନ୍ନ ପ୍ରାଣୀରୂପରେ ପ୍ରକଟ ହୋଇଛନ୍ତି, ସେ ଏହି ରହସ୍ୟ ସ୍ପଷ୍ଟ ଭାବରେ ଦେଖିପାରିବ । ତା ଦୃଷ୍ଟିରେ ବିଭିନ୍ନ ରୂପ ଆଉ ଜଗତ ହେବ ଭଗବାନମୟ । ତାହାର ଅନ୍ତରରେ ଆଉ ବାହ୍ୟରେ ହିଂସାର ସ୍ଥାନ ରହିବ ନାହିଁ । ସେ ଦ୍ୱୈତରେ ଅଦ୍ୱୈତ ଦେଖିବ । ତାହାର ଶତ୍ରୁ ମିତ୍ର କେହି ରହିବେ ନାହିଁ—ସମସ୍ତେ ଭାଗବତ ସ୍ୱରୂପ ଏବଂ ଏକ । ସେ, ସମସ୍ତ ମଧ୍ୟରେ ଏବଂ ତା' ମଧ୍ୟରେ ସମସ୍ତ । ଏହାହିଁ ଯଥାର୍ଥରେ ସମସ୍ତ ରିପୁର ଅଧୀନରୁ ମୁକ୍ତ, ସ୍ୱତନ୍ତ୍ର ଅବସ୍ଥା । ଏହାଫଳରେ ସମସ୍ତ ସଂସାରରୁ ହିଂସା ଦ୍ୱନ୍ଦ୍ୱାଦି ଦୂର ହେବ, ପୃଥିବୀ ହେବ ସ୍ୱର୍ଗରେ ପରିଣତ । ଏହା ସତ୍ୟଯୁଗର ସ୍ଥାପନା, ଏହାହିଁ ଶ୍ରୀଅରବିନ୍ଦଙ୍କ ଯୋଗର ଲକ୍ଷ୍ୟ ।

ଗାନ୍ଧିଜୀଙ୍କ ସିଦ୍ଧାନ୍ତ ହେଉଛି ମନୁଷ୍ୟ ପରସ୍ପର ବୈର-ବିରୋଧ ଦୂର କରି ଅହିଂସା ଅବଲମ୍ବନ କରି ପରାଧୀନତାରୁ ମୁକ୍ତ ହୋଇ ସ୍ୱତନ୍ତ୍ର ହେବ । ହିଂସା, ରାଗ, ଦ୍ୱେଷ, ଘୃଣା, ବିରୋଧାଦି ସମସ୍ତ ପ୍ରକାର ଅଶାନ୍ତି, ଅସୁଖ, ଦ୍ୱନ୍ଦ୍ୱର କାରଣ । ମନୁଷ୍ୟ ମଧ୍ୟରୁ ହିଂସା ଦୂର ହୋଇ ଅହିଂସା ପ୍ରତିଷ୍ଠିତ ହେଲେ ସେ ଆନନ୍ଦମୟ ଜୀବନ ପ୍ରାପ୍ତ କରିବ; ଜଗତରୁ ଯୁଦ୍ଧ ଆଦି ବର୍ବରତା ଦୂର ହେବ ଏବଂ ସଂସାରରେ ଶାନ୍ତି ସ୍ଥାପନା ହେବ । ଗାନ୍ଧିଜୀ ଚାହିଁଥିଲେ ଅହିଂସା, ଶାନ୍ତି-ସୁଖମୟ ଜୀବନ ଏବଂ ଭାରତର ସ୍ୱତନ୍ତ୍ରତା ରାମ-ରାଜ୍ୟ ପ୍ରତିଷ୍ଠା । ତାଙ୍କ କାର୍ଯ୍ୟ-ପ୍ରଣାଳୀରୁ ଅନୁମାନ କରାଯାଏ ତାଙ୍କର ଲକ୍ଷ୍ୟ ଯଦ୍ୟପି ଏହି ଉଭୟ ଥିଲା ତଥାପି ତାଙ୍କ ସମ୍ମୁଖ ଲକ୍ଷ୍ୟ ଥିଲା ଭାରତ-ସ୍ୱତନ୍ତ୍ରତା । କିନ୍ତୁ ତାଙ୍କ ସହକର୍ମୀ ଏବଂ ଅନୁଗାମୀମାନେ ଦେଶ ସ୍ୱାଧୀନତାକୁ ଜୀବନର ପ୍ରଧାନ ଲକ୍ଷ୍ୟ ମାନି ନେଲେ ଆଉ ତାହା ପ୍ରାପ୍ତ କରିବାକୁ ପ୍ରାଣପଣେ ଲାଗି ପଡ଼ି ଲଢ଼ି କଲେ । ସମ୍ଭବତଃ ସେମାନଙ୍କ ଧାରଣା ହୋଇଥିବ, "ପ୍ରଥମରେ ଆମ୍ଭେମାନେ ବିଦେଶୀ ହାତରୁ ମୁକ୍ତ ହୋଇଗଲେ ସ୍ୱତନ୍ତ୍ରରୂପେ ସୁଖ, ଶାନ୍ତି, ଅହିଂସ-ଜୀବନ ପ୍ରାପ୍ତ କରିବା କାର୍ଯ୍ୟରେ ଲାଗି ପଡ଼ିବା ।" ଭାରତ ସ୍ୱତନ୍ତ୍ରତା ପରେ କଂଗ୍ରେସ କର୍ମକର୍ତ୍ତା ମଧ୍ୟରେ ଯେଉଁମାନେ ପ୍ରକୃତରେ ଦେଶଭକ୍ତ ଥିଲେ ସେମାନେ ଦେଶର ଉନ୍ନତି, ସୁଖମୟ ଜୀବନ ନିର୍ମାଣ କାର୍ଯ୍ୟରେ ଲାଗିପଡ଼ିଲେ । ସେମାନଙ୍କ ଶାନ୍ତି ସୁଖମୟ ଜୀବନ ନିର୍ମାଣରେ ରହିଲା ଅଧ୍ୟାତ୍ମ-ବର୍ଜନ ପାଶ୍ଚାତ୍ୟ କର୍ମ-ଧାରାର ରୂପ । ପରିଣାମରେ ଭାରତରେ କଳ-କାରଖାନା ବୃଦ୍ଧି ହେଲା. ରାସ୍ତା, ଘାଟ ତିଆରି ହେଲା; ସ୍କୁଲ, କଲେଜ ବଢ଼ି ଚାଲିଲା । ଜଳଭଣ୍ଡାର ନିର୍ମାଣ ହେଲା, ବିଜୁଳିର ଉତ୍ପାଦନ ହେଲା । ବହୁତ ବେକାର ଲୋକଙ୍କୁ ଜୀବିକା ନିର୍ବାହର କର୍ମ ମିଳିଲା । ଏ ଉପରେ ଦେଶର ଉନ୍ନତି ହେଲା । ଅନ୍ୟ ପଟରେ ହିଂସା, ଦ୍ୱେଷ, ସ୍ୱାର୍ଥ, ଅହଂ, ବେଇମାନି, ଲାଞ୍ଚ, ଦଗାବାଜି, ସୋଷଣଖୋର ବଢ଼ିଲା । ବ୍ୟକ୍ତି ରାଜନୈତିକ ପରାଧୀନତାରୁ ମୁକ୍ତହୋଇ ଅନ୍ଧକାର ଶତ୍ରୁର ଦୁର୍ଗୁଣ ଜଞ୍ଜାଳରେ ଅଧିକ ଦୃଢ଼ଭାବେ ବନ୍ଦୀହେଲେ । ଜୀବନ ଶାନ୍ତି, ଆନନ୍ଦମୟ ହେଲା ନାହିଁ । କାରଣ ମନୁଷ୍ୟ-ଜୀବନ ପୂର୍ଣ୍ଣ ଆନନ୍ଦମୟ ହୁଏ ଅଧ୍ୟାତ୍ମ ଏବଂ କର୍ମ, ଏହି ଉଭୟଙ୍କ ମିଳନରେ । ଏହି ଦୁଇ ମଧ୍ୟରୁ ଗୋଟିକୁ ବାଦ ଦେଲେ ଜୀବନ ଅପୂର୍ଣ୍ଣ, ଅଙ୍ଗହୀନ ହୁଏ । ପିତାମାତାଙ୍କୁ ଯେତେବେଳେ ପୁତ୍ରଶୋକ ହୁଏ ସେତେବେଳେ ମୂଲ୍ୟବାନ ବସ୍ତୁ, ମିଷ୍ଟାନ୍ନ ସନ୍ତୋଷ ଦିଏ ନାହିଁ । ରୋଗ କାମୁଡ଼ି ଥିବା ବ୍ୟକ୍ତିକୁ ସୁନ୍ଦର ମହଲ, କୋମଳ ଶଯ୍ୟା ଆନନ୍ଦ ଦିଏ ନାହିଁ । ଅନ୍ତର ସନ୍ତୋଷ, ଶାନ୍ତି ବିନା ମନୁଷ୍ୟ ସୁଖୀ ହୁଏ ନାହିଁ । ଆନନ୍ଦ, ଶାନ୍ତି, ଅହିଂସା, ସନ୍ତୋଷ ପ୍ରାପ୍ତ ହୁଏ ଅଧ୍ୟାତ୍ମ-ସାଧନା ଦ୍ୱାରା । ଏହିସବୁ ଦିବ୍ୟ ଗୁଣ ପ୍ରାପ୍ତ ହେଲେ ସେ ପ୍ରତ୍ୟେକ ବ୍ୟକ୍ତିକୁ ନିଜ ଆତ୍ମାରୂପେ ଦେଖେ । ନିଜେ କାହାରି ସଙ୍ଗେ ବୈର ବିରୋଧ, ହିଂସା କରେ ନାହିଁ, ଆଉ କାହାରି ଦୁର୍ବ୍ୟବହାର ଦ୍ୱାରା ଅଶାନ୍ତ ହୁଏ ନାହିଁ । ଏଣୁ ପ୍ରକୃତରେ ସୁଖମୟ ଓ ପୂର୍ଣ୍ଣ ଜୀବନ ପ୍ରାପ୍ତ ହୁଏ ଅଧ୍ୟାତ୍ମ ଆଉ କର୍ମ ଉଭୟ ମିଳନରେ । ପ୍ରତ୍ୟକ୍ଷରୂପେ ଆମ୍ଭେମାନେ ଅଧ୍ୟାତ୍ମ-ସାଧକମାନଙ୍କର ସୁଖମୟ ଜୀବନ ଯଦ୍ୟପି ଦେଖୁଛୁ ତଥାପି କର୍ମ ଦିଗ ଶୂନ୍ୟ । କର୍ମୀମାନଙ୍କ ଜୀବନରେ ଅଧ୍ୟାତ୍ମ-ସାଧନାର ଅଭାବ । ଅତଏବ ଉଭୟଙ୍କ ଜୀବନ ଅପୂର୍ଣ୍ଣ । ଏହି ଉଭୟ ମିଳନରେ ଜୀବନ ଆଉ ଦେଶର ହୁଏ ଯଥାର୍ଥ ଉନ୍ନତି ।

ସୃଷ୍ଟିକର୍ତ୍ତା ଈଶ୍ୱର ଏକ । ତାଙ୍କର ସୃଷ୍ଟି, ତାଙ୍କର ବିଧାନରେ ସମସ୍ତ ଜଗତ ଚାଲିତ ହେଉଅଛି । ତାଙ୍କ ବିଧାନର ବିରୁଦ୍ଧ, କୌଣସି ବ୍ୟକ୍ତି କିଛି କରି ପାରେ ନାହିଁ । ପୃଥିବୀରେ ସ୍ୱର୍ଗରାଜ୍ୟ, ଦିବ୍ୟ ଜୀବନ ସ୍ଥାପନ ଭଗବାନଙ୍କର ଯେଉଁ ସଙ୍କଳ୍ପ, ଯେଉଁ କାର୍ଯ୍ୟ ସକାଶେ ଶ୍ରୀଅରବିନ୍ଦ ଏହି ସଂସାରକୁ ଆସିଥିଲେ ସେହି କାର୍ଯ୍ୟ ସକାଶେ ଭାରତ ସ୍ୱତନ୍ତ୍ର ହେବା ଅନିବାର୍ଯ୍ୟ ଥିଲା । ସେହି ଭାରତ ସ୍ୱତନ୍ତ୍ରତା ସକାଶେ କର୍ମ କରିବାକୁ ଗାନ୍ଧୀଜୀ ମଧ୍ୟ ଆସିଥିଲେ । ଭାରତ ସ୍ୱତନ୍ତ୍ର ହେଲା, କିନ୍ତୁ ମନୁଷ୍ୟକୁ ଆନନ୍ଦମୟ ଜୀବନ ପ୍ରାପ୍ତ ହେଲା ନାହିଁ ।

ପ୍ର—ଗାନ୍ଧିଜୀ ଯେଉଁ ଅହିଂସ ସୁଖମୟ ଜୀବନ ଚାହିଁଥିଲେ, ଯାହା ତାଙ୍କର ଲକ୍ଷ୍ୟ ଥିଲା, ତାହା କ'ଣ ପୂର୍ଣ୍ଣ ହୋଇଛି ? ବର୍ତ୍ତମାନ ମନୁଷ୍ୟର ଯେଉଁ ଜୀବନ, ବିଶେଷତଃ ଭାରତବର୍ଷ ଯେଉଁ ଅବସ୍ଥାରେ ଅଛି, ସେ କ'ଣ ଏହିପରି ସଂସାର ଚାହିଁଥିଲେ ? ଏହି ଅବସ୍ଥାରେ କ'ଣ ତାଙ୍କ ଆତ୍ମା ସନ୍ତୁଷ୍ଟ ? ବର୍ତ୍ତମାନ ସଂସାରରେ ଦୁର୍ନୀତି, ଦ୍ୱନ୍ଦ, ସ୍ୱାର୍ଥ, ମିଥ୍ୟାଚାର, ଠକାମି କ'ଣ ବ୍ୟକ୍ତିର ବାଞ୍ଛିନୀୟ ?

ଉ—ଗାନ୍ଧିଜୀଙ୍କ ଆଦର୍ଶ ଅନୁସାରେ ବର୍ତ୍ତମାନ ଅବସ୍ଥା ଏକେବାରେ ସନ୍ତୋଷଜନକ ନୁହେଁ । ସେ ଚାହିଁଥିଲେ ସ୍ଥାୟୀ ନିଷ୍କପଟ ଅହିଂସ ଅଖଣ୍ଡ ସୁଖମୟ ଜୀବନ, ଆନନ୍ଦମୟ ରାଜ୍ୟ । ଏହା ଥିଲା ତାଙ୍କର ଲକ୍ଷ୍ୟ କିନ୍ତୁ ତାଙ୍କ ଜୀବନର ପ୍ରଧାନ କାର୍ଯ୍ୟ ଥିଲା ଭାରତ ସ୍ୱତନ୍ତ୍ରତା । ଏହି ସ୍ୱତନ୍ତ୍ରତାର ରାଜନୀତି-କ୍ଷେତ୍ରରେ ମହାର୍ଘ୍ୟ ମୂଲ୍ୟ ଅଛି । ଆଉ ଏହା ପୂର୍ଣ୍ଣ ସ୍ୱତନ୍ତ୍ରତାର ଅପରିହାର୍ଯ୍ୟ ଅଙ୍ଗ; ତଥାପି ଏହା ମନୁଷ୍ୟ-ଜୀବନର ଚରମ ଲକ୍ଷ୍ୟ ନୁହେଁ । କେବଳ ଏହିଥିରେ ମନୁଷ୍ୟର ଜୀବନ ସୁଖମୟ ହୁଏ ନାହିଁ । ସ୍ଥାୟୀ ସୁଖମୟ ଜୀବନ ପ୍ରାପ୍ତ ହୁଏ—ହିଂସା, ଦ୍ୱେଷ, ସ୍ୱାର୍ଥାଦି ରିପୁମାନଙ୍କଠାରୁ ପୂର୍ଣ୍ଣତଃ ମୁକ୍ତହେଲେ, ତେବେ ତାହାର ଅହିଂସା ହୁଏ ନିଷ୍କପଟ ଓ ନିଷ୍କଳଙ୍କ ।

ପ୍ର—ବର୍ତ୍ତମାନ କଂଗ୍ରେସ ନୀତି ଆଉ ସଂସାର ଅବସ୍ଥାରୁ ଦେଖାଯାଉଛି ଗାନ୍ଧିଜୀ ଯେପରି ଅହିଂସା ଚାହିଁଥିଲେ; ଯେଉଁ ସୁଖମୟ ସାମଞ୍ଜସ୍ୟ-ଜୀବନ ଚାହିଁଥିଲେ, ତାହା ପୂର୍ଣ୍ଣ ହୋଇନାହିଁ ସତ, କିନ୍ତୁ ବିନୋବାଜୀ ବରାବର କହି ଆସିଛନ୍ତି ଏବଂ ପ୍ରଯତ୍ନ କରୁଛନ୍ତି ଭୂମିଦାନଦ୍ୱାରା ମନୁଷ୍ୟର ହୃଦୟ ପରିବର୍ତ୍ତନ ହେବ ଏବଂ ସଂସାରରେ ସାମଞ୍ଜସ୍ୟ ସ୍ଥାପନ ହେବ । ମନେହୁଏ ଗାନ୍ଧିଜୀ ଯାହା ଚାହୁଁଥିଲେ ତାହା ପୂର୍ଣ୍ଣ ହୋଇ ନ ଥିଲା, ତାହା ପୂର୍ଣ୍ଣ ହେବ ବିନୋବାଜୀଙ୍କଦ୍ୱାରା ! ଯଦି ଏହାହିଁ ହୁଏ ତେବେ ଏଥିରେ ଶ୍ରୀଅରବିନ୍ଦଙ୍କ ଯୋଗର ସାହାଯ୍ୟର ପ୍ରୟୋଜନ କଅଣ ? ସାମଞ୍ଜସ୍ୟ ବା ବିରୋଧ, ଏହା ବିଚାର କରିବାକୁ ଯିବା କାହିଁକି ? ଆମେ କାର୍ଯ୍ୟ କରିବୁ ଆମ ମାର୍ଗରେ, ଶ୍ରୀଅରବିନ୍ଦଙ୍କ ଯୋଗ ଯିବ ତା' ମାର୍ଗରେ । ତା' ସଙ୍ଗେ ଆମର ସମ୍ପର୍କ କଅଣ ?

ପ୍ର—ଗୋଟିକୁ ବାଦ ଦେଲେ ଅନ୍ୟଟି ଅପୂର୍ଣ୍ଣ, ସେ ନେଇ ପରସ୍ପରର ସାମଞ୍ଜସ୍ୟ ଆବଶ୍ୟକ । ଗାନ୍ଧିଜୀ ଏବଂ ବିନୋବାଜୀ ଯେଉଁ ଦ୍ୱନ୍ଦ୍ୱବିହୀନ, ଶାନ୍ତି-ସୁଖମୟ ଜୀବନ ଚାହିଁଛନ୍ତି ତାହା ପ୍ରାପ୍ତ ହୁଏ ଶ୍ରୀଅରବିନ୍ଦଙ୍କ ଯୋଗରେ—ଅତିମାନସ ଶକ୍ତିଦ୍ୱାରା ମନୁଷ୍ୟର ମନପ୍ରାଣ-ଶରୀର ପୂର୍ଣ୍ଣ ରୂପାନ୍ତର ହେବା ଦ୍ୱାରା ସେହି ଅତିମାନସ ଶକ୍ତିକୁ ଶ୍ରୀଅରବିନ୍ଦ ଏହି ପୃଥିବୀକୁ ଅବତରଣ କରାଇ ଆଣି ଅଛନ୍ତି । ଏହି ଅତିମାନସ ଶକ୍ତି ଛଡ଼ା ଅନ୍ୟ କୌଣସି ପୁରାତନ ଯୋଗ-ପ୍ରକ୍ରିୟା ଦ୍ୱାରା ଏହା ସମ୍ଭବ ନୁହେଁ । ଏହି କାରଣରୁ ଗାନ୍ଧିଜୀଙ୍କ ଉଦ୍ଦେଶ୍ୟ ସିଦ୍ଧିରେ ଅତିମାନସ-ଶକ୍ତିର ସାହାଯ୍ୟ ଏକାନ୍ତ ଆବଶ୍ୟକ । ଶ୍ରୀଅରବିନ୍ଦଙ୍କ ଯୋଗରେ ଅନ୍ଧକାର ଶକ୍ତିର କବଳରୁ ପୂର୍ଣ୍ଣତଃ ମୁକ୍ତ ଏବଂ ଦିବ୍ୟ-ମାନବ ସମାଜ ପୃଥିବୀରେ ସ୍ଥାପନ ଲକ୍ଷ୍ୟ ହେବାରୁ, ଗାନ୍ଧିଜୀଙ୍କ ଉଦ୍ଦେଶ୍ୟ ସୁଖମୟ ଜୀବନ ଓ ଭାରତର ସ୍ୱତନ୍ତ୍ରତା, ଏହା ଶ୍ରୀଅରବିନ୍ଦଙ୍କ ଯୋଗରେ ଅନିବାର୍ଯ୍ୟରୂପେ ସହାୟକ । ଏହି କାରଣରୁ ଶ୍ରୀଅରବିନ୍ଦଙ୍କ ଯୋଗ ଓ ଗାନ୍ଧିଜୀଙ୍କ ଉଦ୍ଦେଶ୍ୟ ମଧ୍ୟରେ ପରସ୍ପର ବିରୋଧ ନ ଥାଇ ପୂର୍ଣ୍ଣ ସାମଞ୍ଜସ୍ୟ ରହିଅଛି ।

ସଂସାରରେ ଯେଉଁ ଦୁର୍ନୀତି ଦେଖାଯାଏ ତାହାର ନିବାସ ସ୍ଥାନ ଅବଚେତନାରେ । ଅବଚେତନାର ରୂପାନ୍ତର ନ ହେଲେ ନୈତିକ ବିଚାର, ଧାର୍ମିକ ପ୍ରସ୍ତାବ ଦ୍ୱାରା ଅସ୍ଥାୟୀ ଆଉ ଆଂଶିକରୂପେ ସଂସାରରେ କିଛି ପରିବର୍ତ୍ତନ ଆସେ ଏବଂ କିଛିଦିନ ପରେ ନଷ୍ଟ ହୋଇ ଯାଏ । ଏହି କାରଣରୁ ସଂସାର ଆରମ୍ଭରୁ ଆଜି ପର୍ଯ୍ୟନ୍ତ ସମସ୍ତ ପ୍ରଚେଷ୍ଟା ବ୍ୟର୍ଥ ହୋଇଛି, ସଂସାର ସେହି ସୁଖଦୁଃଖ, ଆଲୋକ-ଅନ୍ଧକାରରେ ଗତି କରୁଛି । ସଂସାରରୁ ଦୁର୍ନୀତି, ହିଂସା, ସ୍ୱାର୍ଥ ଆଦି ପ୍ରତିକୂଳ ଶକ୍ତିରାଜି ଦୂର ହୁଏ ଅତିମାନସ-ଶକ୍ତି ଦ୍ୱାରା—ଅବଚେତନାର ଆମୂଳଚୂଳ ରୂପାନ୍ତର ହେବାରେ । ଏହା ସଙ୍ଗେ ସଙ୍ଗେ ସାଧକମାନଙ୍କର ମନ, ପ୍ରାଣ, ଶରୀର ତାହାର ମୂଳ ଚିନ୍ମୟ ତତ୍ତ୍ୱରେ ରୂପାନ୍ତର ହୁଏ । ସେମାନେ ରୋଗ, ଜରା ମୃତ୍ୟୁରୁ ମୁକ୍ତ ହୁଅନ୍ତି । ଏହିରୂପେ ରୂପାନ୍ତରିତ ଗୋଟିଏ ଦିବ୍ୟ ମାନବ-ସମାଜ ସ୍ଥାପିତ ହେଲେ ଜଗତରେ ସ୍ଥାୟୀ ସୁଖ ଶାନ୍ତି ଆସେ । ସଂସାରରେ ଏହି ଦିବ୍ୟ ମାନବ ସମାଜ ସ୍ଥାପନ ହେଲା ଗାନ୍ଧିଜୀଙ୍କ ଚାହିଁଥିବା ସୁଖମୟ ଜୀବନଠାରୁ ନୂତନ । ଏହା ନ ହେଲେ ସଂସାରରେ ସାମୂହିକଭାବେ ସୁଖମୟ ଜୀବନ ସ୍ଥାୟୀରୂପେ ପ୍ରାପ୍ତ ହେବା ଏକେବାରେ ଅସମ୍ଭବ । ଶ୍ରୀଅରବିନ୍ଦଙ୍କ ଯୋଗରେ ଯଦି ଗାନ୍ଧିଜୀଙ୍କ ଲକ୍ଷ୍ୟ ପୂର୍ଣ୍ଣ ହୁଏ ତେବେ ତାହା ଗାନ୍ଧିଜୀଙ୍କ ସିଦ୍ଧାନ୍ତର ବିରୁଦ୍ଧ ହେବ କିପରି ? ସଂସାର ଏକ ଈଶ୍ୱରଙ୍କର । ତାଙ୍କ ବିଧାନରେ ସମସ୍ତ ସଂସାର ପରିଚାଳିତ ହେଉଅଛି । ମନୁଷ୍ୟର ଦୁଃଖ, ଦାରିଦ୍ର୍ୟମୟ ଜୀବନକୁ ସୁଖାନନ୍ଦରେ ପରିଣତ କରିବାକୁ ଯେଉଁମାନେ ଏହି ସଂସାରକୁ ଆସିଅଛନ୍ତି ସେମାନଙ୍କ କାର୍ଯ୍ୟ ପରସ୍ପର ପରିପୂରକ । ଗୋଟିଏ କାର୍ଯ୍ୟ ଛଡ଼ା ଅନ୍ୟଟି ଅପୂର୍ଣ୍ଣ । ଯେପରି ଗୋଟିଏ କମ୍ପାନୀରେ ବ୍ୟୋମଯାନର ବିଭିନ୍ନ ଅଂଶ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ଦ୍ୱାରା ପୃଥକ ସ୍ଥାନରେ ତିଆରି ହୁଏ, କିନ୍ତୁ ସମସ୍ତ ଭାଗ ଏକଜ କରି ଯୋଡ଼ିବାଦ୍ୱାରା ଯାନଟି ତିଆରି ହୁଏ ଏବଂ ମନୁଷ୍ୟର ସେବାରେ ଲାଗେ ।

ସେହିପରି ମନୁଷ୍ୟ ଜୀବନରେ ଉନ୍ନତି ପକାଶେ କର୍ମ ଏବଂ ଅଧ୍ୟାତ୍ମ-ଅତିମାନସ ରୂପାନ୍ତର ପରସ୍ପର ସମ୍ବନ୍ଧିତ ।

କିନ୍ତୁ ସାମୂହିକରୂପେ ହୃଦୟସ୍ଥ ପରିବର୍ତ୍ତନ ବୈଦିକ ଯୁଗରୁ ଆରମ୍ଭ କରି ଏ ପର୍ଯ୍ୟନ୍ତ ହୋଇ ନାହିଁ । ଏହା ସମ୍ଭବ ନ ହେବା ଜାଣି ବୈଦିକ ଯୁଗରୁ ଆଜି ପର୍ଯ୍ୟନ୍ତ ଋଷି, ମୁନି, ମହାପୁରୁଷମାନେ ସଂସାର କର୍ମ ତ୍ୟାଗ କଲେ; ସଂସାରରୁ ନିଜକୁ ପୃଥକ କଲେ, ଅଧ୍ୟାତ୍ମ-ସାଧନ ଦ୍ୱାରା ହୃଦୟସ୍ଥ ମନକୁ ଶୁଦ୍ଧ ଅଥବା ଭଗବତ ପ୍ରାପ୍ତି ନିମିତ୍ତ ଆବଶ୍ୟକ ପରିବର୍ତ୍ତନ କରି ନିଜ ଲକ୍ଷ୍ୟରେ ପହୁଞ୍ଚିଗଲେ । ସଂସାର ଯେପରି ଦୁଃଖ କଷ୍ଟରେ ଗ୍ରସ୍ତ ଥିଲା, ତାହା ସେହିପରି ରହିଲା । ଆଉ କେତେକ ମହାପୁରୁଷ ଯଦ୍ୟପି ସଂସାର ପରିବର୍ତ୍ତନ କରିବାକୁ ଚାହିଁଥିଲେ, ତାହା ସଫଳ ହେଲା ନାହିଁ, ଯେବେ କୌଣସି ସମୟରେ ହେଲା, ତାହା ହେଲା ଆଂଶିକ ଏବଂ ଅସ୍ଥାୟୀ ।

ପ୍ର—ଏହା ସ୍ଥାୟୀ ଆଉ ପୂର୍ଣ୍ଣ ନ ହେବାର କାରଣ କ'ଣ ?

ଉ—ମନୁଷ୍ୟ ମଧ୍ୟରେ ଯେଉଁ କାମ, କ୍ରୋଧ, ହିଂସା, ଦ୍ୱେଷ, ଈର୍ଷା, ବିରୋଧାଦି ଦୁର୍ଗୁଣ ଅଛି ତାହାର ମୂଳ ସ୍ରୋତ ବିଶ୍ୱର ନିମ୍ନ ଜଡ଼ ଅବଚେତନା ମଧ୍ୟରେ । ତାହାର ମୂଳ ଉତ୍ସ ଯେ ପର୍ଯ୍ୟନ୍ତ ସଂସାରରୁ ଦୂର ହେବ ନାହିଁ, ଏହି ଦୁର୍ଗୁଣ ଯେପର୍ଯ୍ୟନ୍ତ ବିଦ୍ୟମାନ, ସେ ପର୍ଯ୍ୟନ୍ତ ଜଗତରେ ସ୍ଥାୟୀ ସୁଖ, ଶାନ୍ତି ସ୍ଥାପନା ସମ୍ଭବ ନୁହେଁ । ସେଥିପାଇଁ ଅଧ୍ୟାତ୍ମବାଦୀ ସାଧକମାନେ ନିଜକୁ ସଂସାରରୁ ପୃଥକ କରିନେଲେ, ନିଜକୁ ଗୋଟିଏ ଶ୍ରେଷ୍ଠ ଆବରଣରେ ରଖି ଅଧ୍ୟାତ୍ମ-ସାଧନାଦ୍ୱାରା ନିଜ ଦୋଷ ତ୍ରୁଟିକୁ ଦୂର କରି ନିର୍ବାଣ ବା ଭଗବଦ ପ୍ରାପ୍ତି କଲେ । ଅନ୍ଧକାର ଶକ୍ତିର ମୂଳ ଉତ୍ସ ରୂପାନ୍ତର ନ ହେବାରୁ ଏପର୍ଯ୍ୟନ୍ତ ସଂସାର ପରିବର୍ତ୍ତିତ ହୋଇନାହିଁ । ଏହି ଅନ୍ଧକାର ଶକ୍ତି ରୂପାନ୍ତରିତ ହୁଏ ଅତିମାନସ ଶକ୍ତିଦ୍ୱାରା । ସେହି ଅତିମାନସ ଶକ୍ତିକୁ ଶ୍ରୀଅରବିନ୍ଦ ପୃଥିବୀକୁ ଅବତରଣ କରାଇ ଆଣି ଅଛନ୍ତି ।

ଶ୍ରୀଅରବିନ୍ଦ ବିଲାତରୁ I. C. S. ପାସକରି ଆସି ବରୋଦାରେ ସର୍ଭିସ କଲେ । ଅଣ୍ଡି ଗୁପ୍ତରୂପେ ଭାରତ-ସ୍ୱାଧୀନତା କରିବା କାର୍ଯ୍ୟ ମଧ୍ୟ କଲେ । ତାଙ୍କର ଉଦ୍ଦେଶ୍ୟ ଥିଲା, ଆଧ୍ୟାତ୍ମିକ ଶକ୍ତି ଦ୍ୱାରା ଭାରତକୁ ସ୍ୱତନ୍ତ୍ର କରିବେ । ଏହି ବିଷୟ ତାଙ୍କ ସ୍ତ୍ରୀଙ୍କୁ ବି ଚିଠିରେ ଲେଖିଥିଲେ । ବଙ୍ଗଳା ଭାଷାରେ "ଶ୍ରୀଅରବିନ୍ଦେର ପତ୍ର" ନାମରେ ବହି ପ୍ରକାଶିତ ହୋଇଅଛି । ଏହି ଉଦ୍ଦେଶ୍ୟରେ ସେ ସାଧନା କଲେ, କିନ୍ତୁ ତାଙ୍କୁ ସିଦ୍ଧି ପ୍ରାପ୍ତ ହେଲା, ଅଦ୍ୱୈତ, ନିର୍ବିଶେଷ ବ୍ରହ୍ମରେ ମିଶିଯିବା, ଯାହା ଆଚାର୍ଯ୍ୟ ଶଙ୍କରଙ୍କ ଲକ୍ଷ୍ୟ । ପରେ ଆଲିପୁର ଜେଲରେ ତାଙ୍କୁ ଭଗବତ ସିଦ୍ଧି ପ୍ରାପ୍ତ ହେଲା, ଅର୍ଥାତ ସେ ବୃକ୍ଷ, ଲତା, ପଶୁ, ପକ୍ଷୀ, ମନୁଷ୍ୟ, ଘର, ସ୍ଥାବର ଅସ୍ଥାବର ବସ୍ତୁରେ ବାସୁଦେବଙ୍କୁ ଦର୍ଶନ କଲେ । ଏହି ସିଦ୍ଧି ତାଙ୍କ 'ଉତ୍ତରପଡ଼ା ଅଭିଭାଷଣ'ରେ ବର୍ଣ୍ଣିତ ହୋଇଅଛି ।

ପୁରାତନ ସମସ୍ତ ଯୋଗରେ ଭିନ୍ନ ଭିନ୍ନ ସଂପ୍ରଦାୟର ସାଧକ ସଂସାର ଆଉ କର୍ମରୁ ନିବୃତ୍ତ ହୋଇ ଯମ, ନିୟମ, ଧ୍ୟାନ, ଧାରଣା, ଆସନ, ପ୍ରାଣାୟାମ, ଜପ, ତପାଦି କଠୋର ସାଧନା କରି ଏହି ଦୁଇ ସିଦ୍ଧିରୁ ଗୋଟିକୁ ପ୍ରାପ୍ତ କରନ୍ତି । କିନ୍ତୁ ଶ୍ରୀଅରବିନ୍ଦ ରାଜନୀତିରେ କାର୍ଯ୍ୟ କରିବା ସମୟରେ ବିପ୍ଲବୀ ଦଳର ନେତା ସ୍ଥାନରେ ରହି ବ୍ରିଟିଶ ଗଭର୍ଣ୍ଣମେଣ୍ଟ ବିରୁଦ୍ଧରେ ସମସ୍ତ ଦଳକୁ ପରିଚାଳନା କରୁଥିଲେ । ତାଙ୍କର ପ୍ରତ୍ୟେକ କାର୍ଯ୍ୟର ସନ୍ଧାନ ପାଇବାକୁ ଗୁପ୍ତ ପୋଲିସ ବରାବର ରହି ଥାଆନ୍ତି । ତାଙ୍କୁ ବହୁତ ସତର୍କତାର ସହ କାର୍ଯ୍ୟ କରିବାକୁ ହେଉଥିଲା । ଏପରି ସ୍ଥଳରେ ବ୍ୟକ୍ତି ଚେତନା ଅନ୍ୟତ୍ର ଏକାଗ୍ର ହେବା ସମ୍ଭବ ନୁହେଁ, କିନ୍ତୁ ତାହା ସେ କରିପାରିଥିଲେ ତାଙ୍କର ଅନନ୍ୟ-ସୁଲଭ ଏକାଗ୍ରତା ବଳରେ । ଜଟିଳ ରାଜନୈତିକ ଆନ୍ଦୋଳନର କର୍ଣ୍ଣଧାରରୂପେ ମୁଖ୍ୟତଃ କାର୍ଯ୍ୟକରି ମଧ୍ୟ କେବଳ ଗୌଣ ଭାବରେ ଅଳ୍ପ ସାଧନାଦ୍ୱାରା ସେ ଅନାୟାସରେ ସମସ୍ତ ପୁରାତନ ଯୋଗର ଉକ୍ତ ଦୁଇ ସିଦ୍ଧିକୁ ପ୍ରାପ୍ତ କଲେ ।

ଶ୍ରୀ ଅରବିନ୍ଦଙ୍କର ଯଦି ବ୍ୟକ୍ତିଗତ ମୁକ୍ତି ଅଥବା ଭଗବତ୍ ପ୍ରାପ୍ତିହିଁ କେବଳକାମ୍ୟ ହୋଇଥାଆନ୍ତା, ତେବେ ତାଙ୍କୁ ଆଉ କିଛି କରିବାକୁ ହୋଇ ନ ଥା'ନ୍ତା । କିନ୍ତୁ ତାଙ୍କ ତପସ୍ୟା, ତାଙ୍କ ସାଧନା, ତାଙ୍କ ସିଦ୍ଧି, ତାଙ୍କ ବିଦ୍ୟା ତାଙ୍କ ନିଜ ପାଇଁ ନ ଥିଲା । ତାଙ୍କୁ ଯାହା କିଛି ପ୍ରାପ୍ତ ହୋଇଥିଲା ତାହା ସବୁ ଥିଲା ମନୁଷ୍ୟର ପୂର୍ଣ୍ଣ ସ୍ୱତନ୍ତ୍ରତା ପାଇଁ । ତାଙ୍କ ନିଜ ସୁଖ, ଆରାମକୁ ସେ ସବୁରୁ ମନୁଷ୍ୟର ଉନ୍ନତି ସାଧନ ପାଇଁ ତ୍ୟାଗ କରିଥିଲେ । ସେ ଚାହିଁଥିଲେ ମନୁଷ୍ୟ ଜାତିର ପୂର୍ଣ୍ଣ ସ୍ୱତନ୍ତ୍ରତା, ଅଖଣ୍ଡ ଅବିଚ୍ଛିନ୍ନ ସୁଖ । ଯେଉଁ ଗୋଟିଏ ଅଧ୍ୟାତ୍ମ-ସିଦ୍ଧିରେ ମନୁଷ୍ୟ କୃତକୃତ୍ୟ ହୁଏ ସେହି ଦୁଇଟି ଅଧ୍ୟାତ୍ମ-ସିଦ୍ଧିରେ ସେ ସନ୍ତୁଷ୍ଟ ହେଲେ ନାହିଁ । କାରଣ ତାଙ୍କର ଲକ୍ଷ୍ୟ ବ୍ୟକ୍ତିଗତ ସିଦ୍ଧି ନ ଥିଲା, ଥିଲା ମନୁଷ୍ୟ ଜାତି ପାଇଁ, ଅଖଣ୍ଡ ସୁଖ ପ୍ରାପ୍ତିର ଲକ୍ଷ୍ୟ । ସେ ନିଃସନ୍ଦେହଭାବରେ ଜାଣିଥିଲେ, ତାଙ୍କର ଦୃଢ଼ ବିଶ୍ୱାସ ଥିଲା କୌଣସି ଗୋଟିଏ ଗୁପ୍ତ ରହସ୍ୟ ଅଛି, ଯାହା ଆବିଷ୍କୃତ ହେଲେ ମନୁଷ୍ୟ ଅଖଣ୍ଡ ସୁଖ, ଶାନ୍ତି ପାଇବ । ଏହି ଗୁପ୍ତ ରହସ୍ୟର ସନ୍ଧାନ ସେ ପାଇଲେ ଆଲିପୁର ଜେଲରେ । ସେ ଦେଖିଲେ ଗୋଟିଏ ଅତିମାନସ ସୃଜନୀ ଆଦ୍ୟା ପରାତ୍ପର ଶକ୍ତି ଅଛି, ଯାହାଦ୍ୱାରା ଏହି ସମସ୍ତ ବିଶ୍ୱ-ବ୍ରହ୍ମାଣ୍ଡ ସୃଷ୍ଟି ହୋଇଅଛି । ସେହି ଶକ୍ତି ଏହି ପୃଥିବୀକୁ ଅବତରଣକରି ଆସିଲେ ତାହାର ଦ୍ୱାରା ମନୁଷ୍ୟର ମନ-ପ୍ରାଣ-ଶରୀର ତାହାର ମୂଳ ଚିନ୍ମୟ

ତତ୍ତ୍ୱରେ ରୂପାନ୍ତରିତ ହେବ । ତାଙ୍କୁ ପୂର୍ଣ୍ଣଜ୍ଞାନ, ଅଖଣ୍ଡ ଦିବ୍ୟାନନ୍ଦ ପ୍ରାପ୍ତ ହେବ । ସେ ଭଗବାନଙ୍କ ସଙ୍ଗେ ସମ୍ପୂର୍ଣ୍ଣ ଏକତ୍ୱ ପ୍ରାପ୍ତ କରିବ । ଭଗବାନ ନିର୍ବିବରଣରୂପେ ତାହାର ସମସ୍ତ ସତ୍ତ୍ୱରେ ପ୍ରକଟ ହେବେ । ସେ ଜରା, ମୃତ୍ୟୁ, ରୋଗ, ମାୟା, ଦୁଃଖ, ଦ୍ୱନ୍ଦ୍ୱ, କବଳରୁ ମୁକ୍ତ ହେବ । ସେ ବରାବର ଭଗବାନଙ୍କଠାରୁ ଅନ୍ତର ନିର୍ଦ୍ଦେଶ ପାଇ ରାଜନୀତି କାର୍ଯ୍ୟ କରୁଥିଲେ । ସେହି ଅଲିପୁର ଜେଲରେ ତାଙ୍କୁ ଆଦେଶ ହେଲା, "ଭାରତ ସ୍ୱତନ୍ତ୍ରତାରେ ତୁମର ଯେତେ କାର୍ଯ୍ୟ କରିବାର ତାହା ହୋଇଗଲା । ବର୍ତ୍ତମାନ ତୁମ ପକାଶେ ଆମ୍ଭେ ଅନ୍ୟ କାର୍ଯ୍ୟ ନିର୍ଦ୍ଦିଷ୍ଟ କରିଅଛୁ ।" ପରେ ଚନ୍ଦନ ନଗରରୁ ଭଗବାନଙ୍କ ଆଦେଶ ପାଇ ସେ ପଣ୍ଡିଚେରୀ ଆସିଲେ ।

୧୯୧୦ ସାଲରୁ ଶ୍ରୀ ଅରବିନ୍ଦ ପଣ୍ଡିଚେରୀରେ ଏକାନ୍ତ ଗୀବ୍ ସାଧନାରେ ରତ ହେଲେ । ଶ୍ରୀମା ୧୯୧୪ ରେ ଫ୍ରାନ୍ସରୁ ଆସିଲେ । ଶ୍ରୀ ଅରବିନ୍ଦ ଏବଂ ମା' ଉଭୟ, ଏହି ଏକହିଁ କାର୍ଯ୍ୟ କରିବା ପକାଶେ ଏହି ସଂସାରକୁ ଆସି ଅଛନ୍ତି । ମା' ସ୍ପଷ୍ଟ ଏକଥା ବୁଝିପାରିଲେ ଏବଂ ଶ୍ରୀଅରବିନ୍ଦଙ୍କ ସଙ୍ଗେ ସାଧନାରେ ରତ ହେଲେ । ପ୍ରଥମ ମହାଯୁଦ୍ଧ ଯୋଗୁ ମା'ଙ୍କୁ ୧୯୧୪ରେ ଫ୍ରାନ୍ସ ଫେରି ଯିବାକୁ ହେଲା, ପୁନରାୟ ୧୯୨୦ରେ ପଣ୍ଡିଚେରୀ ଫେରି ଆସି ସ୍ଥାୟୀରୂପେ ଏପର୍ଯ୍ୟନ୍ତ ଅଛନ୍ତି । ୧୯୨୬ ନଭେମ୍ବର ତା ୨୪ ରାତିରେ ଶ୍ରୀଅରବିନ୍ଦ ଏବଂ ଶ୍ରୀମା'ଙ୍କୁ ସିଦ୍ଧି ପ୍ରାପ୍ତ ହେଲା । ସେ ସିଦ୍ଧି ଥିଲା ଅତିମାନସକୁ ଏହି ପୃଥିବୀକୁ ଉତାରି ଆଣିବାର ପୂର୍ଣ୍ଣଜ୍ଞାନ ଏବଂ ଉପାୟର ରହସ୍ୟ ପ୍ରାପ୍ତି । ସେହି ଦିନଠାରୁ ଶ୍ରୀଅରବିନ୍ଦ ମା'ଙ୍କ ଉପରେ ଆଶ୍ରମର ସମସ୍ତ ଭାର ନ୍ୟସ୍ତ କରି ଏକେବାରେ ଏକାନ୍ତ ସାଧନାରେ ରତ ହେଲେ । ଅନ୍ତ ୧୯୫୦ ସାଲରେ ଅତିମାନସ ଶକ୍ତିକୁ ଏହି ପୃଥିବୀକୁ ଉତାରି ଆଣି ସ୍ୱେଚ୍ଛାରେ ଶରୀର ତ୍ୟାଗ କଲେ ।

ପ୍ର—ଅତିମାନସ ଶକ୍ତିଦ୍ୱାରା ମନୁଷ୍ୟ ଜରା, ମୃତ୍ୟୁ, ରୋଗରୁ ମୁକ୍ତ ହୋଇପାରିବ, କିନ୍ତୁ ଶ୍ରୀଅରବିନ୍ଦ ସ୍ୱୟଂ ଅତିମାନସ ଶକ୍ତିକୁ ଏହି ପୃଥିବୀକୁ ଉତାରି ଆଣି ଶରୀର ତ୍ୟାଗ କଲେ କାହିଁକି ?

ଉ—ଶ୍ରୀଅରବିନ୍ଦ ସ୍ୱେଚ୍ଛାରେ ଅନ୍ଧକାର ଶକ୍ତିର ସମସ୍ତ ବିଷ, ନିଜ ଶରୀରରେ ନେଇ ଅତିମାନସ ଶକ୍ତିର ଅବତରଣ ମାର୍ଗ ଉନ୍ମୁକ୍ତ କଲେ । ଅତିମାନସ ଶକ୍ତି ଏହି ପୃଥିବୀରେ ଅବତରଣ କରିବା ସମୟରେ ତା'ର ପଥରୋଧ କରିବାକୁ ଅନ୍ଧକାର ଶକ୍ତିସମୂହ ଯଥା—ରୋଗ, ଜରା, ହିଂସା, ଦ୍ୱେଷ, ବୈର ବିରୋଧାଦି ବିଷକୁ ପୃଥିବୀ ପୃଷ୍ଠରେ ନିକ୍ଷେପ କଲେ. ଯାହାର ପରିଣାମ ସ୍ୱରୂପ ସଂସାର ଧ୍ୱଂସମୁଖରେ ଯାଇପାରି-ଥାଆନ୍ତା ଏବଂ ଅତିମାନସର ଅବତରଣ ହୋଇ ପାରି ନ ଥା'ନ୍ତା । ସେହି ସମସ୍ତ ବିଷକୁ ଶ୍ରୀଅରବିନ୍ଦ ନିଜ ଶରୀରରେ ନେଇ ଦେହ ତ୍ୟାଗ କଲେ । ସେ ଜାଣିଥିଲେ ଅତିମାନସ ଶକ୍ତି ଅବତରଣ ନ କଲେ, ତାହା ନିମିତ୍ତ ଉପଯୁକ୍ତ ଆଧାର ପ୍ରସ୍ତୁତ ହୋଇପାରିବ ନାହିଁ । ଅତଏବ ଅତିମାନସ ଶକ୍ତିର ଅବତରଣ ଅତ୍ୟାବଶ୍ୟକ । ମା' ଶ୍ରୀଅରବିନ୍ଦଙ୍କ ଚେତନା ଏକ, ଶରୀର ଦୁଇ । ଶ୍ରୀଅରବିନ୍ଦ ଦେହ ତ୍ୟାଗ କଲେ, ମା' ସେହି ଅତିମାନସ ଶକ୍ତିକୁ ଧାରଣ କରି ରୂପାନ୍ତର କ୍ରିୟା କରୁଅଛନ୍ତି । ଅତିମାନସ ଶକ୍ତିର ଅବତରଣ ସଙ୍ଗେ ସଙ୍ଗେ ମନୁଷ୍ୟ ଜରା, ମୃତ୍ୟୁ, ରୋଗରୁ ମୁକ୍ତ ହୋଇ ଦିବ୍ୟ-ମାନବରେ ରୂପାନ୍ତରିତ ହୁଏ ନାହିଁ । ଅତିମାନସ ଶକ୍ତିଦ୍ୱାରା ସାଧକର ସମସ୍ତ ସତ୍ତ୍ୱା କ୍ରମଶଃ ରୂପାନ୍ତରିତ ହୁଏ । ଏହି ରୂପାନ୍ତର ଅନୁପାତରେ ସେ ଜରା, ରୋଗ, ମୃତ୍ୟୁ କବଳରୁ କ୍ରମଶଃ ମୁକ୍ତ ପାଉଥାଏ । ସାଧକର ମନ, ପ୍ରାଣ, ଶରୀର ସମଗ୍ର ରୂପାନ୍ତର ହେଲେ ସେ ଅନ୍ଧକାର ଶକ୍ତିର ରୋଗ, ଜରା, ମୃତ୍ୟୁ କବଳରୁ ପୂର୍ଣ୍ଣତଃ ମୁକ୍ତ ହୁଏ । ପୂର୍ବରୁ କୁହାହୋଇଛି, ଶ୍ରୀଅରବିନ୍ଦଙ୍କ ସାଧନା ନିଜ ପାଇଁ ନୁହେଁ, ଭଗବତ ସଂକଳ୍ପ ଅନୁସାରେ ମନୁଷ୍ୟ ଜାତି ପାଇଁ । ସେ ମନୁଷ୍ୟ ଜାତିର ପ୍ରତିନିଧି । ତାଙ୍କ ଶରୀର ଅତିମାନସ ଶକ୍ତିଦ୍ୱାରା ପୂର୍ଣ୍ଣ ରୂପାନ୍ତର ହୋଇ ନ ଥିଲା । ସେହି କାରଣରୁ ସେ ସମସ୍ତ ବିଷ ନିଜ ଶରୀରରେ ନେଇ ଶରୀର ତ୍ୟାଗ କଲେ ।

ଇଶ୍ୱର ଏକ । ସେ ପୂର୍ଣ୍ଣ ଜ୍ଞାନ, ପୂର୍ଣ୍ଣ ଆନନ୍ଦ, ପୂର୍ଣ୍ଣ ଶାନ୍ତି, ପୂର୍ଣ୍ଣ ସମତା ଇତ୍ୟାଦି ଦିବ୍ୟଗୁଣ ଏବଂ ଦିବ୍ୟ-ଶକ୍ତିର ସ୍ୱରୂପ । ସେହି ଏକହିଁ ଈଶ୍ୱର ବିବିଧ ରୂପରେ ପ୍ରକଟ ହୋଇଅଛନ୍ତି । ତାଙ୍କଠାରୁ କୌଣସି ବସ୍ତୁ ପୃଥକ୍ ନୁହେଁ, ସେ ସର୍ବତ୍ର ପରିପୂର୍ଣ୍ଣ । ଅତିମାନସ ଜ୍ଞାନଦ୍ୱାରା ସାଧକର ସମସ୍ତ ସତ୍ତ୍ୱା ଭଗବାନଙ୍କ ସହିତ ଏକତ୍ୱ ପ୍ରାପ୍ତ ହେଲେ ତାହାର ଅଜ୍ଞ-ଜ୍ଞାନର ସୀମା ବନ୍ଧନ ଭାଙ୍ଗି ଯାଏ । ସେହି କାରଣରୁ ପୂର୍ବ ଯୋଗରେ ଜ୍ଞାନ, ଭକ୍ତି, ଈଶ୍ୱର ସାକାର, ନିରାକାର, ରାମ, କୃଷ୍ଣ, ଶିବ, ଦୁର୍ଗା ପୃଥକ୍ ଉପାସନାର ଯେଉଁ ଭେଦ-ଭାବ ବା ବିରୋଧ ଥିଲା—ସେହିସବୁର ଶ୍ରୀଅରବିନ୍ଦଙ୍କ ଯୋଗରେ ସମନ୍ୱୟ ହୁଏ । ଅତିମାନସ ଯୋଗର ସାଧକ ଏହି ସମସ୍ତ ଉପଲବ୍ଧି ଏକ ସଙ୍ଗରେ କରେ । ସେଥିପାଇଁ ଶ୍ରୀଅରବିନ୍ଦଙ୍କ ଯୋଗ କୌଣସି ପୁରାତନ ଯୋଗର ବିରୋଧୀ ନୁହେଁ । ସମସ୍ତ ପୁରାତନ ଯୋଗ-ସାଧକଙ୍କର ପୂର୍ଣ୍ଣତାରେ ଶ୍ରୀଅରବିନ୍ଦଙ୍କ ଯୋଗ ସାହାଯ୍ୟ କରେ ।

ଶ୍ରୀଅରବିନ୍ଦଙ୍କ ଯୋଗ, ଜ୍ଞାନ, ଭକ୍ତି, କର୍ମ ଏହି ତିନିକୁ ଏକ ସଙ୍ଗରେ ନେଇ ଚାଲିଲା । କର୍ମ, ଜୀବନ ଓ ସଂସାରକୁ ତ୍ୟାଗ କରେ ନାହିଁ । କର୍ମକୁ ଉନ୍ନତ, ଶୁଦ୍ଧ ଓ ବିଶାଳ କରି ତୋଳେ । ସଂସାରରେ ହିଂସା, ଦ୍ୱେଷ, ବିଦ୍ରୋହାଦି

ସ୍ଥାନରେ ସାମ୍ୟଭାବ, ଅହିଂସା, ପ୍ରେମ ସ୍ଥାପନ କରେ। ପ୍ରତ୍ୟେକ ମନୁଷ୍ୟ ମଧ୍ୟରେ, ଦେଶ ଦେଶ ମଧ୍ୟରେ ସାମ୍ୟଭାବ ଆଉ ପ୍ରେମ-ଭାବ ଉତ୍ପନ୍ନ ହେଲେ ବୈରତା, ହିଂସା, ଯୁଦ୍ଧ ଦୂର ହୋଇ ସ୍ୱାଭାବିକ ମୈତ୍ରୀଭାବ ସ୍ଥାପିତ ହେବ। ଏହି ସଂସାର ସ୍ୱର୍ଗରେ ଏବଂ ଦୁଃଖମୟ-ଜୀବନ ପରମ ଆନନ୍ଦରେ ପରିଣତ ହେବ। ସେହି ସକାଶେ କୃଷକ, ବ୍ୟବସାୟୀ, ଦେଶସେବକ, ସରକାରୀ କର୍ମଚାରୀ ଆଦି ପ୍ରତ୍ୟେକ ମନୁଷ୍ୟ ସକାଶେ ଶ୍ରୀଅରବିନ୍ଦଙ୍କ ଯୋଗ କେବଳ ଯେ ଆବଶ୍ୟକ ତାହି ନୁହେଁ, ଅପରିହାର୍ଯ୍ୟ ବି। କାରଣ ପ୍ରତ୍ୟେକ ବ୍ୟକ୍ତିର ସୁଖ ପ୍ରାପ୍ତି କରିବା କାମ୍ୟ। ଯଥାର୍ଥ ସ୍ଥାୟୀସୁଖ ଅନ୍ୟ କୌଣସି ଉପାୟରେ କୌଣସି ସଂସାରିକ କର୍ମ ଏବଂ ସମ୍ବନ୍ଧରେ ପ୍ରାପ୍ତ ହେବ ନାହିଁ, ତାହା ପ୍ରାପ୍ତ ହେବ ଅଧ୍ୟାତ୍ମ-ଅତିମାନସ ଶକ୍ତିଦ୍ୱାରା ପରିଚାଳିତହୋଇ କାର୍ଯ୍ୟ କରିବାରେ।

ଏଥିରୁ ଅନୁମାନ କରାଯାଏ ଶ୍ରୀଅରବିନ୍ଦ, ମହାତ୍ମା ଗାନ୍ଧୀ, ବିନୋବାଜୀ ଯଦ୍ୟପି ଭିନ୍ନ ଭିନ୍ନ କାର୍ଯ୍ୟ କରିଛନ୍ତି, ତଥାପି ସେମାନଙ୍କ କର୍ମ ଏକହିଁ ମନୁଷ୍ୟ ଜାତିର ଉନ୍ନତି ସକାଶେ ହୋଇଥିବାରୁ ପରସ୍ପର ପରିପୂରକ, ଏପରିକି ଏକ ବିନା ଅନ୍ୟ ଅପୂର୍ଣ୍ଣ। ଶ୍ରୀଅରବିନ୍ଦଙ୍କ ଯୋଗରେ ଜୀବନ ପୂର୍ଣ୍ଣତା ସକାଶେ, ଗାନ୍ଧିଜୀଙ୍କ ସ୍ୱରାଜ ଆବଶ୍ୟକ ଥିଲା ଏବଂ ଗାନ୍ଧୀଜୀଙ୍କ ଆକାଙ୍କ୍ଷିତ ସ୍ୱରାଜ୍ୟ ପୂର୍ଣ୍ଣହେବା ସକାଶେ ଶ୍ରୀଅରବିନ୍ଦଙ୍କ ଅତିମାନସ ଶକ୍ତିର ଏକାନ୍ତ ଆବଶ୍ୟକ।

ପ୍ର—ମହାତ୍ମା ଗାନ୍ଧୀ ସ୍ୱରାଜ୍ୟ ପ୍ରାପ୍ତ କରି ସାରିଛନ୍ତି, ବର୍ତ୍ତମାନ ଅଧ୍ୟାତ୍ମ-ଅତିମାନସ ଶକ୍ତି ସାହାଯ୍ୟର ଆବଶ୍ୟକତା କ'ଣ ?

ଉ—ବର୍ତ୍ତମାନ ସ୍ୱରାଜ୍ୟ ଅପୂର୍ଣ୍ଣ। ମନୁଷ୍ୟ-ଜୀବନ, ରୋଗ, ଦ୍ୱନ୍ଦ୍ୱ, ଅଶାନ୍ତି, ସ୍ୱାର୍ଥପରତା, ହିଂସା, ଦ୍ୱେଷରେ ଭରପୂର ଏବଂ ଅନ୍ଧକାର ଶକ୍ତିସମୂହର ପୂର୍ଣ୍ଣତଃ ଅଧୀନ। ଯେପର୍ଯ୍ୟନ୍ତ ମନୁଷ୍ୟ ଏ ସବୁରୁ ମୁକ୍ତ ନୁହେଁ ସେ ପର୍ଯ୍ୟନ୍ତ ତାହାର ଯଥାର୍ଥ ସ୍ୱାଧୀନତା ନାହିଁ, ସେ ଯଥାର୍ଥ ସୁଖମୟ-ଜୀବନଠାରୁ ବହୁତ ଦୂରରେ। ସୁଖମୟ ଜୀବନ ଓ ପୂର୍ଣ୍ଣ ସ୍ୱତନ୍ତ୍ରତା ପ୍ରାପ୍ତି ହେବ ଅଧ୍ୟାତ୍ମ-ଅତିମାନସ ଶକ୍ତିର ଆଶ୍ରୟରେ।

ନୈତିକତା ଆଉ ଶାସନ-ବିଧାନଦ୍ୱାରା ମନୁଷ୍ୟ ମଧ୍ୟରୁ ଦୁର୍ନୀତି ଦୂର ହୋଇ ପାରେନାହିଁ। ଶାସନର ଆଇନ୍ ଏବଂ ନୈତିକ ବନ୍ଧନରେ ସଂସାରରେ ସୁଖ-ଶାନ୍ତି ସ୍ଥାପନ କରିବାକୁ ସୃଷ୍ଟି ଆରମ୍ଭରୁ ଆଜିପର୍ଯ୍ୟନ୍ତ ଭିନ୍ନ ଭିନ୍ନ ସମୟରେ ବିଭିନ୍ନରୂପେ ପ୍ରଯତ୍ନ ହୋଇ ଆସିଅଛି। ଏହି ସମସ୍ତ ପ୍ରୟାସ ବରାବର ବ୍ୟର୍ଥତାରେ ପରିଣତ ହୋଇଛି। ଭାରତ ସ୍ୱତନ୍ତ୍ର ହେବାପରେ ସ୍ୱାଧୀନ ସରକାର ଭାରତବାସୀଙ୍କୁ ସୁଖୀ, ସମୃଦ୍ଧିଶାଳୀ, ସତ୍ୟବାଦୀ, ନ୍ୟାୟପରାୟଣ, ସନ୍ତୋଷ ଇତ୍ୟାଦି ଦିବ୍ୟଗୁଣରେ ବିଭୂଷିତ ଆଦର୍ଶ ମାନବରୂପେ ଦେଖିବାକୁ ଚାହୁଁଛନ୍ତି, କିନ୍ତୁ ହେଉଛି ବାସ୍ତବ କ୍ଷେତ୍ରରେ ଠିକ୍ ତାହାର ବିପରୀତ। ଭାରତ ସ୍ୱତନ୍ତ୍ର ହେବା ଦିନଠାରୁ ବହୁତ ଅଧିକ ପରିମାଣରେ ଦୁର୍ନୀତି ବଢ଼ି ଚାଲିଛି। ଏହି ଦୁର୍ନୀତି ସାଧାରଣ ବ୍ୟକ୍ତିଙ୍କ ମଧ୍ୟରେ ନୁହେଁ, ମନ୍ତ୍ରୀଙ୍କ ଆରମ୍ଭ କରି ଶେଷ ପର୍ଯ୍ୟନ୍ତ। ଏହା ଏକେବାରେ ସ୍ପଷ୍ଟ ଆଉ ନିର୍ବିବାଦ ଯେ, ଯେପର୍ଯ୍ୟନ୍ତ ମନୁଷ୍ୟର ସମସ୍ତ ସତ୍ତା ଆଧ୍ୟାତ୍ମିକ ଅତିମାନସ ଶକ୍ତିଦ୍ୱାରା ରୂପାନ୍ତର ନ ହେବ ସେପର୍ଯ୍ୟନ୍ତ ସଂସାରରୁ ଦୁର୍ନୀତି ଦୂର ହେବ ନାହିଁ। ମନୁଷ୍ୟ ଜାତିର ହିତସାଧନର କୌଣସି କାର୍ଯ୍ୟ ସ୍ଥାୟୀ ହେବ ନାହିଁ। ମନୁଷ୍ୟର ଯଥାର୍ଥ ସ୍ଥାୟୀ ହିତସାଧନ ପାଇଁ ଗାନ୍ଧିଜୀ, ବିନୋବାଜୀଙ୍କ କର୍ମର ଭିତ୍ତି ଅଧ୍ୟାତ୍ମ ଅତିମାନସ ହେବା ଅନିବାର୍ଯ୍ୟ। ମନୁଷ୍ୟ ଜାତିର ଉନ୍ନତି ସାଧନ ଶ୍ରୀଅରବିନ୍ଦଙ୍କ ଯୋଗର ଲକ୍ଷ୍ୟ ହେବାରୁ ସେଥିରେ କର୍ମ ଅପରିହାର୍ଯ୍ୟ। କର୍ମ ଆଉ ଆଧ୍ୟାତ୍ମିକତା ଏହି ଉଭୟର ମିଳନରେ, ମନୁଷ୍ୟ ଜାତିର ଯଥାର୍ଥ ସ୍ଥାୟୀ ଉନ୍ନତି ହେବ, ଏହି ଦୁଇ ମଧ୍ୟରୁ କୌଣସି ଗୋଟିକୁ ପୃଥକ କଲେ ଅନ୍ୟଟି ପୂର୍ଣ୍ଣ ହୋଇପାରେ ନାହିଁ, ପରସ୍ପର ମଧ୍ୟରେ ଘନିଷ୍ଠ ସମ୍ବନ୍ଧ। ଏହି କାରଣରୁ ଶ୍ରୀଅରବିନ୍ଦଙ୍କ ଯୋଗ ଗାନ୍ଧିଜୀ ଓ ବିନୋବାଜୀଙ୍କ କର୍ମର ବିରୋଧୀ ନୁହେଁ, ବରଂ ଅନିବାର୍ଯ୍ୟରୂପେ ତାହାର ପରିପୂରକ।

ପ୍ର—ସଂସାରର ଉନ୍ନତି ସାଧନ ସକାଶେ ଯେଉଁମାନେ କର୍ମ କରୁଛନ୍ତି, ସେମାନଙ୍କୁ କ'ଣ ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କୁ ସଂଚାଳକରୂପେ ଗ୍ରହଣ କରିବାକୁ ହେବ ?

ଉ—ପ୍ରଶ୍ନଟି ଖୁବ୍ ସଙ୍କୁଚିତ, ଭେଦଗତ ଓ ସ୍ୱାର୍ଥବୁଦ୍ଧିଯୁକ୍ତ ମନର। ଯେଉଁମାନେ ଯଥାର୍ଥରେ ମନୁଷ୍ୟ ଜାତିର ଉନ୍ନତି ସାଧନ ପାଇଁ କର୍ମରେ ତତ୍ପର, ସେମାନଙ୍କ ମନରେ ଏ ପ୍ରକାର ପ୍ରଶ୍ନ ଆଦୌ ଉଠିଥିବା ହେବନାହିଁ, ଯେଉଁମାନେ ନିଜ ସ୍ୱାର୍ଥ ସିଦ୍ଧି ସକାଶେ ମନୁଷ୍ୟ ଜାତିର ମହାନ ସେବାକୁ ଏକ ଉପାୟ ବୋଲି ଖାଲି ବାହାନା କରନ୍ତି, ସେମାନଙ୍କର ମନରେ ଏପରି କଳୁଷିତ ପ୍ରଶ୍ନ ହୋଇପାରେ। ଯଦି କୌଣସି ବ୍ୟକ୍ତି ରୋଗଗ୍ରସ୍ତ ହୋଇଥାଏ, ସେ ରୋଗ ମୁକ୍ତିର ଯେକୌଣସି ଉପାୟ ବିନା ଦ୍ୱିଧାରେ ଗ୍ରହଣ କରେ। ଯଦି କେହି ବ୍ୟକ୍ତି ରାଜନୀତିଜ୍ଞ, ଡାକ୍ତର ଏବଂ ସ୍ୱାସ୍ଥ୍ୟବାନ ହେବାକୁ ଚାହେଁ, ତେବେ ସେ ତନିପ୍ରକାର ବ୍ୟକ୍ତିଙ୍କଠାରୁ ଭିନ୍ନ ଭିନ୍ନ ଗୁଣ ଗ୍ରହଣ କରିବ ଏବଂ ତାଙ୍କର ଲକ୍ଷ୍ୟ ତେବେ ପୂର୍ଣ୍ଣ ହେବ। ସେ କ'ଣ କେବେ ଭାବିବାକୁ ଯିବ—

ଏହି ଦୁଇଙ୍କ ମଧ୍ୟରେ ପରସ୍ପର ସାମଞ୍ଜସ୍ୟ ନା ବିରୋଧ, ଏହା ମଧ୍ୟରେ ବଡ଼ କିଏ, ସାନ କିଏ ? ପ୍ରକୃତରେ ଗୁଣଗ୍ରହଣ କରିବା ବ୍ୟକ୍ତି ମଧ୍ୟରେ କେବେ ବି ଅସାମଞ୍ଜସ୍ୟ ନ ଥାଏ । ବିରୋଧ ସୃଷ୍ଟି କରିବା ଥାଏ କେବଳ ନ କରିବା ବ୍ୟକ୍ତିଙ୍କର ।

ଯେଉଁ ମହାପୁରୁଷମାନେ ସଂସାରରେ କୌଣସି ବିଶେଷ କାର୍ଯ୍ୟ କରିବାକୁ ଆସନ୍ତି, ଆଉ କରନ୍ତି— ଯେପରି ଶ୍ରୀରାମ, ଶ୍ରୀକୃଷ୍ଣ, ବୁଦ୍ଧ, ଶଙ୍କର, ରାମାନୁଜ— ସେମାନଙ୍କୁ ସଞ୍ଚାଳକରୂପେ ବ୍ୟକ୍ତି ମାନନ୍ତୁ, ଏହି ଧାରଣା ନେଇ ସେମାନେ କାର୍ଯ୍ୟ କରନ୍ତି ନାହିଁ । କିନ୍ତୁ ବ୍ୟକ୍ତି ନିଜର ଲାଭ ସକାଶେ ସେମାନଙ୍କୁ ନିଜର ପଥ-ପ୍ରଦର୍ଶକ ରୂପେ ଗ୍ରହଣ କରନ୍ତି ।

ଶ୍ରୀମା' ଶ୍ରୀଅରବିନ୍ଦ ଅତିମାନସ ଶକ୍ତିକୁ ପୃଥିବୀ ଉପରେ ଅବତରଣ କରାଇ ଆଣିଛନ୍ତି ଜନ-ସମାଜର କଲ୍ୟାଣ ସକାଶେ, ବ୍ୟକ୍ତି ତାଙ୍କୁ ପଥପ୍ରଦର୍ଶକରୂପେ ମାନନ୍ତୁ, ଏ ସକାଶେ ନୁହେଁ । ଏପରି କ୍ଷୁଦ୍ର ଭାବ, ଅହଂଭାବାପନ୍ନ ବ୍ୟକ୍ତିଙ୍କର । ମନୁଷ୍ୟ ମଧ୍ୟରେ ଅହଂ ଯେ ପର୍ଯ୍ୟନ୍ତ ଥାଏ, ସେ ଭଗବାନଙ୍କର ଯଥାର୍ଥ ଯନ୍ତ୍ର ହୋଇପାରେ ନାହିଁ । ଭଗବାନଙ୍କ ଯନ୍ତ୍ର ନ ହେଲେ ଭଗବତ୍ ଶକ୍ତି ତା' ମଧ୍ୟରେ କାର୍ଯ୍ୟ କରେନାହିଁ । ଭଗବତ୍ ଶକ୍ତି ଛଡ଼ା ମନୁଷ୍ୟ ଯେଉଁ କାର୍ଯ୍ୟ କରେ ତାହା ହୁଏ ଆଂଶିକ ଏବଂ ଅପୂର୍ଣ୍ଣ । ଶ୍ରୀମା' ଶ୍ରୀଅରବିନ୍ଦ ସଂସାରରେ ଯେଉଁ ମହାନ ଅତିମାନବ ଜାତି ସ୍ଥାପନ କରିବାକୁ ଆସିଛନ୍ତି, ଯେଉଁ ମହାନ କାର୍ଯ୍ୟର କଳ୍ପନା କରିବା ମନୁଷ୍ୟ ପକ୍ଷରେ ଅସମ୍ଭବ, ତାଙ୍କ ପାଖରେ ଅହଂର ସ୍ଥାନ କେଉଁଠି ? ଯଥାର୍ଥ ଆଧ୍ୟାତ୍ମ-ସାଧନାରେ 'ଅହଂ' ଦୂର ହୁଏ । ଯେପର୍ଯ୍ୟନ୍ତ ଅହଂ ଥାଏ, ସେ ପର୍ଯ୍ୟନ୍ତ ସାଧକ ଭଗବାନଙ୍କ ସଙ୍ଗେ ଏକତ୍ୱ ଲାଭ କରିପାରେ ନାହିଁ ।

ଶ୍ରୀମା' ଶ୍ରୀଅରବିନ୍ଦଙ୍କୁ ପଥ ପ୍ରଦର୍ଶକରୂପେ ବ୍ୟକ୍ତି ଗ୍ରହଣ କରୁ ବା ନ କରୁ ସେଥିରେ କିଛି ଆସେ ଯାଏ ନାହିଁ । ପୃଥିବୀରେ ପୂର୍ଣ୍ଣ ସୁଖମୟ ଜୀବନ ସ୍ଥାପନ କରିବା କାର୍ଯ୍ୟରେ ଯଦି କେହି ଅଂଶ ଗ୍ରହଣ କରେ ତେବେ ତାକୁ ସମସ୍ତ କର୍ମ ଏବଂ ନିଜେ ଯାହା କିଛି ସମସ୍ତ, ନିଜ ଅନ୍ତରସ୍ଥ ଆତ୍ମା, ପରମାତ୍ମା, ଭଗବାନ କିମ୍ବା ଅତିମାନସ ଶକ୍ତିକୁ ସମର୍ପଣ କରିବାକୁ ହେବ । କର୍ମ ସମର୍ପଣ ଅଥବା ଭାଗବତ କର୍ମ ଛଡ଼ା ମନୁଷ୍ୟର ସ୍ୱଭାବ ରୂପାନ୍ତର ହେବନାହିଁ, ଜଗତରେ ସାମୂହିକଭାବେ ଶାନ୍ତିପୂର୍ଣ୍ଣ ଆନନ୍ଦମୟ ଜୀବନ ସ୍ଥାପିତ ହୋଇପାରିବ ନାହିଁ । ପୂର୍ବେ ସାମୂହିକରୂପେ ଜଗତରେ ଶାନ୍ତିପୂର୍ଣ୍ଣ ଆନନ୍ଦମୟ ଜୀବନ ସ୍ଥାପନ ସମ୍ଭବପର ନ ଥିଲା ।

ଶ୍ରୀମା' ଶ୍ରୀଅରବିନ୍ଦ ଅତିମାନସ ଶକ୍ତିକୁ ଏହି ପୃଥିବୀ ପୃଷ୍ଠରେ ଉତାରି ଆଣିବାରୁ ତାହା ସମ୍ଭବ ହୋଇଅଛି ।

ପ୍ର—ସମାଜ ସେବା କାର୍ଯ୍ୟରେ କ'ଣ ଭଗବତ୍ ସମର୍ପଣ ହୁଏ ନାହିଁ ।

ଉ—ସମାଜ-ସେବା ଭାବରେ ଯେଉଁ କର୍ମ, ତହିଁରେ ଭଗବତ୍ ସମର୍ପଣ ହୁଏନାହିଁ, ନିଷ୍କାମ କର୍ମ ମଧ୍ୟ ହୁଏ ନାହିଁ । କାରଣ 'କାର୍ଯ୍ୟ' ପ୍ରେରଣା ଆସେ 'ଅହଂ' ଭାବରୁ । ଅହଂ-ଭାବମୂଳକ କର୍ମ ଯେତେ ଭଲ ହେଉ ନା କାହିଁକି ତାହା ସାଧାରଣ ଏବଂ ସୁଖ-ଦୁଃଖ ଭୋଗ-ବନ୍ଧନର କାରଣ । ଭଗବତ୍ ଉଦ୍ଦେଶ୍ୟରେ, ଭଗବତ୍ ନିମିତ୍ତ ଯେଉଁ କର୍ମ ହୁଏ ନିଷ୍କାମ । ଭଗବତ୍ ଶକ୍ତିଦ୍ୱାରା ପରିଚାଳିତ କର୍ମ ହୁଏ ଭାଗବତ କର୍ମ । ଯେଉଁ ବ୍ୟକ୍ତି ଅତିମାନସଦ୍ୱାରା ପୂର୍ଣ୍ଣ ରୂପାନ୍ତରିତ ହୋଇ ଭଗବାନଙ୍କ ସହିତ ଏକତ୍ୱ ପ୍ରାପ୍ତ କରିବାକୁ ଚାହାନ୍ତି; ଭଗବତ ଯନ୍ତ୍ର ହୋଇ କର୍ମ କରିବାକୁ ଚାହାନ୍ତି, ସେମାନଙ୍କୁ ସମସ୍ତ କର୍ମ ଏବଂ ନିଜର ସମସ୍ତ କିଛି ଭଗବାନଙ୍କୁ ସମର୍ପଣ କରିବାକୁ ହେବ ।

ସମର୍ପଣ ଛଡ଼ା ସଂସାରରେ କୌଣସି ପ୍ରକାର ସୁଖ-ଶାନ୍ତି ସ୍ଥାପିତ ହୋଇପାରିବ ନାହିଁ । ରାଜନୀତି ମାଧ୍ୟମରେ ଶାସନ ବିଷୟରେ କେତେ ପ୍ରକାର ପ୍ରଯତ୍ନ କରାହେଉଛି; ଜଣକ ପଛରେ ଜଣେ ଅଫିସର ଯାଞ୍ଚ କରିବାକୁ ନିଯୁକ୍ତ ହେଉଛନ୍ତି, ପୋଲିସ, ଗୁପ୍ତପୋଲିସଙ୍କ ସଂଖ୍ୟା ବଢ଼ୁଛି । ଏହି ବୃଦ୍ଧି ସଙ୍ଗେ ସଙ୍ଗେ ଦୁର୍ନୀତି ମଧ୍ୟ ବଢ଼ୁଛି । ଏହିସବୁ ଦୁର୍ନୀତି ତେବେ ଦୂର ହେବ, ଯେବେ ମନୁଷ୍ୟ ଅଧ୍ୟାତ୍ମ-ଶକ୍ତିର ଆଶ୍ରୟ ନେବ ।

ପ୍ର—ଅତିମାନସ ଶକ୍ତି ସଂସାରରେ କାର୍ଯ୍ୟ କରୁଛି, ତାହାଦ୍ୱାରା ସଂସାରରେ ସୁଖମୟ ଜୀବନ ପ୍ରାପ୍ତ ହେବ, ଫେର୍ ପ୍ରତ୍ୟେକ ବ୍ୟକ୍ତିଙ୍କୁ ସାଧନା କରିବା ଆବଶ୍ୟକ କ'ଣ ?

ଉ—ଯେପର୍ଯ୍ୟନ୍ତ ଦିବ୍ୟ-ମାନବ ଜାତି ସଂସାରରେ ସ୍ଥାପନ ନ ହୋଇଛି ସେପର୍ଯ୍ୟନ୍ତ ମନୁଷ୍ୟକୁ ସାଧନା କରିବାକୁ ହେବ । ଅଧିକ ସଂଖ୍ୟାରେ ବ୍ୟକ୍ତି ସାଧନା ନ କଲେ ଅତିମାନସ ଶକ୍ତିର ରୂପାନ୍ତର କାର୍ଯ୍ୟ ବିଳମ୍ବ ହେବ । ଅତିମାନସ ଶକ୍ତିଦ୍ୱାରା ମନ, ପ୍ରାଣ, ଶରୀରର ପୂର୍ଣ୍ଣ ରୂପାନ୍ତର ସିଦ୍ଧିରେ ଆଧ୍ୟାତ୍ମିକତା ଏବଂ କର୍ମର ସମନ୍ୱୟ, ଜୀବନ ପୂର୍ଣ୍ଣ ଓ ସୁଖମୟ, ସମସ୍ତ ପୁରାତନ ଯୋଗ ଆଉ ଗାନ୍ଧିଜୀଙ୍କ ତଥା ବିନୋବାଜୀଙ୍କ କର୍ମର ପୂର୍ଣ୍ଣତା ସାଧନ ।

("ନବଜ୍ୟୋତି" ପତ୍ରିକା ସୌଜନ୍ୟରୁ)

—o—

# ମହୁ—ଝୁଣା—ପାଳୁଅ

## ବିଶୁଦ୍ଧ ଓ ଶସ୍ତା

| | | | |
|---|---|---|---|
| ମହୁ ( ଖୋଲା ) | କେଜି | ପ୍ରତି— | ଟ ୧୧·୦୦ |
| ମହୁ ( ବୋତଲ ) | କେଜି | ପ୍ରତି— | ଟ ୧୩·୦୦ |
| ମହୁ ( ବୋତଲ ) | ଅଧକେଜି | ପ୍ରତି— | ଟ ୭·୫୦ |
| ମହୁ ( ବୋତଲ ) | ୧/୪ କେଜି | ପ୍ରତି— | ଟ ୪·୫୦ |
| ମହୁ ( ବୋତଲ ) | ୧/୮ କେଜି | ପ୍ରତି— | ଟ ୩·୦୦ |
| ଝୁଣା | କେଜି | ପ୍ରତି— | ଟ ୫·୦୦ |
| ଖାଡ଼ି ଝୁଣା | କେଜି | ପ୍ରତି— | ଟ ୯·୦୦ |
| ପାଳୁଅ | କେଜି | ପ୍ରତି— | ଟ ୧୦·୦୦ |
| ମହମ (Bee Wax)— | | | ଟ ୧୨·୦୦ |

ବିକ୍ରୟ କର ଅତିରିକ୍ତ

ପ୍ରାପ୍ତିସ୍ଥାନ :—

୧—ଫରେଷ୍ଟ ଇଉଟିଲାଇଜେସନ ଅଫିସ
ପୁରୁଣା ସେକ୍ରେଟାରିଏଟ୍ ବିଲ୍ଡିଂ
କଟକ—୭୫୩୦୦୧

୨—ଆସିଷ୍ଟାଣ୍ଟ କଂଜରଭେଟର ଅଫିସ
ଛଟ୍ ସୋପ୍ ନଂ ୭
ସେକ୍ଟର ୨, ମାର୍କେଟ
ରାଉରକେଲା

# ହରିଜନ ଓ ଜାତିର ଜନକ





**ଶ୍ରୀ ରାମଚନ୍ଦ୍ର ଉଲାକା**

ଆଦିବାସୀ ଓ ଗ୍ରାମମଙ୍ଗଳ ମନ୍ତ୍ରୀ

ସ୍ୱାଧୀନତାର ପ୍ରାକ୍ କାଳରେ ଅସ୍ପୃଶ୍ୟତାକୁ କେନ୍ଦ୍ର କରି ଜାତିର ଜନକ ଗାନ୍ଧିଜୀ ଯେଉଁ ବିପ୍ଳବର ସୂତ୍ରପାତ କରିଥିଲେ ତାହା ପୃଥିବୀ ଇତିହାସରେ ବିରଳ । ଏହି ବିପ୍ଳବ ଭାରତର ସାମାଜିକ ତଥା ରାଜନୈତିକ ଇତିହାସରେ ଏକ ସଂପୂର୍ଣ୍ଣ ନୂତନ ଧାରା ସୃଷ୍ଟି କରିଥିଲା । ଏଠାରେ ଗାନ୍ଧିଜୀ ଜାତିପ୍ରଥା ବିରୋଧୀ ଆନ୍ଦୋଳନକୁ ସାମାଜିକ ବିପ୍ଳବର ଶ୍ରେଷ୍ଠ ଆୟୁଧ ଭାବରେ ବ୍ୟବହାର କରିଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । ଏହା ନକରି ସେ ଯଦି ବ୍ୟକ୍ତିଗତ ଭାବରେ ବା ଧାର୍ମିକ କ୍ଷେତ୍ରରେ ନିଜର ମତ ପ୍ରଚାର କରିଥା'ଅନ୍ତେ ତାହାହେଲେ ସେ ଜଣେ ମହାପୁରୁଷ ଭାବରେ ହୁଏତ ପୂଜା ପାଇଥାଆନ୍ତେ, କିନ୍ତୁ ଭାରତରେ ସାମାଜିକ ଓ ସାଂସ୍କୃତିକ ବିପ୍ଳବର ସୂତ୍ରପାତ କରିପାରିନଥାନ୍ତେ । ଆଚରଣବିଧି ଓ ପ୍ରକୃତ ଆଚରଣ ମଧ୍ୟରେ ଥିବା ଘୋର ତାରତମ୍ୟ ବିରୁଦ୍ଧରେ ଆଜୀବନ ସଂଗ୍ରାମର ପରିପ୍ରେକ୍ଷୀରେ ମହାମାନବ ଗାନ୍ଧିଜୀ ଅସ୍ପୃଶ୍ୟତା ବିରୋଧୀ ଆନ୍ଦୋଳନରେ ଯେଉଁ ସଫଳତା ଲାଭ କରିଥିଲେ ତା'ର ପଟାନ୍ତର ନାହିଁ । ଭାରତୀୟ ରାଜନୀତିରେ ମହାତ୍ମାଜୀଙ୍କ ପ୍ରବେଶ ପୂର୍ବରୁ ଅନେକଗୁଡ଼ିଏ ସଂସ୍କାରବାଦୀ ଆନ୍ଦୋଳନ ହୋଇ ସାରିଥିଲା । ବିଧବା ବିବାହ ପ୍ରଚଳନ କରିବା ଓ ସତୀଦାହ ପ୍ରଥା ପ୍ରଭୃତି ସାମାଜିକ କୁସଂସ୍କାର ଦୂର କରିବା ଏହି ଆନ୍ଦୋଳନରେ ଲକ୍ଷ୍ୟ ଥିଲା । କିନ୍ତୁ ଏହି ସମସ୍ୟାଗୁଡ଼ିକ ଜାତୀୟ ସ୍ତରର ବ୍ୟାପକ ସମସ୍ୟା ନଥିଲା ଏବଂ ସେଥିପାଇଁ ଏହି ସଂସ୍କାରବାଦୀ ଆନ୍ଦୋଳନଗୁଡ଼ିକ ସମାଜରେ କୌଣସି ବ୍ୟାପକ ଆଲୋଡ଼ନ ସୃଷ୍ଟି କରିପାରିନଥିଲା । କିନ୍ତୁ ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ହରିଜନ ଆନ୍ଦୋଳନ ଜାତିପ୍ରଥା ପ୍ରତିଷ୍ଠିତ ହିନ୍ଦୁ ସମାଜର ସଂସ୍କାରଗତ ମୂଳଦୁଆକୁ ଦୋହଲାଇ ଦେଇ ପାରିଥିଲା । ଏହା ହେଉଛି ଭାରତର ଏକମାତ୍ର ଆନ୍ଦୋଳନ ଯାହାକି ସମସ୍ତ ପ୍ରକାର ଆଞ୍ଚଳିକତା ଓ ସଂକୀର୍ଣ୍ଣତାର ଉର୍ଦ୍ଧ୍ୱରୁ ଉଠି ସମଗ୍ର ଦେଶରେ ବିପ୍ଳବର ଏକ ମହାପ୍ରବାହ ସୃଷ୍ଟି କରିପାରିଥିଲା । ଜାତିପ୍ରଥା ଓ ଅସ୍ପୃଶ୍ୟତା-ଜନିତ ବିଭେଦ ଓ ଶୋଷଣ ପ୍ରତିଷ୍ଠିତ ଲୋକ ସଂଖ୍ୟାର ବୃଦ୍ଧି ଓ ସମ୍ବଳ ଉପରେ ଉତ୍କଟ ଅର୍ଥନୈତିକ ଅଭାବଜନିତ

ପଙ୍କଟ ଏହି କୁସଂସ୍କାର ବିରୋଧରେ ସଫଳତାର ସହିତ ଲଢ଼ିବାକୁ ଗାନ୍ଧିଜୀଙ୍କୁ ବିଶେଷ ଭାବରେ ସାହାଯ୍ୟ କରିଥିଲି ।

ସ୍ୱାଧୀନତାର ପରବର୍ତ୍ତୀକାଳରେ ଭାରତୀୟ ସମ୍ବିଧାନରେ ଅସ୍ପୃଶ୍ୟତାକୁ ବେଆଇନ୍ ଘୋଷଣା କରିବା ସଙ୍ଗେ ସଙ୍ଗେ ହରିଜନମାନଙ୍କର ଅର୍ଥନୈତିକ ଓ ସାମାଜିକ ଉନ୍ନତିପାଇଁ ବ୍ୟାପକ ବ୍ୟବସ୍ଥା ରଖାଯାଇଛି । ପଞ୍ଚବାର୍ଷିକ ଯୋଜନା-ଗୁଡ଼ିକରେ ହରିଜନ, ଆଦିବାସୀ ତଥା ଅନୁନ୍ନତ ଶ୍ରେଣୀର ବିକାଶପାଇଁ ବହୁ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ଏବଂ ସେମାନଙ୍କର ସାମାଜିକ ଓ ଅର୍ଥନୈତିକ ପ୍ରଗତିପାଇଁ ବହୁ ସ୍ୱତନ୍ତ୍ର ଯୋଜନା କାର୍ଯ୍ୟକାରୀ କରାଯାଉଛି । ଏ ସମସ୍ତର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ସେମାନଙ୍କୁ ଜାତୀୟ ପ୍ରଗତିର ସ୍ରୋତରେ ସାମିଲ କରିବା ଯାହା ଫଳରେ ଦେଶରେ ଏକ ଶ୍ରେଣୀବିହୀନ ସମାଜ ଗଠିତ ହୋଇପାରିବ । ପ୍ରକୃତ ସମସ୍ୟାର ମୂଲ୍ୟାଙ୍କନକରି ସମସ୍ତ ଯୋଜନାର ଆଭିମୁଖ୍ୟକୁ ଏକ କ୍ରାନ୍ତିକାରୀ ଓ ବୈପ୍ଳବିକରୂପ ଦେବାରେ ଆମର ପରମପ୍ରିୟ ପ୍ରଧାନମନ୍ତ୍ରୀ ଆଜି ସକ୍ଷମ ହୋଇ ପାରିଛନ୍ତି । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଦ୍ୱାରା ଘୋଷିତ ଐତିହାସିକ କୋଡ଼ିଏ ଦଫା କାର୍ଯ୍ୟକ୍ରମ ମୁଖ୍ୟତଃ ହରିଜନ, ଆଦିବାସୀ ତଥା ଦୁର୍ବଳ ଶ୍ରେଣୀର ଉତ୍ଥାନପାଇଁ ହିଁ ଉଦ୍ଦିଷ୍ଟ । ଏହା ଯେ ନିଶ୍ଚିତଭାବେ ସଫଳ ମଣ୍ଡିତ ହେବ ଏବଂ ଯୁଗ ଯୁଗ ଧରି ଦୁସ୍ଥ, ଘୃଣିତ ଓ ଅବହେଳିତ ହରିଜନ ଓ ଆଦିବାସୀ ଶ୍ରେଣୀର ଉନ୍ନତି ଯେ ଅବଶ୍ୟମ୍ଭାବୀ ଏଥିରେ ସନ୍ଦେହର ଅବକାଶ ଥାଇ ନପାରେ । ଜାତିର ଜନକ ଗାନ୍ଧିଜୀଙ୍କ ଯୁଗ ଯୁଗର ସ୍ୱପ୍ନ ଆଜି ଇନ୍ଦିରାଜୀଙ୍କ ବାସ୍ତବଧର୍ମୀ ଯୋଜନା ଯୋଗୁହିଁ ସାର୍ଥକଭାବେ ରୂପାୟିତ ହେବାକୁ ଯାଉଛି ।

ଜାତୀୟ ସ୍ତରରେ କାର୍ଯ୍ୟକାରୀ ହେଉଥିବା ହରିଜନ ଓ ଆଦିବାସୀ କଲ୍ୟାଣ ଯୋଜନା ବ୍ୟତୀତ ଓଡ଼ିଶା ରାଜ୍ୟରେ ମଧ୍ୟ ଅନୁରୂପ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଓଡ଼ିଶାର ମନସ୍ୱୀ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଦୁର୍ବଳ ଶ୍ରେଣୀର ଉନ୍ନତିପାଇଁ ଯେଉଁ ସବୁ କଲ୍ୟାଣମୂଳକ ଯୋଜନାମାନ କାର୍ଯ୍ୟକାରୀ ହେଉଛି ତନ୍ମଧ୍ୟରୁ ନିଯୁକ୍ତି ଓ ପଦୋନ୍ନତି କ୍ଷେତ୍ରରେ ହରିଜନ ଓ ଆଦିବାସୀମାନଙ୍କପାଇଁ ସ୍ଥାନ ସଂରକ୍ଷଣର ବ୍ୟବସ୍ଥାପାଇଁ ପ୍ରଣୟନ କରାଯାଇଥିବା ଆଇନ ଏକ ଅତି ବଳିଷ୍ଠ ଓ ବୈପ୍ଳବିକ ପଦକ୍ଷେପ । ଏହି ଆଇନ ପ୍ରଣୟନ କରିବାରେ ଓଡ଼ିଶା ସମଗ୍ର ଦେଶରେ ଅଗ୍ରଗାମୀ ରାଜ୍ୟରୂପେ ପରିଗଣିତ ହେବାର ଗୌରବ ଲାଭ କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ରାଜ୍ୟମାନଙ୍କୁ ଅନୁରୂପ କାର୍ଯ୍ୟାନୁଷ୍ଠାନପାଇଁ ବାଟ ଦେଖାଇଛି । କହିବା ବାହୁଲ୍ୟ ଯେ ଏହାଦ୍ୱାରା ରାଜ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀଙ୍କର ହରିଜନ ଓ ଆଦିବାସୀଙ୍କ ମଙ୍ଗଳପାଇଁ ଆନ୍ତରିକତାର ଭୂୟସୀ ପ୍ରମାଣ ଦେଇଛି । କେବଳ ସେତିକି ନୁହେଁ ଭୂସଂସ୍କାର ନୀତି, ସମନ୍ୱିତ ଗୃହ ନିର୍ମାଣ ଯୋଜନା ଓ ବାର୍ଦ୍ଧକ୍ୟ ଭତ୍ତା ପ୍ରଦାନ ପ୍ରଭୃତି ଯୋଜନା ଦ୍ୱାରା ଓଡ଼ିଶାର ଲୋକ ସଂଖ୍ୟାର ଶତକଡ଼ା ୪୦ ଭାଗ ହରିଜନ ଓ ଆଦିବାସୀ ଶ୍ରେଣୀର ଲୋକମାନଙ୍କ ଅର୍ଥନୈତିକ ଉନ୍ନତିପାଇଁ ଯେଉଁ ବ୍ୟାପକ ଉଦ୍ୟମ ଚାଲିଛି ତାହାମୂଳରେହିଁ ଏହି ମନସ୍ୱିନୀ ମହିଳାଙ୍କ ଆଶୀର୍ବାଦ ରହିଛି । ହରିଜନ ବହୁଳ ଯାଜପୁର ଅଞ୍ଚଳର ଛଅଗୋଟି ବ୍ଲକକୁ ନେଇ ହରିଜନ ସମ୍ପ୍ରଦାୟର ଅର୍ଥନୈତିକ ବିକାଶପାଇଁ ଗୋଟିଏ ପାଇଲଟ ପ୍ରୋଜେକ୍ଟ ଯୋଜନା ମଧ୍ୟ କାର୍ଯ୍ୟକାରୀ କରାଯାଇଛି । ବାଲେଶ୍ୱର ଜିଲ୍ଲାର ଭଦ୍ରକ ସବ୍‌ଡିଭିଜନରେ ମଧ୍ୟ ଅନୁରୂପ କାର୍ଯ୍ୟକ୍ରମ ଗ୍ରହଣ କରିବାପାଇଁ ବର୍ତ୍ତମାନ ରାଜ୍ୟ ସରକାରଙ୍କ ବିଚାରାଧୀନ ଅଛି । ଅନୁନ୍ନତ ତଥା ତଫସିଲଭୁକ୍ତ ଅଞ୍ଚଳଗୁଡ଼ିକରେ ଉନ୍ନୟନ କାର୍ଯ୍ୟକ୍ରମମାନଙ୍କର ଅଗ୍ରଗତିର ସମୀକ୍ଷାକଲେ ଜଣାଯିବ ଯେ ଅତି ସୀମିତ ଓ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଆଶାନୁରୂପ ଫଳ ମିଳିପାରିଛି । କିନ୍ତୁ ଏହା ଆତ୍ମସନ୍ତୋଷର ସମୟ ନୁହେଁ । ଏହି ବିରାଟ କାର୍ଯ୍ୟକ୍ରମକୁ ଆଗେଇନେବା ପାଇଁ ଆମକୁ ପ୍ରତିଜ୍ଞାବଦ୍ଧଭାବେ ଅଧିକରୁ ଅଧିକତର ଶ୍ରମ କରିବାକୁ ହେବ ।

ଆମ ଦେଶ, ଭାରତ ଭଳି ଏକ ବିରାଟ ଗଣତାନ୍ତ୍ରିକ ରାଷ୍ଟ୍ରରେ ସମସ୍ତ ଆଶା, ଆକାଂକ୍ଷା ଓ ଯୋଜନାର ସଫଳତା ପାଇଁ ଲୋଡ଼ା ଗଣଚେତନା ଏବଂ ସାମୂହିକ ଉଦ୍ୟମ ଓ ପରିଶ୍ରମ । ସେଥିପାଇଁ ଜାତିର ଜନକ ମହାତ୍ମାଗାନ୍ଧୀ ଚାହୁଁଥିଲେ ଆତ୍ମଚେତନା ନିମ୍ନସ୍ତରରୁ ଆରମ୍ଭ ହେଉ । ଅସ୍ପୃଶ୍ୟତାର ପାପ ଜାଗ୍ରତ ଜନଚେତନା ଦ୍ୱାରା ଦୂରୀଭୂତ ହେଉ ବୋଲି ସେ ଚାହୁଁଥିଲେ । ସେହି ଦୃଷ୍ଟିରୁ ବ୍ୟକ୍ତିଗତ ଜୀବନରେ ଅସ୍ପୃଶ୍ୟତା କଥା ସେଇଭଳି ଅନ୍ୟ ସାମାଜିକ କୁସଂସ୍କାରଗୁଡ଼ିକୁ ବର୍ଜନକରି ସେଗୁଡ଼ିକର ନିରାକରଣପାଇଁ ତାହା ବିରୁଦ୍ଧରେ ଜନ ଚେତନା ଜାଗ୍ରତ କରାଇପାରିଲେ ଆମ୍ଭେମାନେ ସେହି ଅମର ପୁରୁଷ ଜାତିର ଜନକଙ୍କ ଉପଯୁକ୍ତ ଦାୟାଦ ହୋଇପାରିବା ।

'ଅସ୍ପୃଶ୍ୟ ହରିଜନ ହୋଇପାରେ କିନ୍ତୁ ହରିଜନ ଅସ୍ପୃଶ୍ୟ ନୁହେଁ' ଏହି ବାଣୀରେ ମୁଁ ବିଶ୍ୱାସୀ ।

# ଧର୍ମ ଓ ରାଜନୀତି

ଗାନ୍ଧିଜୀ ଭାରତର ଶ୍ରେଷ୍ଠ ଧର୍ମଗୁରୁ ହୋଇପାରି ଥାଆନ୍ତେ । ତାଙ୍କ ପକ୍ଷରେ ତାଙ୍କ ଲୋକଙ୍କପାଇଁ ଆଧ୍ୟାତ୍ମିକ ଓ ନୈତିକ ପରମ୍ପରା ରକ୍ଷି ପାରିଥାଆନ୍ତି । କିନ୍ତୁ ନିଜକୁ ରାଜନୀତିରେ ଝାସ ଦେଲେ । ଫଳତଃ ଜଣେ ରାଜନୀତି ଉଦ୍‌ଭ୍ରାନ୍ତ ବ୍ୟକ୍ତି ହାତରେ ପ୍ରାଣ ହରାଇଲେ । × × × 'ସତ୍'ର ବିଜୟ ପାଇଁ ଯଦିଓ ସେ ସାହାଯ୍ୟ କରିଥିଲେ, ତଥାପି ଅସତ୍ ପରାଦ୍ଧଶତାର ଶିକାର ହୋଇ ତାଙ୍କୁ ମୃତ୍ୟୁବରଣ କରିବାକୁ ପଡ଼ିଲା । ଅନ୍ୟ କେଉଁଠି ଗାନ୍ଧୀଙ୍କ ନୈତିକବାଦର ସ୍ଥାନ ଥାଇପାରେ କି ନା, ଭାରତୀୟ ରାଜନୀତିରେ ତା'ର ସ୍ଥାନ ନାହିଁ । (୧)

ଗାନ୍ଧିଜୀଙ୍କ କର୍ତ୍ତବ୍ୟ ନାଟକ ସମ୍ପର୍କରେ ଏହିକଥା ହେଉଛି ଭାରତୀୟ ଲେଖକ ଓ ଆଲୋଚକ ଶ୍ରୀ ନୀରଦ ଚୌଧୁରୀଙ୍କ ମତାମତ । ତାଙ୍କର ଏ ମତାମତରେ ଦୁଇଟି ଦିଗ ରହିଛି । ଗାନ୍ଧିଜୀ ଯଦି ରାଜନୀତିରେ ଯୋଗଦେଇ ନଥାନ୍ତେ ତାହାହେଲେ ଜଣେ ମହାନ୍ ଧର୍ମଗୁରୁ ଭାବରେ ପ୍ରତିଷ୍ଠିତ ହୋଇଥାଆନ୍ତେ । ଦ୍ୱିତୀୟତଃ, ସେ ଯେଉଁ ସତ୍ ବା ମଙ୍ଗଳର ବିଜୟ ପାଇଁ ସାହାଯ୍ୟ କଲେ ସେଥିପାଇଁ ଅସତ୍ ବା ମନ୍ଦ (Evil) ହାତରେ ପ୍ରାଣ ଦେଲେ । ପୁନଶ୍ଚ, ଭାରତରେ ରାଜନୈତିକ କାର୍ଯ୍ୟକଳାପର ଗତି ଗାନ୍ଧିଜୀଙ୍କ ଆଧ୍ୟାତ୍ମିକ ରାଜନୀତି ତଥା ରାଜନୀତିରେ ନୈତିକବାଦଠାରୁ ବହୁ ଦୂରରେ ।



ଶ୍ରୀ [illegible]

କେବଳ ଭାରତରେ ନୁହେଁ, ପୃଥିବୀର ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କରେ ରାଜନୀତି କ୍ଷେତ୍ରରେ ଯେଉଁ ବ୍ୟାପକ ଅସ୍ଥିରତା ଓ ହିଂସା ପ୍ରକାଶ ପାଉଛି ତାହାର ମୂଳରେ ରହିଛି—ରାଜନୀତିକୁ ଧର୍ମଠାରୁ ଦୂରରେ ରଖିବା । ମଣିଷ ଏଭଳି ଏକ ପ୍ରାଣୀ ଯିଏକି ଧର୍ମ ଓ ରାଜନୀତି ସହ ଘନିଷ୍ଠ ଭାବେ ସଂପୃକ୍ତ । କେବଳ ଧାର୍ମିକ ହୋଇ ରହିଲେ ପୁଣି ତାହାର ଧାର୍ମିକ କାର୍ଯ୍ୟକଳାପର ସୁଦୂର ପ୍ରସାରୀ ପ୍ରଭାବ

(୧) Political mania and the ugly politicians : Nirod C. Choudhury Illustrated Weekly of India, September 21, 1969.

ପଡ଼ିଥାଏ ରାଜନୀତି, ରାଷ୍ଟ୍ର ପରିଚାଳନା ତଥା ସାମାଜିକ କାର୍ଯ୍ୟକଳାପ ଉପରେ । ଠିକ୍ ସେଇଭଳି ଭାବରେ କେବଳ ରାଜନୀତିକୁ ସର୍ବୋଚ୍ଚ ଆସନ ଦେଇ ରାଷ୍ଟ୍ର ପରିଚାଳନା କଲେ ମଧ୍ୟ ରାଜନୀତିର ପ୍ରଭାବ ପଡ଼ିଥାଏ ଧର୍ମର କାର୍ଯ୍ୟକଳାପ ଉପରେ । କିନ୍ତୁ ଧର୍ମକୁ ଯଦି ଆକ୍ଷରିକ ଓ ସଂକୀର୍ଣ୍ଣ ଅର୍ଥରେ ଗ୍ରହଣ କରାଯାଏ ତାହାହେଲେ ତା' ମଣିଷର ବିବେକ ଓ ନୈତିକ ସଚେତନତାକୁ ଦୁର୍ବଳ କରିଦିଏ । ତେଣୁ ଏହି ସଂକୀର୍ଣ୍ଣ ଧର୍ମକୁ ରାଜନୀତିଠାରୁ ଅଲଗା ରଖାଯିବାପାଇଁ ଅନେକ ମତ ଦେଇଥାନ୍ତି । ସମାଜ ଓ ରାଜନୀତି ଉପରେ ଧର୍ମର କିପରି ପ୍ରଭାବ ରହିଛି ତାହାକୁ ବୁଝାଇବାକୁ ଯାଇ ଦାର୍ଶନିକ ସର୍ବପଲ୍ଲୀ ରାଧାକୃଷ୍ଣନ କହିଛନ୍ତି "ଭଗବତ୍ ବିଶ୍ୱାସ ବା ଧର୍ମଠାରୁ ରାଷ୍ଟ୍ର ପରିଚାଳନା ବା ରାଜନୀତିକୁ ଦୂରରେ ରଖିବା ଯୋଗୁଁ ଧର୍ମ ମଣିଷର ସାମାଜିକ ଚେତନା ଓ ନୈତିକ ଅନୁଭବଶୀଳତାକୁ ଦୁର୍ବଳ କରି ପକାଉଛି ।" (୨)

ଏହାର ଅର୍ଥ ହେଉଛି ଯେ ଧର୍ମକୁ କୌଣସି ପ୍ରକାରେ ରାଜନୀତିଠାରୁ ଅଲଗା ରଖାଯାଇ ନପାରେ । ରଖାଗଲେ ତାହାର ପ୍ରଭାବ ଅତି ବିଷମୟ ହୋଇ ଉଠିବ । ଏକଥା ସତ ହେଲେ ମଧ୍ୟ ଧର୍ମକୁ ବ୍ୟାପକ ଦୃଷ୍ଟିରୁ ଗ୍ରହଣ କରାଯିବା ବିଧେୟ । କୌଣସି ନିର୍ଦ୍ଦିଷ୍ଟ ମତବାଦକୁ ଉତ୍ସାହିତ କରି ଅନ୍ୟାନ୍ୟ ମତବାଦକୁ ଦମନ କରିବା ପ୍ରକୃତ ଧର୍ମର ଲକ୍ଷ୍ୟ ନୁହେଁ । ସବୁ ଧର୍ମର ସମନ୍ୱୟରେ ଯେଉଁ ମାନବିକ ଧର୍ମ ଗଢ଼ି ଉଠେ ତାହାରହିଁ ରାଜନୀତିରେ ସ୍ଥାନ ଓ ସ୍ଥିତି ଅଛି । ରାଜନୀତିରେ ସଂଶ୍ଳିଷ୍ଟ ହେଉଥିବା ଯୋଗୁ ଏ ଧର୍ମର ଭିତ୍ତିଭୂମି ହେବ ସତ୍ୟ, ଅହିଂସା ଓ ସତ୍ୟାଗ୍ରହ । ଗାନ୍ଧିଙ୍କ ଭାଷାରେ "ଧର୍ମ କହିଲେ ମୁଁ ସାଧାରଣ ବା ପାରମ୍ପାରିକ ଧର୍ମକୁ ନବୁଝି ସେଇ ଧର୍ମ ପ୍ରତ୍ୟେକ ଧର୍ମର ପ୍ରତିନିଧିତ୍ୱ କରି ସୃଷ୍ଟିକର୍ତ୍ତାଙ୍କ ସମ୍ମୁଖରେ ଆମକୁ ଛିଡ଼ା କରାଏ, ସେଇ ଧର୍ମକୁ ମୁଁ ଧର୍ମଭାବେ ବୁଝେ ।" ଉଭୟ ରାଜନୀତି ଓ ଧର୍ମର ଲକ୍ଷ୍ୟ ହେଉଛି ଅନ୍ୟର ମଙ୍ଗଳ କରିବା । ରାଷ୍ଟ୍ର ପରିଚାଳନାର ମଧ୍ୟ ତାହା ଲକ୍ଷ୍ୟ । ତେଣୁ ରାଜନୀତିରେ ଅନ୍ୟର ମଙ୍ଗଳପାଇଁ ଚିନ୍ତା କଲାବେଳେ ନୈତିକତା ତଥା ଆଧ୍ୟାତ୍ମିକ ଭାବଦ୍ୱାରା ତାହା ପରିଚାଳିତ ହେବା ଯୁକ୍ତି ସଂଗତ ।

ରାଜନୀତିକୁ ଧର୍ମାଭିମୁଖୀ କରିବା ଦିଗରେ ଗାନ୍ଧିଙ୍କ ଏକ ବଳିଷ୍ଠ ଯୁକ୍ତି ଥିଲା ଯେ ମଣିଷର ପ୍ରତ୍ୟେକ କାର୍ଯ୍ୟକଳାପ ଧର୍ମଦ୍ୱାରାହିଁ ପ୍ରବୃତ୍ତି ହେବା ଆବଶ୍ୟକ । କାରଣ ଧର୍ମର ଅର୍ଥ ହେଉଛି ଭଗବାନଙ୍କ ଦ୍ୱାରା ବେଷ୍ଟିତ ହେବା । ଏହାର ଅର୍ଥ ହେଉଛି—ଭଗବାନ ତୁମର ପ୍ରତ୍ୟେକ କାର୍ଯ୍ୟକଳାପ ନିୟନ୍ତ୍ରିତ କରନ୍ତି । ତୁମେ ଯଦି ଏହାକୁ ସ୍ୱୀକାର କର, ତାହାହେଲେ ଭଗବାନ ତୁମର ପ୍ରତ୍ୟେକ କାର୍ଯ୍ୟ ନିୟନ୍ତ୍ରଣ କରିବେ । × × × ବାସ୍ତବିକ ଧର୍ମ ଆମର ପ୍ରତ୍ୟେକ କ୍ରିୟାରେ ବ୍ୟାପ୍ତ ହେବା ଉଚିତ । ଏଠାରେ ଧର୍ମକୁ ସାମ୍ପ୍ରଦାୟିକ ଅର୍ଥରେ ବୁଝାଯାଉ ନାହିଁ । ବିଶ୍ୱର ଶୃଙ୍ଖଳିତ ନୈତିକ ଶାସନରେ ବିଶ୍ୱାସ । ଏହି ଅର୍ଥରେ ବୁଝାଯାଉଛି । (୩) ଗାନ୍ଧିଙ୍କ ଏହି ମତର ଏକ ମହତ୍ତ୍ୱର ଭୂମିକା ରହିଛି । ଭଗବାନ ଯଦି ମଣିଷର କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରିବା ଦିଗଟିକୁ ଆମେ ସ୍ୱୀକାର କରୁ ତାହାହେଲେ ଅନ୍ୟ କାହାର ପ୍ରତି ଭୟ ନରହି କେବଳ ସେହି ସର୍ବନିୟନ୍ତା ଏକ ଭଗବାନଙ୍କ ପ୍ରତି ଭୟ ରହେ । ଏହି ଭୟର ଅର୍ଥ ହେଉଛି, ତଦ୍ୱାରା ମଣିଷ ଅନ୍ୟର ଅମଙ୍ଗଳ ଚିନ୍ତନରୁ ବିରତ ହୋଇ ନିଜ ମଧ୍ୟରୁ ଅସତ୍ ଚିନ୍ତନ, କୁଭାବନା, ଅସଙ୍ଗତ କାର୍ଯ୍ୟକଳାପ, ଦୁର୍ନୀତି ଓ ସ୍ୱାର୍ଥ ତ୍ୟାଗକରି ସମସ୍ତଙ୍କ ବୃହତ୍ତର ମଙ୍ଗଳ ଦିଗରେ ନିଜର କ୍ରିୟାଶକ୍ତିକୁ ବିନିଯୋଗ କରିବ । ରାଜନୀତିରେ ମଣିଷର ବୃହତ୍ତର ମଙ୍ଗଳ କାର୍ଯ୍ୟ ଓ ଆକାଂକ୍ଷା ଥିବାରୁ ତାହାଠାରୁ ଧର୍ମକୁ ବିଚ୍ଛିନ୍ନ କରାଯିବା ଯେତିକି ମୂର୍ଖତ୍ୱାନ, ସେତିକି ଅଚିନ୍ତନୀୟ ତଥା ଅଶୁଭର ସଙ୍କେତ ।

ରାଜନୀତିରେ ଧର୍ମର ସମ୍ମିଶ୍ରଣ କରିବାର ଚିନ୍ତାର ପ୍ରଥମ ଆଲୋକରେଖା ପ୍ରଥମେ ଭାରତରୁହିଁ ପ୍ରକାଶ ପାଇଥିଲା । ପୃଥିବୀର ସର୍ବ ପ୍ରାଚୀନ ଗ୍ରନ୍ଥ ବେଦରେ ବୁଝାଯାଇଛି 'ବିଶାଂ ରାଜନମ୍ ଅଦ୍ଭୁତମ୍, ଅଧ୍ୟକ୍ଷଂ ଧର୍ମଣାମ୍' (୪) ଅର୍ଥାତ ଲୋକଙ୍କର ରାଜା ଅଦ୍ଭୁତ ଅଟନ୍ତି, ଯେ ସନାତନ ନିୟମର ମଧ୍ୟ ଅଧ୍ୟକ୍ଷ । ଏହି ପରିକଳ୍ପନାରେ ପ୍ରଶାସକମାନଙ୍କୁ ରାଜର୍ଷିଭାବରେ ଅଭିହିତ କରାଯାଇଛି । ଏହି ପରିକଳ୍ପନାର ପ୍ରତିନିଧି ଭାବରେ ରାଜର୍ଷି ଜନକ, ରାଜର୍ଷି ରାମଚନ୍ଦ୍ର, କୃଷ୍ଣ ଓ ଧର୍ମରାଜ ଯୁଧିଷ୍ଠିର କେବଳ ଶାସନରେ ଧର୍ମର ସମ୍ମିଶ୍ରଣ କରି ନଥିଲେ ବରଂ ଭବିଷ୍ୟତ ବଂଶଧରମାନଙ୍କପାଇଁ ଏକ ଉଜ୍ଜ୍ୱଳମୟ ପରମ୍ପରାର ସେମାନେ ସ୍ରଷ୍ଟା ମଧ୍ୟ । ଠିକ୍ ସେଇଭଳି ଭାବେ ପାଶ୍ଚାତ୍ୟ ଜଗତରେ ଖ୍ରୀଷ୍ଟଙ୍କ ପୂର୍ବରୁ ଦାର୍ଶନିକ ପ୍ଲାଟୋ ମଧ୍ୟ ଶାସନର ସର୍ବୋଚ୍ଚ ପରିଚାଳନା ଅଧିକ ଭାବେ

(୨) An idealistic view of life : S. Radhakrishnan ପୃ: ୪୭-୪୭

(୩) Selections from Gandhi, ନିର୍ମଳ କୁମାର ବୋଷ ପୃ: ୨୨୪

(୪) ଋଗବେଦ ୮, ୪୩, ୨୪

ଜଣେ ଦାର୍ଶନିକ-ଶାସକ (Philosopher-king) ରହିବା ଉଚିତ୍ ବୋଲି ସ୍ୱୀକାର କରିଛନ୍ତି । ଧର୍ମକୁ ସେ ଗୌଣ ଭାବରେ ଦେଖିଥିଲେ ସୁଦ୍ଧା ଜଣେ ଦାର୍ଶନିକକୁ ରାଷ୍ଟ୍ରର ମୁଖ୍ୟଭାବେ ସ୍ୱୀକାର୍ଯ୍ୟକୁ ପରୋକ୍ଷ ଭାବେ ଗ୍ରହଣ କରିଛନ୍ତି ଯେ ଅନ୍ୟାନ୍ୟମାନଙ୍କ ଅପେକ୍ଷା ଜଣେ ଦାର୍ଶନିକ ଧର୍ମସମ୍ମତ ସହ ଭଲ ମନ୍ଦର ବିଚାର କରି ରାଷ୍ଟ୍ରର ରାଜନୀତି ବା ପ୍ରଶାସନକାର୍ଯ୍ୟ ଉଚିତ ଭାବେ କରିପାରିବ । ଯୀଶୁ ଖ୍ରୀଷ୍ଟଙ୍କ ମତ ହେଉଛି—ଯାହା ଭଗବାନଙ୍କ ପ୍ରାପ୍ୟ ତାହା ଭଗବାନଙ୍କୁ ଦିଅ, ଯାହା ସିଜରଙ୍କ ପ୍ରାପ୍ୟ ତାହା ସିଜରଙ୍କୁ ଦିଅ । ଏଠାରେ ସିଜରର ଅର୍ଥ ହେଉଛି ଶାସନ ବା ରାଜନୀତି । ଏହି ଉଦାହରଣ ଦେଇ କେତେକ ଯୁକ୍ତି ଦେଖାଇଛନ୍ତି ଯେ ଧର୍ମ ଓ ରାଜନୀତି ମଧ୍ୟରେ ସ୍ପଷ୍ଟ ସୀମାରେଖା ରହିବା ଉଚିତ୍ । ମାତ୍ର ଏହି ଉଦାହରଣର ବାହ୍ୟ ଅର୍ଥକୁ ପ୍ରସିଦ୍ଧ ଲେଖକ ଶ୍ରୀ ଓ୍ୱିଲ୍ ଡୁରାଣ୍ଟ ଗ୍ରହଣ କରିନାହାନ୍ତି । ତାଙ୍କର ମତରେ ଏହି ଉପଦେଶର ଅନ୍ୟ ଏକ ଅନ୍ତର୍ନିହିତ ଅର୍ଥ ରହିଛି । ଯୀଶୁଖ୍ରୀଷ୍ଟ ମଧ୍ୟ ଶିଷ୍ୟମାନଙ୍କୁ ସେମାନଙ୍କ ପ୍ରଶାସକମାନଙ୍କ ବିରୁଦ୍ଧରେ ରାଜନୀତିକ ଆନ୍ଦୋଳନ କରିବାକୁ କହିଥିଲେ ମଧ୍ୟ ନ୍ୟାୟସଙ୍ଗତ ଭାବେ ଧାର୍ଯ୍ୟ କରାଯାଇଥିବା କର (tax) ଦେବାକୁ କହିଥିଲେ (୫) । ଅନ୍ୟ ଭାଷାରେ ନ୍ୟାୟ ଭାବରେ ନ୍ୟାୟସଙ୍ଗତ ଭାବେ ରାଷ୍ଟ୍ର ପରିଚାଳନା ବା ରାଜନୀତି କରିବା ଏକ ଧର୍ମନିଷ୍ଠ ବ୍ୟକ୍ତି ପକ୍ଷରେ ହିଁ ସମ୍ଭବ । ମଧ୍ୟଯୁଗୀୟ ୟୁରୋପରେ ରାଜନୀତିରେ ଧର୍ମର ଉର୍ଦ୍ଧ୍ୱଗମନମୁଖୀ ନୈତିକତାର ଧାରା ପ୍ରବର୍ତ୍ତନ କରି ପ୍ରଶାସନ କରିବା ଏକ ପରମ୍ପରାରେ ପରିଣତ ହୋଇଥିଲା ।

ରାଜନୀତିକୁ ଆଧ୍ୟାତ୍ମିକବାଦୀ (spiritualising politics) କରିବାପାଇଁ ଯେଉଁ କେତେଜଣ ମହାନ ବ୍ୟକ୍ତିଙ୍କର ନିରବଚ୍ଛିନ୍ନ ସାଧନା ଓ ଉଦ୍ୟମ ରହିଥିଲା ସେମାନଙ୍କ ପ୍ରଚେଷ୍ଟାର ସାକ୍ଷୀ ରହିଛି ଇତିହାସ । ଇତିହାସ ପୃଷ୍ଠାରୁ ଭାରତର ସମ୍ରାଟ ଅଶୋକ ଏବଂ ଆମେରିକାର ଶ୍ରୀଯୁକ୍ତ ପେନ୍‌ଙ୍କ ଅମର ଉଦାହରଣ ରହିଛି । ପ୍ରଳୟଙ୍କରୀ କଳିଙ୍ଗ ଯୁଦ୍ଧର ବିଭୀଷିକାମୟ ଶୋଣିତ ପ୍ଲାବନର ଗ୍ରାସକୁ ଏଡ଼ାଇଦେଇ ବଞ୍ଚିରହିବାଲାଗି ଭଗ୍ନ-ନିର୍ଯ୍ୟାତିତ ବେଦନା କ୍ଳିଷ୍ଟ ନିମ୍ନାଂଶ ମଣିଷର ଉଦାର ଆର୍ତ୍ତନାଦ ସମ୍ରାଟ ଅଶୋକଙ୍କ ହୃଦୟର ପ୍ରତ୍ୟେକ ଗ୍ରନ୍ଥିରେ ଆଲୋଡ଼ନର ଅନୁଭୂତି ସୃଷ୍ଟି କରିବା ପରେ ସେ ପୂର୍ଣ୍ଣ ଭାବରେ ରାଜନୀତିରେ ଧର୍ମର ନିର୍ଦ୍ଦେଶ ପାଳନ କରିଥିଲେ । ତାଙ୍କର ରାଜନୀତି ତଥା ରାଷ୍ଟ୍ର ପରିଚାଳନାର ନୂତନ ପଥ ଥିଲା ଅହିଂସା ଏବଂ ଅହିଂସା ହେଉଛି ଧର୍ମର ଏକ ପ୍ରଧାନ ଓ ଅବିଚ୍ଛେଦ ଅଙ୍ଗ ।

ରାଜନୀତିରେ ଅହିଂସାର ଆଉ ଏକ ପରୀକ୍ଷା କରିଥିଲେ ପେନ୍ସିଲଭାନିଆର ଅଧିବାସୀ ଶ୍ରୀଯୁକ୍ତ ଉଇଲିୟମ୍ ପେନ୍, ତାଙ୍କ ଆଦର୍ଶପନ୍ଥୀ ଲୋକମାନଙ୍କୁ ଫ୍ରେଣ୍ଡ ବା କ୍ୱାକର ଦଳ ବୋଲି କୁହାଯାଉଥିଲା । ସେମାନେ ବ୍ୟବସ୍ଥା ସଭାରେ ସଂଖ୍ୟାଗୁରୁ ଦଳ ଥିବାଯାଏଁ ଯେତେବେଳେ ସମସ୍ୟାରୂପେ ଦେଖାଦେଇଥିବା ଧଳା ଉପନିବେଶବାସୀ ଓ ଲୋହିତ ଭାରତୀୟମାନଙ୍କ ବିବାଦର ସମାଧାନପାଇଁ ସେମାନେ 'ପବିତ୍ର ଆଜ୍ଞାନୁବର୍ତ୍ତିତା' ଆଦର୍ଶ ଗ୍ରହଣ କରିଥିଲେ । ଏହି ପବିତ୍ର ଆଜ୍ଞାନୁବର୍ତ୍ତିତା ହେଉଛି, ଅହିଂସା । ଏଥିରେ କ୍ଷୁଦ୍ର ଓ ସଂକୀର୍ଣ୍ଣ ଗୋଷ୍ଠୀଗତ ବିଭେଦ ଭୁଲି ଭଗବାନ ତଥା ଧର୍ମର ମହାନ୍ ଆଦର୍ଶ ଗୁଡ଼ିକର ପ୍ରୟୋଗ କରିଥିଲେ ସମାଧାନ କ୍ଷେତ୍ରରେ । କିନ୍ତୁ ପରେ ବ୍ୟବସ୍ଥା ସଭାରେ ସେମାନେ ସଂଖ୍ୟାଲଘୁ ହୋଇଯିବା ପରେ ଏହି ପନ୍ଥାର ପ୍ରୟୋଗରେ ବିଭିନ୍ନ ଅସୁବିଧା ଦେଖାଦେଇଥିଲା । ଏପରି କି ଏ ଆଦର୍ଶରେ ବିଶ୍ୱାସ କରୁଥିବା ଆଜୀବନ କ୍ୱାକର ଶ୍ରୀ ହରବର୍ଟ ହୁଭର ଯେତେବେଳେ ଆମେରିକାର ରାଷ୍ଟ୍ରପତି ହେଲେ ସେ ରାଷ୍ଟ୍ରର ସର୍ବୋଚ୍ଚ ସେନାପତି ହେଲେ ମଧ୍ୟ ଏହି ପନ୍ଥାର ଅନୁସରଣ କରିଥିଲେ । ଏହି ସଂସ୍ଥାର ମୂଳମନ୍ତ୍ର ହେଉଛି ବିବେକ ଓ ରାଷ୍ଟ୍ର ମଧ୍ୟରେ ବିବେକର ସ୍ଥାନ ସର୍ବଦା ଉଚ୍ଚରେ ତଥା ତାହାର ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରାଯିବା ଉଚିତ । ଏହି କାର୍ଯ୍ୟ ଓ ଆଦର୍ଶ ସର୍ବଦା ପବିତ୍ର ଆଜ୍ଞାନୁବର୍ତ୍ତିତା (Holy obedience) ହେବା ଉଚିତ ।

ଇତିହାସର ଏହି ଦୁଇଟି ଉଦାହରଣ ଓ ପରୀକ୍ଷା ଅପେକ୍ଷା ଗାନ୍ଧିଜୀଙ୍କ ଧର୍ମ ସମ୍ମିଶ୍ରିତ ରାଜନୀତିର ପ୍ରୟୋଗ କ୍ଷେତ୍ର ଅତି ଜଟିଳ ଥିଲା । ସେ କୌଣସି ପଦବୀ ବା ଶାସନରେ ନଥିଲେ, ତେଣୁ କ୍ଷମତା ବଳରେ ଏହାର ପ୍ରୟୋଗର ଆଶା ସେତିକି କ୍ଷୀଣ, ପ୍ରେମ ଓ ଅହିଂସାର ବଳରେ ଏହା ପ୍ରବର୍ତ୍ତନ କରିବା ସେତିକି କଷ୍ଟକର ଥିଲା । ଏହି ଆଦର୍ଶର ସାଧନାର ପଥ କଠିନ ହେଲେ ସୁଦ୍ଧା ଆମର ସାମାଜିକ ଜୀବନରେ ଯେଉଁ ରାଜନୀତିକ ସର୍ପ କୁଣ୍ଡଳୀ ଘେରି ରହିଛି ସେଥିରୁ ମୁକ୍ତ କରିବାପାଇଁ ସେ ରାଜନୀତି ସହ ଧର୍ମର ଘନିଷ୍ଠ ମିଶ୍ରଣ କରିଥିଲେ । ଆମର ରାଜନୀତିକ ଜୀବନ ତଥା ରାଷ୍ଟ୍ର ପରିଚାଳନା କ୍ଷେତ୍ରରେ ବିଭିନ୍ନ ପ୍ରକାର ଅସ୍ୱାସ୍ଥ୍ୟକର ପରିବେଶ ଘେରି ରହିଥାଏ । ଏଥିରେ ଏତେ ମଇଳା, ଏତେ ସ୍ୱାର୍ଥ, ଏତେ ଦୁର୍ଗନ୍ଧ ପୂରି ରହିଛି କାହିଁକି ନା ଧର୍ମ ଓ ଭଗବାନ ଉପରେ ବିଶ୍ୱାସ ରଖୁଥିବା ଲୋକେ ବହୁ ପରିମାଣରେ ଏଥିରେ ଭାଗନେଇ ପାରୁନାହାନ୍ତି । ଯଦି ରାଜନୀତିରେ ଧାର୍ମିକ ଚିନ୍ତନର ବଳିଷ୍ଠ ଭିତ୍ତି ଭୂମି ରହେ

(୫) ନୂଆ ଟେଷ୍ଟାମେଣ୍ଟ, ସେଣ୍ଟମାର୍କ ୧୨ । ୧୭

(୬) ଗାନ୍ଧିଜୀଜ୍ ଭ୍ୟୁ ଅଫ୍ ଲାଇଫ୍, ପି:ଶୁକ୍ଳ ପୃ: ୧୩୫

ତାହେଲେ ଭଗବାନଙ୍କୁ ତଥା ନୈତିକତାକୁ ଉପେକ୍ଷା କରି ଲୋକେ ଅସଂଯତ ତଥା ବିପଥଗାମୀ ହେବେ ନାହିଁ । ଏଇ ତତ୍ତ୍ୱ ହିଁ ଧର୍ମ ଶିକ୍ଷା ଦିଏ । ରାଜନୀତିକୁ ନିଷ୍କଳଙ୍କ କରିବା ପାଇଁ ଗାନ୍ଧିଜୀଙ୍କ ପ୍ରଚେଷ୍ଟାକୁ ଅନେକ ସମାଲୋଚନା କରିଥିଲେ । ନିଜର ମତକୁ ଅତ୍ୟନ୍ତ ଦୃଢ଼ ଭାବରେ ପ୍ରତିଷ୍ଠା କରି ଗାନ୍ଧିଜୀ କହିଥିଲେ "ମୁଁ ରାଜନୀତିରେ ଧର୍ମ ପୂରାଇବାକୁ ଚେଷ୍ଟା କରୁଛି । ମୁଁ ଧର୍ମବିନା ମୁହୂର୍ତ୍ତେ ସୁଦ୍ଧା ବଞ୍ଚି ପାରିବି ନାହିଁ । ମୋର କେତେକ ରାଜନୈତିକ ବନ୍ଧୁ ମୋତେ ସମାଲୋଚନା କରନ୍ତି ଏଇଥିପାଇଁ ଯେ ମୋର ଧର୍ମଠାରୁ ମୋର ରାଜନୀତି ଉତ୍ପନ୍ନ ହୋଇଛି । ସେମାନେ ଠିକ୍ କଥା କହନ୍ତି । ମୋର ରାଜନୀତି ଏବଂ ମୋର ପ୍ରତ୍ୟେକ କାର୍ଯ୍ୟକଳାପରେ ବ୍ୟୁତ୍ପତ୍ତି ଘଟିଛି ମୋର ଧର୍ମଠାରୁ । ମୁଁ ଅନୁଭବ କରିପାରେ ଯେ ପ୍ରତ୍ୟେକ ଧର୍ମବାଦୀ ମଣିଷର ସମସ୍ତ କାର୍ଯ୍ୟକଳାପ ତାହାର ଧର୍ମଠାରୁ ଉତ୍ପନ୍ନ ହୋଇଥାଏ (୭) । ପୁଣି ତାଙ୍କ ଭାଷାରେ କହିଲେ "ମୋ ମତରେ ଧର୍ମହୀନ ରାଜନୀତି ସମ୍ପୂର୍ଣ୍ଣ ଭାବରେ ଆବର୍ଜନା । ତାହା ସବୁବେଳେ ପରିତ୍ୟାଜ୍ୟ । ରାଜନୀତି ଦେଶମାନଙ୍କର ସ୍ୱାର୍ଥ ସଂଶ୍ଳିଷ୍ଟ ବିଷୟ, ଏବଂ ଯାହା କି ଦେଶର କଲ୍ୟାଣସହ ସମ୍ପୃକ୍ତ, ତାହା ଧର୍ମପ୍ରାଣ ମଣିଷର କିମ୍ବା ଅନ୍ୟ ଭାଷାରେ କହିଲେ ଭଗବାନ ଓ ସତ୍ୟର ଅନୁସନ୍ଧାନୀ ମଣିଷର ସ୍ୱାର୍ଥ ସହିତ ସଂଶ୍ଳିଷ୍ଟ ହେବାକୁ ବାଧ୍ୟ । ମୋ ମତରେ ଭଗବାନ ଓ ସତ୍ୟ, ଏ ଦୁଇଟି ଯେ ଏକାର୍ଥ ବୋଧକ । ଯଦି ମୋତେ କେହି କହେ ଯେ ଭଗବାନ ହେଉଛନ୍ତି ଅସତ୍ୟର ଭଗବାନ, କିମ୍ବା ଦୁଃଖ ଯନ୍ତ୍ରଣାର ଭଗବାନ ତା ହେଲେ ମୁଁ ତାଙ୍କୁ ପୂଜା କରିବାପାଇଁ ଅସ୍ୱୀକାର କରିବି । ସେଥିପାଇଁ ରାଜନୀତିରେ ମଧ୍ୟ ଆମକୁ ସ୍ୱର୍ଗ ରାଜ୍ୟ ପ୍ରତିଷ୍ଠା କରିବାକୁ ହେବ" (୮) ।

ଗାନ୍ଧିଜୀଙ୍କ ଏହିମତ ଉପରେ ପ୍ରଶ୍ନ ଉଠିପାରେ ଯେ ରାଜନୀତିରେ କ'ଣ ସାଧୁ ଓ ସନ୍ଥମାନେ ଯୋଗ ଦେବା ଉଚିତ ? ଏବଂ ରାଜନୀତିରେ କଣ କଠୋର ନୈତିକ ନିୟମ ଗୁଡ଼ିକ ପାଳନ କରାଯିବା ଉଚିତ ? ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଦେବା ପୂର୍ବରୁ ଏହାର ବାସ୍ତବ ଦିଗପ୍ରତି ଦୃଷ୍ଟି ଦେବା ଉଚିତ । ଯେଉଁମାନେ ରାଜନୀତିର ମାର୍ଗ ସାହାଯ୍ୟରେ ଲୋକ ପ୍ରତିନିଧି ହୁଅନ୍ତି ଓ ଶାସନ କାର୍ଯ୍ୟ ନିଜ ହାତରେ ରଖନ୍ତି ସେମାନେ ଲୋକଙ୍କର ପ୍ରଭୁ ନୁହନ୍ତି ; ସେମାନେ ଲୋକଙ୍କର ଦାସ (୯) । ସେମାନେ ଯାହା କାମ କରନ୍ତି ତାହାର ସାମାଜିକ, ଅର୍ଥନୈତିକ ଓ ଧର୍ମଗତ ପ୍ରଭାବ ପଡ଼ିଥାଏ । ତେଣୁ ରାଜନୀତିରେ ସାଧୁ ସନ୍ଥମାନେ ଭାଗ ନିଅନ୍ତୁ ବା ନ ନିଅନ୍ତୁ, ରାଜନୀତିଜ୍ଞମାନେ ଧର୍ମକୁ ଜାଣି ଓ ଧର୍ମ ଉପଦେଶ ଅନୁସାରେ ପରିଚାଳିତ ହେବା ଦରକାର । ରାଜନୀତି ଏକ ମହାନ କଳା, ତେଣୁ ଏହାର ନୈତିକ ଦିଗ ମଧ୍ୟ ରହିଛି । ତେଣୁ ରାଜନୀତିଜ୍ଞମାନଙ୍କପାଇଁ ନୈତିକ ନିୟମର ଆବଶ୍ୟକତା ସମ୍ପର୍କରେ ଗାନ୍ଧିଜୀ କହିଥିଲେ—ମୁଁ ଜଣେ ସନ୍ଥ ବୋଲି ଦାବି କରେ ନାହିଁ । କିନ୍ତୁ ମୁଁ ଭାବେ ରାଜନୀତି ସହ ନୈତିକତାର କଠୋର ନିୟମଗୁଡ଼ିକ ବିରୁଦ୍ଧାଚରଣ କରେ ନାହିଁ । ମୋର ମତରେ ରାଜନୀତି ହେଉଛି ଏକ ମହତ କଳା ଓ ପ୍ରତ୍ୟେକ ଭଲ ନାଗରିକ ଏହା ଅନୁଶୀଳନ କରିବା ଉଚିତ (୧୦) । ପୁନଶ୍ଚ ଧର୍ମର ଭିତ୍ତି ଭୂମିରେ ପୃଥିବୀର ସମସ୍ତ ମାନବୀୟ କାର୍ଯ୍ୟକଳାପ ପ୍ରତିଷ୍ଠିତ । ଏହି ଭିତ୍ତି ଭୂମିରେ ଯଦି ରାଜନୀତିର ସୌଧ ଗଠିତ ନୁହେଁ ତା'ହେଲେ ତାହା ମଧ୍ୟ ଭୂଷୁଡ଼ି ପଡ଼ିବ । ଏହି ଦୃଷ୍ଟିକୋଣରୁ ମହାତ୍ମାଜୀ କହିଥିଲେ "ରାଜନୀତି ଯଦି ଧର୍ମର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ନୁହେଁ ତା'ହେଲେ ରାଜନୀତି ଶିକ୍ଷାର କୌଣସି ଲାଭ ନାହିଁ । ଏହି ଧର୍ମର ଅର୍ଥ କୌଣସି ନିର୍ଦ୍ଦିଷ୍ଟ ଧର୍ମର ଅଂଶ ବା ସାଂପ୍ରଦାୟିକତା ଉପରେ ବିଶ୍ୱାସ ନୁହେଁ । ଧର୍ମବିହୀନ ବ୍ୟକ୍ତିର କୌଣସି ଭିତ୍ତି ନାହିଁ । ଧର୍ମ ହେଉଛି ଏକମାତ୍ର ମୂଳଭିତ୍ତି ଯେଉଁଥିରେ କି ପ୍ରକୃତ ଜୀବନର ସୌଧ ନିର୍ମାଣ କରାଯାଇପାରିବ (୧୧) ।

ଗାନ୍ଧିଜୀଙ୍କ ରାଜନୀତି ଧର୍ମ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ତାହା ସତ୍ୟଠାରୁ କଦାପି ବିଚ୍ଛିନ୍ନ କରାଯାଇ ପାରିବ ନାହିଁ । ଭଗବାନ ସତ୍ୟ ଓ ତାହାଙ୍କୁ ପାଇବାପାଇଁ ଧର୍ମର ମାର୍ଗ ମଧ୍ୟ ସତ୍ୟ । ସୁତରାଂ ଏହା ଉପରେ ଗଢ଼ି ଉଠିଥିବା ରାଜନୀତିର ପନ୍ଥା ମଧ୍ୟ ସଦା ସତ୍ୟ ହେବା ଦରକାର । ଯଦି ରାଜନୀତିଠାରୁ ଧର୍ମକୁ ବିଚ୍ଛିନ୍ନକରି

(୭) 'ମହାତ୍ମା ଗାନ୍ଧୀ' ସଂ: ଏଡ୍: ରାଧାକୃଷ୍ଣନ ପୃ: ୪୧୪ । ୪୧୫

(୮) 'ଗାନ୍ଧୀକଥାମୃତ' (ଅନୁବାଦିକା—ଶ୍ରୀମତୀ ନନ୍ଦିନୀ ଶତପଥୀ) ରେ ଉଦ୍ଧୃତ ପୃ: ୧୧୨ । ୧୧୩

(୯) And whosoever of you will be the chiefest shall be servant of all ...... and to give his like a ransom of many. St. Mark 10/44, 45.

(୧୦) M. K. Gandhi: To the Perplexed ପୃ: ୧୧୩

(୧୧) ହରିଜନ—ତା ୨୧ । ୭ । ୧୯୪୭

ହୋଇଯାଏ ତା'ହେଲେ ସେପରି ରାଜନୀତି ଗାନ୍ଧିଙ୍କ ଦର୍ଶନ କେବେ ହୋଇପାରିବ ନାହିଁ । ଗାନ୍ଧିଜୀ ସତ୍ୟକୁ ଏତେ କଠୋରଭାବେ ଗ୍ରହଣ କରିଥିଲେ ଯେ ସେ ବାସ୍ତବ ରାଜନୀତିପାଇଁ କୂଟନୀତି ବା ରାଜନୀତିକ କୌଶଳକୁ ଅଗ୍ରାହ୍ୟ କରିଦେଇ କହୁଥିଲେ—"ମୋର କୌଣସି ଗୋପନୀୟ ବିଷୟ ନାହିଁ । ସତ୍ୟ ବ୍ୟତୀତ ମୁଁ କୌଣସି ପ୍ରକାର କୂଟନୀତି ବା ରାଜନୀତିକ କୌଶଳ ଜାଣିନାହିଁ । ଅହିଂସା ବ୍ୟତୀତ ମୋର କୌଣସି ଅସ୍ତ୍ର ନାହିଁ" (୧୨) । ରାଜନୀତିକୁ ଧର୍ମ ଓ ସତ୍ୟାଭିମୁଖୀ କରିବାପାଇଁ ସେ କେବଳ ସତ୍ୟ ଓ ଅହିଂସାକୁ ଗ୍ରହଣକରି କୂଟନୀତି, ରାଜନୀତିକ କୌଶଳ ଓ ଗୋପନୀୟତାକୁ ପରିତ୍ୟାଗ କରିବାପାଇଁ କେବଳ ତ ପରାମର୍ଶ ଦେଉନଥିଲେ, ତାହାକୁ ନିଜ କାର୍ଯ୍ୟ କ୍ଷେତ୍ରରେ ପ୍ରୟୋଗ କରିଥିଲେ । ସ୍ୱାଧୀନତା ଆନ୍ଦୋଳନ ସମୟରେ ସରକାରଙ୍କ ସି. ଆଇ. ଡ଼ି.ମାନଙ୍କ ଭୟରୁ ଲୋକଙ୍କୁ ନିର୍ଭୟ କରିବାପାଇଁ ସେ ନିଜେ ପ୍ରଥମେ ଆନ୍ଦୋଳନର ସଠିକ୍ ବିବରଣୀ ଖୋଲାଖୋଲିଭାବେ ପ୍ରକାଶକରି ଦେଉଥିଲେ । ସମସ୍ତ ସତ୍ୟ ଖୋଲାଖୋଲିଭାବରେ ପ୍ରକାଶ କରିବା ପଛରେ ଏକ ମହତ୍ ଉଦ୍ଦେଶ୍ୟ ଥିଲା ଯେ ଏହାଦ୍ୱାରା ପ୍ରତ୍ୟେକ ଆନ୍ଦୋଳନକାରୀଙ୍କ ଲକ୍ଷ୍ୟ ମହତ ହେବା ସଙ୍ଗେ ସଙ୍ଗେ କର୍ମପଥ (means) ମହତ୍ ହୋଇପାରିବ । ବ୍ୟକ୍ତି-ବିଶେଷର ସମଷ୍ଟି ହେଉଛି ରାଷ୍ଟ୍ର; ତେଣୁ ବ୍ୟକ୍ତିବିଶେଷଙ୍କପାଇଁ ଯେଉଁ କାର୍ଯ୍ୟ କରାଯିବ ତାହା ଲୋକଙ୍କୁ ଜଣେଇ ଦେଲେ କର୍ମପଥର ନେପଥ୍ୟରେ କୌଣସି ଖଳବୁଦ୍ଧିର କୁଚକ୍ର ଆଉ ରହିପାରିବ ନାହିଁ । ତେଣୁ ଯେତେବେଳେ ୟାରଭଦା ପ୍ୟାକ୍ଟକୁ (୧୯୩୨) ଛିନ୍ନକରି ମୁଞ୍ଜେ ଆମ୍ବେଦକର ପ୍ୟାକ୍ଟର ପ୍ରସ୍ତୁତି ଚାଲିଥିଲା ସେ ସମୟରେ ଶ୍ରୀ ଏମ୍. ସି. ରଜା ଗାନ୍ଧିଙ୍କ ପାଖକୁ ପଠାଇଥିବା କେତେକ ଗୁପ୍ତ ପ୍ରସ୍ତାବଗୁଡ଼ିକୁ ଗାନ୍ଧିଜୀ ୟଙ୍ଗ୍ ଇଣ୍ଡିଆରେ ପ୍ରକାଶକରି ଦେଇଥିଲେ ।

ରାଜନୀତିରେ ଧର୍ମର ମିଶ୍ରଣ କରିବା ମୂଳରେ ଗାନ୍ଧିଙ୍କ ଆଉ ଏକ ମହାନ୍ ଉଦ୍ଦେଶ୍ୟ ଥିଲା ଯେ ଏହାଫଳରେ ରାଜନୀତିକୁ ଯେଉଁମାନେ ଆସିବେ ସେମାନେ କଠୋରଭାବରେ ଶୃଙ୍ଖଳିତ ଜୀବନଯାପନ କରିବେ । ଶୃଙ୍ଖଳାବିହୀନ ଜଣେ ବ୍ୟକ୍ତି ସର୍ବଦା ପଶୁସହ ସମାନ ଓ ସେ ଯଦି ରାଜନୀତି ମାଧ୍ୟମରେ ରାଷ୍ଟ୍ର ପରିଚାଳନା କରେ, ତାହାର ବିଶୃଙ୍ଖଳ କାର୍ଯ୍ୟକ୍ରମର ଉଦାହରଣରେ ଅନ୍ୟମାନେ ମଧ୍ୟ ପ୍ରଭାବିତ ହୋଇ ସମଗ୍ର ରାଷ୍ଟ୍ରରେ ବିଶୃଙ୍ଖଳା ଦେଖାଦେବ । ଜୀବନର ଗତିପଥକୁ ଓ କର୍ମପନ୍ଥାକୁ ଶୃଙ୍ଖଳାବଦ୍ଧ କରିବାପାଇଁ ଧର୍ମ ଉପଦେଶ ଦିଏ । ରାଷ୍ଟ୍ରରେ ଶୃଙ୍ଖଳା ରକ୍ଷାପାଇଁ ମିଲିଟାରୀ ବା ବନ୍ଧୁକ ମୁନ କିଛି ସମସ୍ୟାପାଇଁ ସାହାଯ୍ୟ କରିପାରେ, କିନ୍ତୁ ମଣିଷର ଅନ୍ତର୍-ବିଶୃଙ୍ଖଳାକୁ ଏହା ରକ୍ଷା କରିପାରେ ନାହିଁ । ତେଣୁ ସମସ୍ତ କାମନା ଓ ଇନ୍ଦ୍ରିୟ ଉପରେ ଶୃଙ୍ଖଳାର ବନ୍ଧନ ରଖିବାପାଇଁ ଧର୍ମର ପଥ ରହିଛି । ରାଜନୀତି କ୍ଷେତ୍ରରେ ମଧ୍ୟ ଶୃଙ୍ଖଳାର ଜ୍ଞାନ ଓ ଆବଶ୍ୟକତା ଉପଲବ୍ଧି କରି ଗାନ୍ଧିଙ୍କ ମତ ଥିଲା କଠୋର ଶୃଙ୍ଖଳିତ ଶାସନ ସପକ୍ଷରେ । ତେଣୁ ସେ ୧୯୨୦ରୁ ୧୯୪୮ ଯାଏଁ ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ କଂଗ୍ରେସ କର୍ମୀ ତଥା ଅନ୍ୟ ରାଜନୀତିଜ୍ଞମାନଙ୍କୁ କଠୋର ଶୃଙ୍ଖଳାର ଆଦେଶ ଦେଉଥିଲେ । ଆଶ୍ରମରେ ଥିବା କଂଗ୍ରେସ କର୍ମୀ, ରାଜନୀତିଜ୍ଞ, ସମାଜସେବୀ ଓ ସତ୍ୟାଗ୍ରହୀମାନଙ୍କୁ ସେ ବିଭିନ୍ନ ସମୟରେ ଏଭଳି ଆଦେଶ ଦେଉଥିଲେ ।

ରାଜନୀତିକୁ ଅଧ୍ୟାତ୍ମବାଦୀ କରିବାପାଇଁ ଗାନ୍ଧିଜୀଙ୍କ ମତାମତ ରାଷ୍ଟ୍ରର ପରିଚାଳନା କ୍ଷେତ୍ରରେ ମଧ୍ୟ ପ୍ରଯୁଜ୍ୟ । ରାଷ୍ଟ୍ର ହେଉଛି ବ୍ୟକ୍ତିବିଶେଷଙ୍କର ସମଷ୍ଟି । ତେଣୁ ଗାନ୍ଧିଙ୍କ ମତରେ ରାଷ୍ଟ୍ରର ପ୍ରଥମ କାମ ହେଉଛି ଲୋକଙ୍କର ମଙ୍ଗଳ ବିଧାନ କରି ସେମାନଙ୍କୁ ଏପରି ମାର୍ଗ ପ୍ରଦର୍ଶିତ କରିବା, ଯାହାଫଳରେ ସେମାନେ ସୁନ୍ଦର, କଷ୍ଟହୀନ ଓ ମହତ୍ତର ଜୀବନଯାପନ କରିପାରିବେ । ରାଷ୍ଟ୍ର ସମ୍ପର୍କରେ ଗାନ୍ଧିଜୀ ମତ ହେଉଛି ଯେ ଏହା ଜନମଙ୍ଗଳକାରୀ ରାଷ୍ଟ୍ର ହେବା ଉଚିତ । ଏହି ଦୃଷ୍ଟିରୁ ଏହାର ହାତରେ ସମସ୍ତ ରାଜନୈତିକ କ୍ଷମତା ରହିବା ଦରକାର । ମାତ୍ର ତାହାର ଅର୍ଥ ନୁହେଁ ଯେ ରାଷ୍ଟ୍ରପାଇଁ ବ୍ୟକ୍ତିର ବିବେକର ବଳିଦାନ । ସୁତରାଂ ରାଷ୍ଟ୍ରରେ ବ୍ୟକ୍ତି ସ୍ୱାଧୀନତା ରହିବା ସଙ୍ଗେ ସଙ୍ଗେ ଏହା ଜନମଙ୍ଗଳ ରାଷ୍ଟ୍ର ହେବା ଦରକାର । ବ୍ୟକ୍ତି ସ୍ୱାଧୀନତାପାଇଁ ପ୍ରଶସ୍ତ ସୁବିଧା ଦେଇଥିବାରୁ ସେ ବ୍ରିଟିଶ ପରମ୍ପରାକୁ ମଧ୍ୟ ସ୍ୱାଗତ ଜଣାଇଥିଲେ (୧୩) ।

ଲୋକଙ୍କ ମଙ୍ଗଳକାମୀ ସରକାର ଖୁବ୍ ଅଳ୍ପ ଶାସନକରି ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ମେଣ୍ଟାଇଲେ ତା'ହାତରେ କ୍ଷମତା ରହିବା ଉଚିତ ଏବଂ ସେହି ରାଷ୍ଟ୍ର ସାର୍ବଭୌମ ବୋଲି ଗଣାଯିବା ଦରକାର । ମାତ୍ର ଗାନ୍ଧିଙ୍କ ମତରେ ତାହାର ଅର୍ଥ ନୁହେଁ ଯେ ବିବେକ, ଭଗବାନ ବା ଧର୍ମକୁ ଅବମାନନା

(୧୨) ୟଙ୍ଗ୍ ଇଣ୍ଡିଆ ତା ୧ । ୧୨ । ୧୯୨୪

(୧୩) ମୋହନଦାସ କରମଚାନ୍ଦ ଗାନ୍ଧୀ : ଭାଷଣ ଓ ରଚନାବଳୀ ୧୯୧୯ ପୃ: ୨୦୧ (ପ୍ରକାଶକ—ଜି: ଏ: ନାଟେଶନ ଏଣ୍ଡ କୋ:, ମାନ୍ଦ୍ରାଜ) ।

କରିବା । ଯେଉଁ ରାଷ୍ଟ୍ରର ରାଜନୈତିକ ବାୟୁମଣ୍ଡଳରେ ବିବେକ, ଭଗବାନ ଓ ଧର୍ମକୁ ଗୌଣ ବୋଲି ବିଚାର କରାଯାଇ ରାଷ୍ଟ୍ରକୁ ସମସ୍ତଙ୍କ ଊର୍ଦ୍ଧ୍ୱରେ ରଖାଯାଇଛି, ସେଇଠି ଅସତ୍ୟ, ଶୋଷଣ, ଅତ୍ୟାଚାର, ପ୍ରବଞ୍ଚନା ଏବଂ ସ୍ୱେଚ୍ଛାଚାରିତା ବୃଦ୍ଧି ପାଇଁ ବିନାଶର ପଥ ସୁଗମ ହୋଇଛି । କାଇଜର, ମାକିଆଭେଲି, ହିଟଲର ଓ ମୁସୋଲିନୀ ପ୍ରମୁଖ ରାଷ୍ଟ୍ରକୁ ଧର୍ମର ଉପରେ ରଖିବାଯୋଗୁଁ ଉଗ୍ର-ଜାତୀୟତାବାଦ ପ୍ରକାଶ ପାଇଥିଲା । ନିଜ ରାଷ୍ଟ୍ରପ୍ରତି ଉଗ୍ର-ଜାତୀୟତାବାଦ୍ ପ୍ରକାଶ ପାଇବା ଓ ମମତା ପ୍ରକାଶ ପାଇବା ମଧ୍ୟରେ ତଫାତ୍ ଅଛି । ଉଗ୍ରଜାତୀୟତା ବାଦ୍ ପ୍ରକାଶ ପାଇଲେ ନିଜର ଭୁଲ ଓ ଠିକ୍ ମଧ୍ୟରେ ଥିବା ପ୍ରଭେଦକୁ ଜାଣି ହୁଏ ନାହିଁ । ତେଣୁ ବିବେକ ଓ ଧର୍ମ ବିରୁଦ୍ଧରେ ମଧ୍ୟ ରାଜନୈତିକ କାର୍ଯ୍ୟ କଳାପକୁ ପ୍ରୋତ୍ସାହିତ କରାଯାଇଥାଏ ରାଷ୍ଟ୍ରପାଇଁ । ଏହି ତତ୍ତ୍ୱକୁ ପୂରାପୂରି ଅଗ୍ରାହ୍ୟକରି ଗାନ୍ଧିଜୀ କହିଥିଲେ—ଯଦି ବିବେକ ଓ ରାଷ୍ଟ୍ର ଏବଂ ଭଗବାନ ଓ ରାଷ୍ଟ୍ର ମଧ୍ୟରେ କାହାକୁ ସେ ଗ୍ରହଣ କରିବେ ବୋଲି ବୁଝାଯାଏ, ସେ ବିବେକ ଓ ଭଗବାନଙ୍କୁ ଗ୍ରହଣ କରିବେ । (୧୪)

ରାଷ୍ଟ୍ରର ସୁରକ୍ଷା ଓ ଶାନ୍ତିରକ୍ଷାପାଇଁ ରାଜନୀତିକ ଦୃଷ୍ଟିରୁ ସିଦ୍ଧାନ୍ତ ଗ୍ରହଣ କରାଗଲେ ସୁଦ୍ଧା ଏ ଦୁଇ ବ୍ୟବସ୍ଥାପାଇଁ ସାମରିକ ବାହିନୀ ଓ ପୋଲିସ ବିଭାଗ ରହିବେ । ମାତ୍ର ଭାରତରେ ଏମାନଙ୍କ ନିର୍ଦ୍ଦିଷ୍ଟ ଭୂମିକା ରହିଛି । ଭାରତ କଦାପି ସାମରିକ ଦେଶ ହେଉ ବା ହେବ, ଏକଥା ଗାନ୍ଧିଜୀ ଚାହିଁ ନଥିଲେ । ଜଣେ ଗଣ-ତନ୍ତ୍ରବାଦୀ ଭାବେ ସେ ସାମରିକ ବାହିନୀ ତଥା ପୋଲିସ ବିଭାଗର ପୁନର୍ଗଠନ ସକାଶେ ମତ ଦେଇଥିଲେ । ଯେଉଁଠି ନ୍ୟାୟ ଯୁଦ୍ଧ ଚାଲେ, ସେଠାରେ ସାମରିକ ବାହିନୀକୁ ସମର୍ଥନ କରାଯିବା ଦରକାର । ଏଇ ଦୃଷ୍ଟିରୁ ସେ କାଶ୍ମୀରରେ ଭାରତୀୟ ସାମରିକ ବାହିନୀର କାର୍ଯ୍ୟକୁ ୧୯୪୮ରେ ସମର୍ଥନ କରିଥିଲେ । ତଥାପି ତାଙ୍କର ଦୃଢ଼ ମତ ଥିଲା ଯେ ଦେଶର ଶକ୍ତି ଓ ବିଭବ ଅଯଥା ସମର-ସଜ୍ଜା ତଥା ସାମରିକ କାର୍ଯ୍ୟକଳାପରେ ନଷ୍ଟ ହେବା ପରିତାପର ବିଷୟ ହେବ । ତେଣୁ ସେ ୧୯୩୯ରେ ଭାରତୀୟ ସେନାଧ୍ୟକ୍ଷଙ୍କ ମତ ବିରୋଧକରି କହିଥିଲେ "ମାନବିକ ମୂଲ୍ୟବୋଧପାଇଁ ଭାରତର ନିର୍ଦ୍ଦିଷ୍ଟ ଭୂମିକା ରହିଛି । ଆପଣମାନେ ଏହାକୁ ଏକ ସାମରିକ ଦେଶ ଭାବିବା ମୂର୍ଖସ୍ୱପ୍ନ ଅଟେ । * * * ଲକ୍ଷ ଲକ୍ଷ ଲୋକଙ୍କୁ ହିଂସାର କଳଙ୍କିତ କଳା ଶିକ୍ଷାଦେବା ଅପେକ୍ଷା ସେମାନଙ୍କୁ ଅହିଂସାର ଶ୍ୱେତ-କଳା ଶିକ୍ଷାଦିଆଯାଇ ପାରିବ ।"

ଗାନ୍ଧିଜୀଙ୍କ ମତରେ ଧର୍ମ-ସମ୍ମିଶ୍ରିତ-ରାଜନୀତି ପରି-ଚାଳିତ ଏକ ଅହିଂସାବାଦୀ ରାଷ୍ଟ୍ରରେ ପୋଲିସର ମଧ୍ୟ ଆବଶ୍ୟକତା ରହିଛି । ଏ ସଂପର୍କରେ ତାଙ୍କର ଭାଷା ହେଉଛି—ଏହି ପୋଲିସ ଲୋକେ ଅହିଂସାବାଦୀ ହେବେ । ସେମାନେ ଲୋକଙ୍କର ପ୍ରଭୁ ନୁହନ୍ତି, ଦାସ । ସେମାନେ ଅସ୍ତ୍ରରଖି ପାରନ୍ତି ମାତ୍ର ତାହାର କ୍ୱଚିତ୍ ବ୍ୟବହାର ହେବ, ଏପରିକି ବ୍ୟବହାର ମଧ୍ୟ ହୋଇ ନପାରେ । ସେମାନଙ୍କର କାମ କେବଳ ଚୋର ଓ ତସ୍କରଙ୍କ କ୍ଷେତ୍ରରେ ସୀମିତ ରହିବ । ପାରସ୍ପରିକ ସହଯୋଗରେ ସେମାନେ ହିନ୍ଦୁମୁସଲମାନ ଗଣ୍ଡଗୋଳ ଦବେଇ ପାରିବେ । ପୋଲିସ ଲୋକେ ପ୍ରକୃତରେ ସଂସ୍କାରବାଦୀ ହେବେ, (୧୫)

ରାଜନୀତିସହ ଧର୍ମର ପ୍ରବର୍ତ୍ତନ କରିବା ଦିଗରେ ମହାତ୍ମା ଗାନ୍ଧୀଙ୍କ ଉଚ୍ଚ ଅଭିଳାଷ ଥିଲା ଯେ ଏହାଫଳରେ ସାଧାରଣଲୋକ ପ୍ରକୃତ ଜୀବନଯାପନ କରିପାରିବେ, ଶାସକମାନେ ଉଚ୍ଚ ଆଦର୍ଶର ପଥ ପ୍ରଦର୍ଶକ ହେବେ । ଏହି କଠୋର ସାଧନାର ପରୀକ୍ଷା ସେ ପ୍ରଥମେ ନିଜ କ୍ଷେତ୍ରରେ ପାଳନ କରିଥିଲେ । ତେଣୁ ସେ ରାଜନୀତିରେ ଯୋଗଦେଇ ସୁଦ୍ଧା ଜଣେ ମହାନ ଧର୍ମଗୁରୁ ଓ ଜଣେ ମହାନ ଧର୍ମଗୁରୁ ହୋଇସୁଦ୍ଧା ଜଣେ ତୁଳନାବିହୀନ ରାଜନୀତିଜ୍ଞ । ଏହି ପନ୍ଥା—ରାଜନୀତିସହ ଧର୍ମର ମିଶ୍ରଣ ଓ ଗାନ୍ଧିଜୀଙ୍କ ସମ୍ପର୍କରେ କନ୍‌ସଲେ ମାର୍ଟିନ ଯଥାର୍ଥରେ କହିଛନ୍ତି—"ପ୍ରଥମେ ମୁଁ ଯେତେବେଳେ ଗାନ୍ଧିଜୀଙ୍କୁ ଗୋଲଟେବୁଲ ବୈଠକରେ ଦେଖେଁ ତାଙ୍କୁ ପଚାରିଥିଲି ଯେ ସେ କେଉଁ ପରିମାଣରେ ଜଣେ ସନ୍ଥ ଓ କେଉଁ ପରିମାଣରେ ଜଣେ ରାଜନୀତିଜ୍ଞ । ପରେ ମୁଁ ଭାବିଲି ଏହି ପ୍ରଶ୍ନର ଉତ୍ତର ଦେଇହେବ ନାହିଁ । ଜଣେ ମଣିଷ ଦେହରେ ଏ ଦୁଇଟି ଦିଗର ମିଶ୍ରଣ ହୋଇଛି, ଅବିଚ୍ଛିନ୍ନ ଭାବେ । ଭାରତରେ ସାଧୁ ଓ ସନ୍ଥମାନେ ମଧ୍ୟ ରାଜନୀତିଜ୍ଞ ହୋଇ ପାରନ୍ତି ।" (୧୬)



(୧୪) ୟଙ୍ଗ ଇଣ୍ଡିଆ ୨୦-୧୦-୧୯୨୧

(୧୫) ଏମ୍. କେ. ଗାନ୍ଧୀ ଶାନ୍ତି ଓ ଯୁଦ୍ଧରେ ଅହିଂସା (ଇଂରାଜୀ) ପୃ: ୨୨୮, ଓ [illegible] (ନବଜୀବନ ପବ୍ଲିଶିଂ-ହାଉସ, ଅହମଦାବାଦ)

(୧୬) 'ମହାତ୍ମା ଗାନ୍ଧୀ' ପୁସ୍ତକରେ କନ୍‌ସଲେ ମାର୍ଟିନଙ୍କ ପ୍ରବନ୍ଧରୁ ଉଦ୍ଧୃତ—ପୃ: ୪୧୫

# ଗୋପବନ୍ଧୁଙ୍କ ଲୁହ

ଶିଶୁ କାନ୍ଦେ, ଯେତେ ଅବସରରେ ଜନ୍ମିଲେ ବି। ପୃଥିବୀରେ ତା'ର ପ୍ରଥମ ସ୍ୱର କାନ୍ଦରେ। ଯେପରି କି ସେ ସୂଚନା ଦିଏ—ଜୀବନରେ ଏହି ସ୍ୱରହିଁ ଅଧିକ ସତ୍ୟ। ପୃଥିବୀ ବେଦନଭରା—ଅଭାବ ରୋଗ ବ୍ୟାଧିର ଦୁଃଖରେ, ବିୟୋଗ ଓ ବିଚ୍ଛେଦ ଦୁଃଖରେ।

ଶିଶୁ ଅଣହେଲା ବରଦାସ୍ତ କରିପାରେ ନାହିଁ। କ୍ଷୁଧାର ସାମାନ୍ୟ ପୀଡ଼ାରେ ସେ କାନ୍ଦେ। କାନ୍ଦିବା ତା'ର ଏକ ଶକ୍ତି, ଦୃଷ୍ଟି ଆକର୍ଷଣର ଏକ ଅସ୍ତ୍ର। ମାତୃସ୍ତନ୍ୟ ମୁଖରେ ଲାଗିଲେ କାନ୍ଦ ଅଧାସ୍ୱରରୁ ବି ବନ୍ଦ ହୋଇଯାଏ।

ଝିଅ ବୋହୂ ହୋଇଗଲାବେଳେ କାନ୍ଦେ। ଅପରିଚିତ ସ୍ଥାନ ଓ ମନୁଷ୍ୟ, ସ୍ନେହହୀନ ବାତାବରଣ। ଶାଶୁ ଓ ନଣନ୍ଦ ନାମରେ ଆତଙ୍କ, ନାନା କଠୋର ଦୃଷ୍ଟି ଓ ଧମକ୍ ମଧ୍ୟରେ ସ୍ୱାଭାବିକ ଭାବେ ଜୀବନ ଚଳାଇବା ଅଳ୍ପ କଷ୍ଟସାଧ୍ୟ ନୁହେଁ। ଶଙ୍କା ଓ ସଂକୋଚ ମଧ୍ୟରେ ଜୀବନ ତା'ର ରୁଦ୍ଧ ହୋଇଯାଏ। ସେ କାନ୍ଦେ, କାନ୍ଦରୁ ତା'ର ଝରେ ଗୀତ, ଦୁଃଖଭରା, କିନ୍ତୁ ପ୍ରୀତିପଦ। ଆଜି ସାରସ୍ୱତ ଭଣ୍ଡାରର ଅମୂଲ୍ୟ ରତ୍ନ ସେ ସବୁ। କିନ୍ତୁ ଏହାର ପରିସର ସୀମିତ। ଏହି ଗତାନୁଗତିକ ଗୀତ ଏବେ ଅଚଳ। ଏ ଯୁଗର ଝିଅ କାନ୍ଦେ ନାହିଁ, କାନ୍ଦିଲେ ବି ଆଖିର ଝରଣା ସଙ୍ଗେ ଅଧରରୁ ଗୀତ ବାହାରେ ନାହିଁ।

ଲୋକ ବିଚ୍ଛେଦରେ ଅଶ୍ରୁ ଝରାଏ, ମୁଖରେ ହାହାକାର କରେ। ପୁଣି ଜଞ୍ଜାଳରେ ସମସ୍ତ ଦୁଃଖ ବିସ୍ମୃତ ହୁଏ। ସଂସାରର ଯେତେ ଅଶ୍ରୁ ଝରିଛି, ସବୁ ସାଇତି ରଖିଥିଲେ ଗୋଟିଏ ହ୍ରଦ ହୋଇଥାନ୍ତା। କିନ୍ତୁ ଅଧିକାଂଶ ତ ସ୍ୱାର୍ଥ ପ୍ରଣୋଦିତ। କିଏ କାହିଁକି ସାଇତି ରଖିବ ?

କେତେକ ଅନ୍ତର୍ଗତ ରଚନାର ଦୁଃଖକୁ କବି କରିବେ କବିତା—'ମେଘଦୂତ' 'ଚୌରପଞ୍ଚାଶିକା' ବା 'ଗୃହ-ଇଚ୍ଛାବତୀ' । କେଉଁଠି ଗଭୀର ଦୁଃଖ ଅନ୍ତରରେ ଉଦ୍ଭବର ଅଶ୍ରୁ ଝରିଯାଏ ଗୀତ ହୋଇ—'କୃପାସିନ୍ଧୁ ବଦନ କରି ଅବଲୋକନ କେବେ କରମ ସ୍ଥାନ ଜନ' । କିନ୍ତୁ ସ୍ୱାର୍ଥ ମଧ୍ୟରେ ଦେଖିଲେ ଭୁଲୁ ଭୁଲୁ ଅଧିକାଂଶଙ୍କ ଆୟୁକାଳ ଶେଷ ହୋଇଯାଏ । 'ମୋ ଜୀବନ ତ ଧୋଇଲେ ଶୁଖେଇଲେ ସରୁ ନାହିଁ, ମୁଁ ପର ଲାଗି ଭାବିବି କେତେବେଳେ ?' ଏ ସାଧାରଣଙ୍କ ଉକ୍ତି । ସଂସାର ଉପରେ ଅଧିକାଂଶ ଅବନତ । ଯେଉଁମାନଙ୍କର ସମସ୍ତ, ସୁବିଧା ଅଛି, ସେମାନେ ସ୍ୱାର୍ଥଲିପ୍ତ । କିନ୍ତୁ ଗୋପବନ୍ଧୁଙ୍କ ଜୀବନ ଅନ୍ୟ ଉପାଦାନରେ ଗଢ଼ା । ତାଙ୍କ ଦୃଷ୍ଟିରେ ପର ପରମେଶ୍ୱର ।

ପର ସେବା ଈଶ୍ୱର ସେବା । ପର ଦୁଃଖ ତାଙ୍କ ନିଜ ଦୁଃଖ । ଦୁଃଖ ଦୂର କରିବାକୁ ସେ ଆଜୀବନ ଚେଷ୍ଟା କରିଛନ୍ତି, ଦୂର କରି ନ ପାରି କାନ୍ଦିଛନ୍ତି । କାନ୍ଦିବା, ଅର୍ଥ—'ହେ ଈଶ୍ୱର, ମୁଁ ପାରିଲି ନାହିଁ, ତୁମେ କର ।' ଅଶ୍ରୁ ଈଶ୍ୱରଙ୍କ ମନ ତରଳାଏ, ତାଙ୍କର ବିଶ୍ୱାସ ।

ଗୋପବନ୍ଧୁଙ୍କ ଝୋପାଏ ହେଲେ ଲୁହ ଜାତି ତଳେ ପଡ଼ିବାକୁ ଦେଇ ନାହିଁ । ମନ ପାତି ଧରି ନେଇଛି, ହୃଦୟାଧିକାର ମୁକ୍ତି ପାଇତ ରଖିଛି । ସେ ଲୁହରୁ ଏବେ ନୂତନ ତେଜ ବାହାରୁଛି, ନବ ନବ ଅର୍ଥରେ କବିତା ପରି ମନୋହର ହୋଇ ଉଠୁଛି । ଜାତି ସଂଗଠନରେ ସେ ସବୁର ଭୂମିକା ଏବେ ଅପରିସୀମ ।

ସେ ଅଶ୍ରୁରେ ନ ଥିଲା କିଛି ହେଲେ କ୍ଳେଦ । କମଳସ୍ଥ ଉପରର କାକର ପରି ଏହା ଥିଲା ସ୍ୱଚ୍ଛ, ପାର୍ବତ୍ୟ ଉତ୍ସ ପରି ସ୍ୱଚ୍ଛନ୍ଦ । ଏହା ପୂର୍ବ ଚିନ୍ତା ପ୍ରସୂତ ବା ଉଦ୍ଦେଶ୍ୟମୂଳକ ନ ଥିଲା । ଦୁଃଖ ଅନୁଭବ ଏକାନ୍ତ ଆନ୍ତରିକ ଓ ନିଃସରଣ ସ୍ୱାଭାବିକ ଥିଲା । ତାଙ୍କ ବେଦନାଭରା କଥାର ଏହା ତରଳ ରୂପ ମାତ୍ର ଥିଲା । କିନ୍ତୁ କଥା ଅପେକ୍ଷା ଥିଲା ଏହା ଅଧିକ ଶକ୍ତିଶାଳୀ । କଥାର ଯାହା ଅସାଧ୍ୟ, ଲୁହ ପକ୍ଷରେ ଥିଲା ତାହା ସହଜସାଧ୍ୟ ।

ପର୍ବତ ଝାଳିଥିଲେ ସେ, ମାଙ୍କଡ଼ା ପଥରକୁ ତରଳାଇ ଦେଇଥିଲେ, ତରଳକୁ ମଧ୍ୟ ସେ କରି ଦେଇଥିଲେ ଜମାଟ, ଅତ୍ୟାଚାରୀ ଉପଦ୍ରବକାରୀର ସ୍ରୋତକୁ ସେ କରି ଦେଇଥିଲେ ସ୍ଥିର, ଜୀବନ ଚକ୍ଷୁରେ ଫୁଟାଇ ଦେଇଥିଲେ ନବ ନବ ମଞ୍ଜରୀ । ସତେ ସେ ଅଶ୍ରୁର ଥିବ ମହିମା ଥିଲା—ସନ୍ନ୍ୟାସୀର ବିଭୂତି ଓ ଦେବତାର ବର ଅପେକ୍ଷା ଥିଲା ସେ ଅଧିକ କର୍ମଶୀଳ । ତାଙ୍କ କ୍ଷେତ୍ରରେ ଉତ୍ତାପ ଅପେକ୍ଷା ଆର୍ଦ୍ରତା ଥିଲା ଅଧିକ । ସେ କାନ୍ଦିଲେ କାନ୍ଦୁଥିଲେ ସମସ୍ତେ । କରୁଣ ଗୀତ କବିତା ମଧ୍ୟ କାନ୍ଦର ମୂର୍ଚ୍ଛନା ବାଜୁଥିଲା ମର୍ମେ ମର୍ମେ ।

ଯେଉଁଠି କୁସଂସ୍କାର, ଅନ୍ଧ ବିଶ୍ୱାସ, ତାଙ୍କ ଅଶ୍ରୁ ପଡ଼ୁଥିଲା ସେଠି । ଯେଉଁଠି ବିଧବା, ପତିତା, ଦୁଃଖିନୀଙ୍କ, ରୋଗଗ୍ରସ୍ତ, ନିଅନ୍ନ ନିପୀଡ଼ିତ, ତାଙ୍କ ଅଶ୍ରୁ ଝରୁଥିଲା ସେଠି ।

ତାଙ୍କ ଭିତରେ ଥିଲା ଏକ ଅଭିମାନିନୀ ନାରୀ—ଜାତୀୟ ମର୍ଯ୍ୟାଦା ଉପରେ ସାମାନ୍ୟ ଆଞ୍ଚ ଆସିଲେ ସେ ରୁଷ୍ଟ ଥିଲା; ବ୍ୟକ୍ତିଗତ ମାନ ଅଭିମାନ, ସୁଖଶୋକ ତା'ର ନ ଥିଲା । ସେ ରୁଷ୍ଟ ଥିଲା ଦେଶର ଦୁର୍ଗତିରେ, ରାଜାର ଅତ୍ୟାଚାରରେ, ସାହୁକାରର ଲୁଣ୍ଠନରେ, ଦାରିଦ୍ର୍ୟ ଓ ବ୍ୟାଧିର ବିକୃତ ବିକଟତାରେ । ସ୍ୱରାଜ୍ୟର ପଥ ରୁଦ୍ଧ ହେଲେ, ଦୁର୍ଗତର ଦୁଃଖ ଦୂରୀକରଣରେ ଲୋକେ ଉଦାସୀନ ହେଲେ, ଏପରିକି ଉପକାରୀ ପଶୁ ନିପୀଡ଼ିତ ହେଲେ ତାଙ୍କ ଆଖିରୁ ଝରି ଯାଉଥିଲା ଅସରନ୍ତି ଲୁହ ।

ଗୋପବନ୍ଧୁ ଆଜନ୍ମ ଦୁଃଖୀ । ମାତୃମୁଖ ଦର୍ଶନ ବା ମାତୃସ୍ତନ୍ୟପାନର ସୌଭାଗ୍ୟ ତାଙ୍କର ହୋଇ ନାହିଁ । ତାଙ୍କ ବାଲ୍ୟକାଳ ଅଜଣା ବିଷାଦରେହିଁ ଭରି ରହିଥିଲା । ପିତା ଦୈତ୍ୟାରି ଦାଶଙ୍କ ତୃତୀୟ ପତ୍ନୀ ସ୍ୱର୍ଣ୍ଣମୟୀ ଦେବୀଙ୍କର ଏକମାତ୍ର ସନ୍ତାନ ସେ । ଜନନୀର ସ୍ନେହ କୋଳ-ଗୌରବ ବା ପିଲାଭୁଲାଣିଆ ଗୀତ ମଧ୍ୟରେ ସଙ୍ଗୀ ପିଲାମାନେ ଇଚ୍ଛା ହୋଇ ଯାଉଥିବାବେଳେ ସେ ବିଷର୍ଣ୍ଣମୁଖରେ ବସି ରହୁଥିଲେ । ତାଙ୍କ ଏକାକୀତ୍ୱ ବୋଧ ତୀବ୍ର ହେଉଥିଲା । ଅନ୍ତରର ନିବିଡ଼ ଦୁଃଖ ସେ ଲିପିବଦ୍ଧ କରି ଯାଇଛନ୍ତି—

'ଦେଖିନାହିଁ ମୁଁ ମାତୃ ବଦନ
ପାନ କରି ନାହିଁ ମାତ ସ୍ତନ ।'

ବାଲ୍ୟବିଧବା, ପିଲାରକ୍ଷଣୀ କମଳା ନାମୀ ତାଙ୍କୁ ଲାଳନପାଳନ କରି ମଣିଷ କରିଥିଲେ । ଗୋପବନ୍ଧୁ ସ୍ନେହମୟୀ ନାମୀଙ୍କୁ କବିତାରେ ଅମର କରିଛନ୍ତି—

'ତୁମର ନିଷ୍କାମ ସ୍ନେହ ସଦା ଥିବ ମନେ
ଯହିଁ ଥିଲେ ନିତି ସ୍ମରୁଥିବି ନାମୀ, ନାମୀ ।'

ଯୌବନ ବୟସରେ ତାଙ୍କର ପତ୍ନୀ ବିୟୋଗ ଘଟିଥିଲା । ସେ ମର୍ମେ ମର୍ମେ ଦଗଧ ହେଉଥିଲେ ବି ଦ୍ୱିତୀୟ ଦାର ପରିଗ୍ରହ କରି ନ ଥିଲେ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ପତ୍ନୀବିଚ୍ଛେଦ କଷ୍ଟ ସ୍ୱ କାବ୍ୟରେ ଲିପିବଦ୍ଧ କରିଅଛନ୍ତି—

'ରାଜାକୁ ହେବାର ରାଜ୍ୟଭ୍ରଷ୍ଟ
ଯୁବାକୁ ହେବାର ପତ୍ନୀ କଷ୍ଟ
କହେ ଉପେନ୍ଦ୍ର, ଏଥୁଁ ବଳି ନାହିଁ ଅନ୍ୟ କଷ୍ଟ ।'

ତାଙ୍କର ଏକମାତ୍ର ପୁତ୍ରର ବିୟୋଗ ମଧ୍ୟ ଘଟିଥିଲା । ବିୟୋଗ ଯନ୍ତ୍ରଣାରେ ତାଙ୍କ ଅନ୍ତର ହାହାମୟ କଲେ ବି ସେ ଭାଙ୍ଗି ପଡ଼ି ନଥିଲେ । ଗୃହ ଓ ଗାର୍ହସ୍ଥ୍ୟ ଧର୍ମ ପ୍ରତି ସେ ଉଦାସୀନ ହୋଇ ପଡ଼ିଥିଲେ । କ୍ରମେ ତାଙ୍କ ବ୍ୟକ୍ତିଗତ ଜୀବନ ଓ ଜାତୀୟ ଜୀବନ ମଧ୍ୟରେ କୌଣସି ତାରତମ୍ୟ ରହିଲା ନାହିଁ । ସମସ୍ତଙ୍କୁ ଆପଣାର କରି-ନେବା ହେଲା ତାଙ୍କ ସାଧନାର ଆଶ୍ଚର୍ଯ୍ୟ ସିଦ୍ଧି । ଏହି ସିଦ୍ଧିରେ ଅଶ୍ରୁର ଭୂମିକା ଗୌଣ ନ ଥିଲା । ଅନ୍ୟମାନଙ୍କ ପକ୍ଷେ ଯାହା ଥିଲା ଏକ ଦୁର୍ବଳତା ବା ଭାବପ୍ରବଣତାର ସଙ୍କେତ, ତାଙ୍କ ପକ୍ଷରେ ହେଲା ଶକ୍ତି, ହୃଦୟ ଜୟ କରିବାର ଏକ ଆୟୁଧ ।

ନରଶ୍ରେଷ୍ଠ ବୃଦ୍ଧା ବନ୍ୟାଜଳରେ ସର୍ବସ୍ୱ ହରାଇ ଭାତ ମୁଠାଏ ପାଇଁ ହାତ ପାତି ରାସ୍ତାଧାରରେ ପଡ଼ିରହିଥିଲା । ବନ୍ୟାଞ୍ଚଳରେ ସାହାଯ୍ୟ ବଣ୍ଟନକରି ଗୋପବନ୍ଧୁ ଫେରି ଆସିଲେ । କିନ୍ତୁ ସେ କରୁଣ ଦୃଶ୍ୟ ସେ ଭୁଲିପାରିଲେ ନାହିଁ । ଡାକବଙ୍ଗଳାରେ ରାତିରେ ଶୋଇଲେ, କିନ୍ତୁ ତାଙ୍କୁ ନିଦ ହେଲାନାହିଁ । ସେ କହିଁ କହିଁ କାନ୍ଦିବାକୁ ଲାଗିଲେ । ଏଥିରେ ବନ୍ଧୁଙ୍କର ନିଦ ଭାଙ୍ଗିଗଲା । ସେ କହିଲେ ଏ ଘରେ ନିଶ୍ଚୟ ଭୂତ ଅଛି । ଗୋପବନ୍ଧୁ କହିଲେ—ଏକା ଏ ଘରେ କାହିଁକି, ଏ ଦେଶରେ ମୋ ପରି ଅନେକ ଭୂତ ଅଛନ୍ତି ! ଆଚ୍ଛା, ଏ ବୁଢ଼ୀଟି ଯଦି ତୁମର ମାଆ କି ମାଉସୀ ହୋଇଥାନ୍ତା ତୁମେ କ'ଣ କରିଥାନ୍ତ ? ଏହା କହୁଁ କହୁଁ ଗୋପବନ୍ଧୁ ଭେଁ ଭେଁ କାନ୍ଦି ଉଠିଲେ ।

କ୍ରମେ ସମଗ୍ର ଓଡ଼ିଶା ହୋଇଗଲା ତାଙ୍କର ଗୃହ, ପ୍ରତ୍ୟେକ ଓଡ଼ିଆ ସ୍ନେହର କୁଟୁମ୍ବ ; କ୍ଷୁଧିତକୁ ଅନ୍ନ, ତୃଷିତକୁ ଜଳ ଓ ଉଲଗ୍ନକୁ ବସ୍ତ୍ର ଯୋଗାଇ ନ ପାରି ଅଭିଭାବକ ଭାବରେ ସେ ଚିନ୍ତାଗ୍ରସ୍ତ ହୋଇ ପଡୁଥିଲେ । ମନର ବେଦନା ଅଶ୍ରୁଧାରାରେ ଓ କରୁଣ ଗୀତରେ ବ୍ୟକ୍ତ କରିଛନ୍ତି—

'କେତେ କେତେ ଦୁଃଖୀ ଭଲ ଭଲ ଲୋକ
ନ ପାନ୍ତି ଦିବେଳା ପେଟପୂରା ଢୋକ ।
ଦେହେ ନାହିଁ ମାଂସ ଦୋହୁଲୁଚି କଣ୍ଠା
ଅନାହାରେ ଆହା ନ ଉଠଇ ଅଣ୍ଟା ।
ଉତ୍କଳର କେତେ କନ୍ୟା ନାରଖାର
ନ କରନ୍ତି ପେଟ ପୂରାଇ ଆହାର ।
ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ
ଫଟେ ନାହିଁ କେବେ ଅଙ୍ଗେ ଯଉବନ ।'

ଜାତୀୟତା ତାଙ୍କ ଲକ୍ଷ୍ୟ ପଥର ସୋପାନ ମାତ୍ର ଥିଲା । 'ବସୁଧୈବକୁଟୁମ୍ବକମ୍' ତାଙ୍କର ଆଦର୍ଶ । ସାରା ଜଗତର କଲ୍ୟାଣ ଚିନ୍ତା ତାଙ୍କର ବ୍ରତ ଥିଲା । ଓଡ଼ିଶାକୁ ସେ କର୍ମକ୍ଷେତ୍ର ରୂପେ ବାଛି ନେଇଥିଲେ, ମନୁଷ୍ୟର ଶକ୍ତି ସୀମିତ ବୋଲି । କିନ୍ତୁ ସମଗ୍ର ଜଗତ ତାଙ୍କ ଚିନ୍ତାର ପରିସର ମଧ୍ୟରେ ଥିଲା । ସେ ହୃଦୟର ଭାବ ଏଇ ଭାବେ ବ୍ୟକ୍ତ କରିଛନ୍ତି—

'ନିଜ ସ୍ୱାର୍ଥ ଲାଗି ଜାତ ନୁହେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ ।
ଜାତୀୟ ମମତା, ବିଶ୍ୱଜନ ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି ।'

କରୁଣାରୁହିଁ ତାଙ୍କ ଅଶ୍ରୁର ନିସ୍ରମୁଖ ଫୁଟିଥିଲା । ଶ୍ରୀମଦ୍ ଭାଗବତରେ ଜଗନ୍ନାଥ ଦାସ ଲେଖିଛନ୍ତି—

ଜୀବରେ ଯା'ର ଦୟା ନାହିଁ
ଉଦ୍ଭବ ଚଣ୍ଡାଳଟି ସେହି ।'

ତାଙ୍କ କରୁଣାର୍ଦ୍ର ହୃଦୟରୁ ନିଃସୃତ ଅଶ୍ରୁଧାରା ଲୋକ ସାଧାରଣଙ୍କ ହୃଦୟକୁ ଧୋଇଧାଇ ନିର୍ମଳ ଓ ଶୁଦ୍ଧମୁକ୍ତ କରିପାରୁଥିଲା ।

ଗୋପବନ୍ଧୁଙ୍କ ସମସ୍ତ କବିତାରେ ଅନ୍ତଃସଲିଳା ଫଲଗୁ ଧାରା ପରି ପ୍ରବାହିତ ରହିଛି ଅଶ୍ରୁ । ସେ ବିଷାଦରୁ ସାନ୍ତ୍ୱନା ଓ ଶାନ୍ତି ପାଉଥିଲେ—

'ପୂର୍ବ ସୁଖ ସ୍ମୃତି ଶାନ୍ତି ଅପହରେ ମନେ
ବଜାଏ ବିଷାଦ ଦ୍ୱିଗୁଣ ପ୍ରାଣେ

ତଥାପି ନିଭୃତ ବିଷାଦ ସଙ୍ଗୀତ
ସନ୍ତାପେ ସନ୍ତତ ସାନ୍ତ୍ୱନା ଆଣେ ।'

ବେଦନା ତାଙ୍କ କବିତାର ମୁଖ୍ୟ ବିଷୟ । କିନ୍ତୁ ପାଠକକୁ କେବଳ କନ୍ଦାଇବା ଲାଗି ନୁହେଁ, ଉଚ୍ଚତର ମାନବତା ଆଡ଼କୁ ଘେନିଯିବାହିଁ ତାଙ୍କର ଉଦ୍ଦେଶ୍ୟ ଥିଲା । ଉଚ୍ଚତର ମାନବତାର ପରବର୍ତ୍ତୀ ସ୍ତରହିଁ ଆଧ୍ୟାତ୍ମିକତା । ଦୁଃଖ ପଥରେହିଁ ସେ ମାନବତାର ଓ ଅମୃତତ୍ୱର ସନ୍ଧାନ କରିଛନ୍ତି ।

'ତାଙ୍କ ପ୍ରେମ ରାଜ୍ୟେ ନାହିଁ ଅସୁନ୍ଦର
ଅସତ୍ୟ, ଅନ୍ୟାୟ, ଅଶୁଭ ବନ୍ଧୁ
କ ମାର ଭାବନା ଯେ ପ୍ରାଣ ପ୍ରବାହ
ଭେଟିଅଛି ଆଜ ଅମୃତ ସିନ୍ଧୁ ।'

ତାଙ୍କ ମାନବ ପ୍ରେମ, ଦେଶପ୍ରୀତି, ବିଶ୍ୱପ୍ରୀତି ଓ ଭଗବତ୍ ପ୍ରୀତି ମଧ୍ୟରେ ଗୋଟିଏ ଉତ୍ସର ବିଭିନ୍ନ ଧାର; ଏକ ହୃଦୟଭରା ପ୍ରେମର ବିଭିନ୍ନ ନାମ ଏସବୁ; ଜଳର ବିଭିନ୍ନ ନାମ ଯେପରି ସଲିଳ, ବାରି, ନୀର, ରୂପେ ଯେପରି ଜଳ, ଶିଶିର, ତୁଷାର, ସେହିପରି ପ୍ରୀତିର ବହୁବିଧ ରୂପ ଓ ବର୍ଣ୍ଣ । ଗୋପବନ୍ଧୁଙ୍କ ଅଶ୍ରୁ ଥିଲା ସବୁ ପ୍ରକାର ପ୍ରୀତିର ଏକ ସ୍ଥୂଳ ରୂପ, ଯେ କେହି ଚେଷ୍ଟାକରି ବାହି ନ ପାରେ । କୃତ୍ରିମ ଅଭିନୟ, ଜାଲ୍ ସମବେଦନା, ଶଠ ପ୍ରୀତି ଅବଶ୍ୟ ଧରା ପଡ଼େ । ଗୋପବନ୍ଧୁଙ୍କ ଆନ୍ତରିକତାରେ ସଂଶୟ ପ୍ରକାଶ କରିବାକୁ ତଥାକଥିତ ବନ୍ଧୁର ଅଭାବ ନ ଥିଲା ।

ତାହା ଜାଣିବା ପରେ ଗୋପବନ୍ଧୁଙ୍କ ମନରେ କ୍ରୋଧ ଆସିଲା ନାହିଁ; ଆସିଲା କୋହ । ଝଞ୍ଜା ପରି ତା'ର ଉଚ୍ଛ୍ୱାସ, ସମସ୍ତ ପ୍ରତିବାଦ ବା ପ୍ରତିରୋଧକୁ ଉଡ଼ାଇଦେବା ବା ବୁଡ଼ାଇଦେବା ଭଳି ଥିଲା ତାର ଶକ୍ତି । 'ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ' କବିତାହିଁ ଅଶ୍ରୁପ୍ରଜଳ ତାଙ୍କର ସମସ୍ତ କବିତାର ଶୀର୍ଷ ସ୍ଥାନରେ ଅବସ୍ଥିତ; ଏହାର ଗମ୍ଭୀରତାର ପରିମାପ ନାହିଁ । ଜୀବନକୁ ତରଙ୍ଗେ ତରଙ୍ଗେ ଯେମିତି ଏହା ପ୍ଲାବିତ ।

ପରଦୁଃଖ ଦୂରୀକରଣ ଲାଗି ମହତ୍ ଲୋକ ଆତ୍ମସୁଖରେ ଜଳାଞ୍ଜଳି ଦେଇପାରେ ନାହିଁ ? ବୁଡ଼ିଯାଉଥିବା ଲୋକର ଉଦ୍ଧାର ଲାଗି ଲୋକ ଆତ୍ମ ବିସର୍ଜନ ଦିଏ ନାହିଁ ? ଦେଶମାତାର ମର୍ଯ୍ୟାଦା ରକ୍ଷା ଲାଗି ଦେଶପ୍ରେମୀ ସୈନିକ ରଣ କ୍ଷେତ୍ରରେ ପ୍ରାଣବଳି ଦିଏ ନାହିଁ ? ଏସବୁ ତ ନିତ୍ୟ ପ୍ରତ୍ୟକ୍ଷ ଘଟଣା; ପ୍ରମାଣ କଣ ଲୋଡ଼ା ? ତଥାପି ସଂଶୟୀ ବନ୍ଧୁଙ୍କୁ ଗୋପବନ୍ଧୁ ପ୍ରଶ୍ନଟିଏ ପଚାରିଛନ୍ତି—

ଜୀବନ କି ଖାଲି        ନିଃଶ୍ୱାସର ବାଲି ?
ମରୁ ମରୀଚିକା ସେନେହ ପ୍ରୀତି ?
ତେବେ କି ଆଶାରେ        କହି ଏ ସଂସାରେ
ପର ଲାଗି ନର ମରୁଛି ନିତି ?

'କିଏ ତୁମ୍ଭେ ମର୍ତ୍ତ୍ୟେ ଆସିଲ କାହିଁକି ?' ଜୀବନର ଅର୍ଥ କ'ଣ ? ଗୋପବନ୍ଧୁଙ୍କ ତ୍ୟାଗପୂତ ଜୀବନହିଁ ତା'ର ଜବାବ୍ ଦିଏ ।

ଗୋପବନ୍ଧୁ ଓଡ଼ିଶାର ବ୍ରହ୍ମ ଚାହିଁଥିଲେ । ଯେ ପରର ବ୍ରହ୍ମ ଚାହେଁ, ସେ ହିଁ ପରମାତ୍ମା, ସେ ହିଁ ପ୍ରଭୁ । ମାନବିକତା ଯୋଗୁଁ ସେ ହୋଇ ପାରିଥିଲେ ଓଡ଼ିଶାର ମୁକୁଟହୀନ ସମ୍ରାଟ । ସ୍ୱ ଅଶ୍ରୁରେ ଓ ଉତ୍କଳର ଅଗଣିତ ଅଶ୍ରୁରେ ସେ ନିତ୍ୟ ଅଭିଷିକ୍ତ ହେଉଥିଲେ ।

ନିଜର ଓ ଦେଶର ଚରିତ୍ର ଶୁଦ୍ଧି ଲାଗି ଗାନ୍ଧିଜୀ ଅନଶନ କରୁଥିଲେ, ଗୋପବନ୍ଧୁ ଢାଳୁଥିଲେ ଅଶ୍ରୁ । ଦେଶରେ କିଛି ଅନାଚାର ଦେଖିଲେ ଗାନ୍ଧିଜୀ ନିଜ ଭିତରେ ଖୋଜୁଥିଲେ କେଉଁଠି କିଛି ଗଲ୍ତି ରହିଯାଇଛି ବୋଲି । ଗୋପବନ୍ଧୁ ମଧ୍ୟ ସେହି ପରିସ୍ଥିତିରେ କରୁଥିଲେ ଆତ୍ମନିରୀକ୍ଷା—ନିଜର ତ୍ୟାଗ ନିଷ୍ଠାରେ କେଉଁଠି କିଛି ଦୋଷତ୍ରୁଟି ରହିଗଲା ବୋଲି । ଅଶ୍ରୁହିଁ ତାଙ୍କର ଥିଲା ଏକ ପ୍ରାର୍ଥନା, ଏକ ନିବେଦନ --ନାରାୟଣଙ୍କ ପ୍ରତି, ନରନାରାୟଣଙ୍କ ପ୍ରତି ।

ଉଦୟଶ୍ରୀ, ମହତାବ୍ ରୋଡ୍, କଟକ-୩

---

ଜୀବନକି ଖାଲି        ନିଃଶ୍ୱାସର ବାଲି
ମରୁ-ମରୀଚିକା ସେନେହ ପ୍ରୀତି
ତେବେ କି ଆଶାରେ        କହି ଏ ସଂସାରେ
ପରଲାଗି ନର ମରୁଛି ନିତି ?
ପ୍ରେମ ପରା ସହେ        ସହି ସୁଖ ପାଏ
ପ୍ରେମ ନଜାଣଇ କେବେ ଶୋଚନା
ପ୍ରିୟଜନେ ନୁହେଁ        ପ୍ରେମିକ ବିମୁଖ
ହେଲେ ହେଉ ଯେବେ ଗୁରୁ ଗଞ୍ଜନା ।
ତାଙ୍କ ପ୍ରେମ ରାଜ୍ୟେ        ନାହିଁ ଅସୁନ୍ଦର
ଅସତ୍ୟ ଅନ୍ୟାୟ ଅଶୁଭ ବିନ୍ଦୁ
କି ମୋର ଭାବନା        ମୋ ପ୍ରାଣ ପ୍ରବାହ
ଭେଟିଅଛୁ ଆଜି ସେ ପ୍ରେମ ସିନ୍ଧୁ ।

ଗୋପବନ୍ଧୁ



# ନାଇଁ ରହେ ଆର ଗୁଡି

ଶ୍ରୀ ରାମ ଲକ୍ଷ୍ମଣ ପ୍ରସାଦ ଦାସ

ଜୀବନ୍ ମୋର୍ ଗୁଡ଼ି ଗଲେଁବ ନାଇଁ ରହେ ଆର୍ ଗୁଡ
ସବୁବେଲେଁ ମନେ ପଡ଼ୁଛେ (୧) ଫୁଟ୍କ (୨) ଡାମ୍ବିର୍ (୩) ଭୁଙ୍ଗ

(୪) ମୁଡ୍ ବନ୍ଧାନ (୫) ଗଜ କଣ୍ଆ କହେବ କାଣା ସଇ
ବୁଡାର୍ ଲାଗି କେତେବେଲେଁ ଆର୍ ନାଇଁ ମାଣ ପାରେଁ ହାଇ

ମୋତେ ସାହୁକାର୍ ଟଙ୍କା ନାଣ ତାର୍ ଘରେଁ କରେ ଧନ୍
ରଥ୍ ଦୁଗଥ ଦନେ ପାଁଚ୍ ପଏସିନ ଘିନ୍ସି ସେ ମୋର ମନ ।

ସବୁ କପାଲେଁ ମାହ୍ନାପୁରୁ ଦଅନ୍ ତାଁକର୍ ଭଣ୍ଡାର୍ ଘର୍
ଆମେ କେନ୍ତା ଲେକ୍ ଉପାସେଁ ମଣ ଯାଉ (୬) ଭର୍ ଦର୍ ।

ମୋର୍ ଲାଗିଁ କାଏଁ ଯାଇଛେ ଆସି ଅହିର ବଂଶ୍ ଦଙ୍ଗା
ଧନୀ ଜମିଦାର୍ ଶେଠ ସାହୁକାର୍ ସଭେଁ ହେବେ ସଙ୍ଗା

ଜମିନ ପାଏମି ମାଟିନ ଧାଏମି ସୁଖେଁ କର୍ମି ଗୃହ
ଗାନ୍ଧୀର୍ ଗୁଣ୍କେ ସୁମୁରସୁମୁର ସୁଖେଁ କର୍ମି ବାସ ।

ସମାଜବାଦ୍ର ବାଟୁଆ ହେମି ସେଟା ହେବା ମୋର୍ କାମ୍
ଧର୍ମି ହାତେଁ ସାରା ଦୁନଆଁର ସମାଜବାଦ୍ର ନଶାନ୍
କପାଲ୍ଟା ମୋର୍ ବଦ୍ଲି ଯିବା ମିଲ୍ବା (୭) ଜହ୍ନ ଦାମ୍
ଅଭିଧାନ୍ ଥୁଁ ଉଠିଯିବା ଗୁଡ-ଗଡର ନାମ— ।

ତାଙ୍କର ନାମ ଉଚ୍ଚାରଣକେ ମୁଇଁ କରଦେମି ଝାଲ
ଦେଖଲ ସବୁ ସକାଳ୍ ହେଲା ପୂରୁବ ଦିଗେ ଲାଲ୍ ।

ଓଡ଼ିଶାର ସେ ମଉଡ଼ମଣି ନା ଟା ଗୋପବନ୍ଧୁ
ଦୁଲୁଆ ଗୁଡ଼ ଲୁଲୁ ମୁଲୁଆର ଥିଲେ ମହାନ୍ ବନ୍ଧୁ

ଆମର୍ ଲାଗି ଢ଼ାଳି ଦେଇଛନ୍ ଆଖିର୍ ଲୁହ ଧାର
ନଦୀ ନାଲେ ମିଶି ବଙ୍ଗୋପସାଗରେ ହେଇଛେ ବାହାର ।

ଆମର ଆଖିଁର ଲୁହନ ତାଙ୍କର୍ ଧୂଇଁଛୁ ପଦମ୍‌ପାଦ୍
ତାଙ୍କର ଲାଗି ହଜେଇ ଗଲା ସବୁ ଦୁଃଖ ବିଷାଦ୍ ।

ସରକାର ଆଏଜ୍ ପୁଛି ଦେଉଁଛେ ଆମର ଆଖିର ଲୁହ
ଗୋପବନ୍ଧୁର୍ ସପନ ସତେ ସତ୍ ହେଲା କାଏଁ କହ ?

ପୋଡ଼ାବାଡ଼ି,
କୋଡ଼ବାହାଲ,
ସମ୍ବଲପୁର



୧—ଶ୍ରେଷ୍ଠ, ୨—ମାପ, ୩—ମନୁଷ୍ୟ, ୪—ମୁଣ୍ଡ, ୫—ଶ୍ରେଷ୍ଠ, ୬—ଶୀଘ, ୭—ବେଣୀ

କେତେ କେତେ ଶ୍ରେଣୀ ଭଲ ଭଲ ଲୋକ
ନ ପା'ନ୍ତି ବ'ଓଲା ପେଟପରୁ ଢୋକ ।
ଥିଲେ ଯେତୁ ମନ୍ଦ ଉତ୍କଳ ସୈନିକ
ପାଇକ ପ୍ରଧାନ ମାଗୁଛନ୍ତି ଭିକ ।
ଦେହେ ନାହିଁ ମାଂସ ଦେ'ହଲୁଚ କଣ୍ଠା
ଅନାହାରେ ଅହା ନ ଉଠଇ ଅଣ୍ଟା ।
ଅନ୍ତଃ ସା'ରୁଣ୍ଡେ ମାର ମୁଣ୍ଡ ଝାଳ
ଦୁଷ୍ଟ ମହାଜନ ଗ୍ରାସ କରୁଥିଲ ।
ପ୍ରଜା ରକ୍ତ ଶୋଷି କେତେ ଜମିଦାର
ହରନ୍ତି ସର୍ବସ୍ୱ ବଜାଇ ପାହାର ।

ପଶିଗଲେ ଗ୍ରାମେ ନ ଶୁଭେ ଶବଦ
ବେଦମନ୍ତ୍ର କିବା ଭାଗବତ ପଦ ।
ଗ୍ରାମବାସୀଗଣେ ନାହିଁ ପରେ ମେଳ
ଶିଶୁ ଖେଳେ ଦାଣ୍ଡ ନ ହୁଏ ଉଦ୍‌ବେଳ ।
ନାହିଁ କାହା ମୁଖେ ସତ୍ୟ ଧର୍ମକାନ୍ତି
ନାହିଁ ହୃଦେ ଶୌଚ ପ୍ରାଣେ ସ୍ନେହ ଶାନ୍ତି ।
ଉତ୍କଳବାସୀର ଦେଖି ଏ ଦୁର୍ଗତି
ଦାରୁଭୂତ କହେ ନୀଳାଚଳ ପତି ।
ମାଗ ବୃନ୍ଦ ଭାଇ ହେଲେ ଧର୍ମବଳ
ନବ ତେଜେ ପୁଣି ଜାଗିବ ଉତ୍କଳ ।

ଗୋପବନ୍ଧୁ

# ଓଡ଼ିଶାରେ ବନ୍ଦୋବସ୍ତ ଓ ଜମିଜମା ବ୍ୟବସ୍ଥା

ଶ୍ରୀ ଲଳିତେନ୍ଦୁ ପରିଜା

୧୯୩୬ ଖ୍ରୀଷ୍ଟାବ୍ଦ ଏପ୍ରିଲ ପହିଲା ଦିନ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କୁ ନେଇ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶରୂପେ ଗଠିତ ହେଲା । ତତ୍‌କାଳୀନ ବିହାର-ଓଡ଼ିଶା ପ୍ରଦେଶର ଓଡ଼ିଶା ଡିଭିଜନ ବା କଟକ, ପୁରୀ, ବାଲେଶ୍ୱର ଜିଲ୍ଲା ସହିତ ମାନ୍ଦ୍ରାଜ ପ୍ରଦେଶର ଗଞ୍ଜାମ, କୋରାପୁଟ ଜିଲ୍ଲା ଓ ବାଲିଗୁଡ଼ା ସବ୍‌ଡିଭିଜନ ତଥା ପୂର୍ବତନ ମଧ୍ୟ ପ୍ରଦେଶରେ ଥିବା ସମ୍ବଲପୁର ଜିଲ୍ଲା ଓ ନୂଆପଡ଼ା ସବ୍‌ଡିଭିଜନ ନେଇ ଏବଂ ଅନୁଗୁଳ ଓ କନ୍ଧମାଳ ଅଞ୍ଚଳକୁ ନେଇ ଛଅ ଗୋଟି ଜିଲ୍ଲା ଏହି ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ସ୍ୱାଧୀନତାପରେ ୧୯୪୮ ଜାନୁଆରି ପହିଲା ଦିନ ପଚିଶ ଗୋଟି ଦେଶୀୟ ରାଜ୍ୟ ଓଡ଼ିଶାରେ ମିଶିଲା । ସେହି ବର୍ଷ ଦୁଇଗୋଟି ଦେଶୀୟ ରାଜ୍ୟ ଯଥା:—ସରେଇକଲା ଓ ଖରସୁଆଁ ପୁଣି ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ବିହାରରେ ମିଶିଲା । ତତ୍‌ପର ବର୍ଷ ମୟୂରଭଞ୍ଜ ଦେଶୀୟ ରାଜ୍ୟ ଓଡ଼ିଶାରେ ମିଶିଲା । ଏହିପରି ସ୍ତରରେ ପୂର୍ବତନ ଚବିଶ ଗୋଟି ଦେଶୀୟ ରାଜ୍ୟ ଓ ଛଅଗୋଟି ଜିଲ୍ଲାକୁ ନେଇ ବର୍ତ୍ତମାନ ନୂତନ ଓଡ଼ିଶା ରାଜ୍ୟ ତେର ଗୋଟି ଜିଲ୍ଲାରେ ବିଭକ୍ତ ହୋଇ ଗଠିତ ହୋଇଅଛି । ଦେଶ ସ୍ୱାଧୀନ ହେବା ପୂର୍ବରୁ ବ୍ରିଟିଶ ସରକାର ଏବଂ ତାଙ୍କ ଅନୁଗୃହୀତ ରାଜା ଓ ଜମିଦାରମାନେ ବନ୍ଦୋବସ୍ତ ଜରିଆରେ ଖଜଣା ବୃଦ୍ଧି କରୁଥିଲେ । ତେଣୁ ବନ୍ଦୋବସ୍ତ ପ୍ରତି ପ୍ରଜାମାନଙ୍କର ବିତୃଷ୍ଣା ଭାବ ରହିଥିଲା । ବୋଝ ଉପରେ ନଳିତା ବିଡ଼ା ପରି ପ୍ରଜାଙ୍କଠାରୁ ପୁଣି ବନ୍ଦୋବସ୍ତ ଖର୍ଚ୍ଚ ମଧ୍ୟ ଆଦାୟ କରାଯାଉଥିଲା । ଖଜଣା ବୃଦ୍ଧି ସଙ୍ଗେ ସଙ୍ଗେ ବନକର, ପଥକର, ଶିକ୍ଷାକର, ଡାକ୍ତରଖାନାକର ଆଦି ବର୍ଦ୍ଧିତ ଖଜଣା ଅନୁପାତରେ ଆଦାୟ କରାଯାଉଥିଲା । କେତେକ ଅଞ୍ଚଳରେ କ୍ଷୁଦ୍ର ଓ ନାମମାତ୍ର କୃଷି ଶ୍ରେଣୀଭୁକ୍ତ ପ୍ରଜାଗଣ ବର୍ଦ୍ଧିତ ଖଜଣା ଦେଇ ନପାରି ଜମିବାଡ଼ି ଛାଡ଼ି ସୁଦୂର ରେଙ୍ଗୁନ ଓ

ଂଗ୍ରାମକୁ କାର୍ଯ୍ୟ କରିବାକୁ ବାଧ୍ୟ ହେଉଥିଲେ । ନଦୀ ବନ୍ୟାରେ ଜମି ବାଲିଚର ହୋଇ ଆବାଦ ଅଯୋଗ୍ୟ ହେଲେ ମଧ୍ୟ ପ୍ରଜାଙ୍କ ଖଜଣା କମ୍ କରାଯାଉନଥିଲା ।

ସ୍ୱାଧୀନତା ପ୍ରାପ୍ତି ପରେ ଏହି ଅବସ୍ଥାର ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟିଛି । ରାଜା, ଜମିଦାର, ଗୌନ୍ତିଆ, ସରବରାକାର, ପଧାନ, ଗଡ଼ନାୟକ, ମାଲଗୁଜାର ଇନାମଦାର ଆଦିଙ୍କର ଅତ୍ୟାଚାରରେ ପ୍ରଜାକୁଳ ଅତି ପ୍ରପୀଡ଼ିତ ହେଉନାହାନ୍ତି । ଜମିଦାରୀ ଉଚ୍ଛେଦ ଆଇନ ଅନୁସାରେ ଏସବୁ ମଧ୍ୟ ସ୍ୱତ୍ୱାଧିକାରୀ ସ୍ୱତ୍ୱ ଲୋପ ହୋଇଛି । ୧୯୩୬ ମସିହାରୁ ଓଡ଼ିଶା ପ୍ରଦେଶ ଗଠନପରେ ମଧ୍ୟ ସମ୍ବଲପୁର ଅଞ୍ଚଳରେ ମଧ୍ୟପ୍ରଦେଶ ପ୍ରଜାସ୍ୱତ୍ୱ ଆଇନ, ଗଞ୍ଜାମ ଓ କୋରାପୁଟ ଅଞ୍ଚଳରେ ମାନ୍ଦ୍ରାଜ ଜମିଜମା ଆଇନ, କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ, ଅନୁଗୁଳରେ ଓ କନ୍ଧମାଳରେ ସ୍ୱତନ୍ତ୍ର ରେଗୁଲେସନ ଚାଲି ଆସୁଥିଲା । ସେହିପରି ଓଡ଼ିଶା ସହିତ ମିଶିଥିବା ପୂର୍ବତନ ଦେଶୀୟ ରାଜ୍ୟମାନଙ୍କରେ ପୃଥକ ପୃଥକ ଜମିଜମା ଆଇନମାନ ଚାଲି ଆସୁଥିଲା । ବର୍ତ୍ତମାନ କିନ୍ତୁ ଭୂ-ସଂସ୍କାର ଆଇନ ପ୍ରଚଳନ ହେବାରୁ ତା ୧-୧୦-୧୯୬୫ଠାରୁ ପ୍ରଜାଙ୍କର ଜମି ଉପରେ ସ୍ୱତ୍ୱ ସମଗ୍ର ଓଡ଼ିଶାରେ ସମାନ କରାଯାଇଅଛି । ଭାଗଚାଷୀ, ଠିକାପ୍ରଜା ଓ ଅନ୍ୟାନ୍ୟ ଦଖଲସ୍ୱତ୍ୱଶୂନ୍ୟ ପ୍ରଜାଙ୍କର ଜମି ଉପରେ ସ୍ୱତ୍ୱ ସାବ୍ୟସ୍ତ କରାଯାଇଅଛି । ଜନସାଧାରଣଙ୍କ ସ୍ୱାର୍ଥ ସଂରକ୍ଷଣପାଇଁ ଶୃଙ୍ଖଳିତଭାବରେ ବନ୍ଦୋବସ୍ତ କାର୍ଯ୍ୟର ପରିଚାଳନା ଉଦ୍ଦେଶ୍ୟରେ ସାରା ଓଡ଼ିଶାପାଇଁ ୧୯୫୮ର ବନ୍ଦୋବସ୍ତ ଆଇନ ୧୯୬୦ ମସିହାଠାରୁ କାର୍ଯ୍ୟକାରୀ କରାଯାଇଅଛି । ଆଜିର ବନ୍ଦୋବସ୍ତ ପ୍ରଜାଙ୍କ ମନରେ ଆତଙ୍କ ସୃଷ୍ଟି କରିବା ପରିବର୍ତ୍ତେ ସେମାନଙ୍କ ପକ୍ଷେ କଲ୍ୟାଣକର ହେଉଛି । ପ୍ରତ୍ୟେକ ଗ୍ରାମର ପ୍ରତ୍ୟେକ ପ୍ରକାର ଜମି, ନଦୀ, ନାଳ, ବନ, ପର୍ବତ, ରାସ୍ତା, ମନ୍ଦିର, ଶ୍ମଶାନ, ଗୋଚର, ଘର, ବାଡ଼ି, ବଗିଚା, ପୁଷ୍କରିଣୀ, ଆଦିର ସଠିକ ନକ୍ସା ପ୍ରସ୍ତୁତ ସଙ୍ଗେ ସଙ୍ଗେ ଜମିରେ ପ୍ରକାର ମାଲିକାନା, ସ୍ୱତ୍ୱ, ଅଧିକାର, ଜମିର କ୍ଷେତ୍ରଫଳ ଏବଂ ଅବସ୍ଥିତି ଲିପିବଦ୍ଧ କରାଯାଇ ରେକର୍ଡ ପ୍ରସ୍ତୁତ କରାଯାଉଅଛି । ଜମିର ଉତ୍ପାଦିକା ଶକ୍ତି, ଜଳସେଚନର ସୁବିଧା ଓ ଅବସ୍ଥିତି ଦୃଷ୍ଟିରୁ ଚାଷଜମିକୁ ବିଭିନ୍ନ କିସମରେ ବିଭକ୍ତ କରାଯାଇ ବିଭିନ୍ନ କିସମ ଜମିପାଇଁ ପୃଥକ ହାରରେ ଖଜଣା ଧାର୍ଯ୍ୟ କରାଯାଉଅଛି । ସ୍ୱାଧୀନତାପ୍ରାପ୍ତି ପୂର୍ବରୁ ହୋଇଥିବା ବନ୍ଦୋବସ୍ତପରି, ଚଳିତ ବନ୍ଦୋବସ୍ତରେ ମନମୁଖୀ ଖଜଣା ବୃଦ୍ଧି କରାଯାଉନାହିଁ । ଏଥିପାଇଁ ନୂତନ ବନ୍ଦୋବସ୍ତ ଆଇନରେ ନିର୍ଦ୍ଦିଷ୍ଟ ନୀତି ଧାର୍ଯ୍ୟ କରାଯାଇଅଛି । ସେହି ଅନୁସାରେ ଜମିର ଉର୍ବରତା, ଜଳସେଚନ, ରାସ୍ତା ଓ ବଜାରର ସୁବିଧା, ବନ୍ୟା ଓ ଅନ୍ୟାନ୍ୟ ପ୍ରାକୃତିକ ବିପଦ, ବନ୍ୟଜନ୍ତୁଦ୍ୱାରା ଫସଲ ନଷ୍ଟର ସମ୍ଭାବନା ଆଦି ବିଷୟକୁ ବିଚାରକରି ବିଭିନ୍ନ ଗ୍ରାମକୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଉଅଛି ଏବଂ ସେଥିପାଇଁ ପୃଥକ ପୃଥକ ଖଜଣାହାର ଧାର୍ଯ୍ୟ କରାଯାଉଅଛି । ବିଭିନ୍ନ କିସମର ଜମିରେ ବହୁ ସଂଖ୍ୟକ ପରୀକ୍ଷାକରି ହାରାହାରି ଫସଲର ପରିମାଣ ନିର୍ଣ୍ଣୟ କଲାପରେ ଅତୀତ ଦଶ ବର୍ଷର ହାରାହାରି ବଜାର ଦର ଅନୁସାରେ ଜମିର ଉତ୍ପାଦିକା ଶକ୍ତି ନିରୂପଣ କରାଯାଉଅଛି । ସମସ୍ତ କୃଷି ଖର୍ଚ୍ଚ, କୃଷକର ପରିଚାଳନା ଖର୍ଚ୍ଚ, ବଜାର ବା ହାଟକୁ ଫସଲ ପରିବହନ ଖର୍ଚ୍ଚ, ଜମିର ମୂଲ୍ୟ ଉପରେ ବ୍ୟାଙ୍କ ହାରରେ ସୁଧ ଆଦି ବାଦ ଦେଇ ଯାହା ଲାଭ ହେଲା ତାହାର ପ୍ରାୟ ଏକ ଷଷ୍ଠାଂଶ ଖଜଣାରୂପେ ଧାର୍ଯ୍ୟ କରାଯାଉଅଛି । ଏହା ଛଡ଼ା ପଡ଼ୋଶୀ ଅଞ୍ଚଳରେ ଧାର୍ଯ୍ୟ ହୋଇଥିବା ଖଜଣା ସହିତ ଧାର୍ଯ୍ୟ ଖଜଣାକୁ ତୁଳନା କରାଯାଇ ଖଜଣା ହାରରେ କମବେଶୀ କରାଯାଇଥାଏ । କୌଣସି ଅଞ୍ଚଳରେ ବନ୍ଦୋବସ୍ତ ଶେଷରେ ଆଉ "ବନ୍ଦୋବସ୍ତ ଖର୍ଚ୍ଚ" ପ୍ରଜାଙ୍କଠାରୁ ଆଦାୟ କରାଯାଉନାହିଁ । "ନଅ ଗାର୍ଚ୍ଚା-ଦଅ ଖର୍ଚ୍ଚା" ବ୍ୟବସ୍ଥା ଚିରଦିନପାଇଁ ଲୋପ ପାଇଛି ।

ସ୍ୱାଧୀନତା ପ୍ରାପ୍ତି ପରେ ସମସ୍ତ ରାଜା, ଜମିଦାର ଓ ମଧ୍ୟସ୍ୱତ୍ୱାଧୀକାରୀ ଲୋପ କଲାପରେ ରାଜ୍ୟର ସମସ୍ତ କୃଷକ ଓ କୃଷି ଜମି ସରକାରଙ୍କ ଖାସ୍ ପରିଚାଳନାକୁ ଆସିଲା-ପରେ ଦେଖାଗଲା ଯେ, ଜମିଦାରୀର କାଗଜପତ୍ର ରାଜା ଜମିଦାରମାନେ ଠିକ୍ ଭାବରେ ଯଥା ସମୟରେ ସଂଶୋଧନ କରି ନଥିବାରୁ ଜମିର ପ୍ରକୃତ ବିବରଣୀ ମିଳୁନାହିଁ । ଫଳରେ ଭୂ-ସଂସ୍କାର, ଚକବନ୍ଦୀ ଜଳସେଚନ, କୃଷକଙ୍କୁ ଆବଶ୍ୟକ ଋଣଦାନ, ଉନ୍ନୟନ କାର୍ଯ୍ୟପାଇଁ ଜମିଦଖଲ ଇତ୍ୟାଦି ଲୋକହିତକର କାର୍ଯ୍ୟରେ ବିଶେଷ ବାଧା ସୃଷ୍ଟି ହେଉଛି । ଗୋଟିଏ ନୂଆ ରାସ୍ତା ବା ରେଳପଥ ନିର୍ମାଣ କଲାବେଳକୁ କେଉଁ ପ୍ରକାର ଜମି ନଷ୍ଟ ହେଉଛି ଏବଂ ଉପଯୁକ୍ତ କ୍ଷତିପୂରଣ କେଉଁ ପ୍ରଜା ପାଇବା ଉଚିତ୍, ସହଜରେ ସ୍ଥିରକରି ହେଉନାହିଁ । ତେଣୁ ସଡ଼କ, ରେଳପଥ, ବନ୍ଧ, କାରଖାନା ଆଦି ନିର୍ମାଣ କାର୍ଯ୍ୟରେ ଅଯଥା ବିଳମ୍ବ ସୃଷ୍ଟି ହେଉଛି । ରାଜ୍ୟରେ କେଉଁ ପ୍ରକାର କେତେ ଚାଷ ଜମି, ଚାଷଯୋଗ୍ୟ ଅନାବାଦୀ ଜମି, ଜଙ୍ଗଲ, ଗୋଚର, ରାସ୍ତା, କୂଅ, ପୋଖରୀ, କେନାଲ ଆଦି ଅଛି, ଏହାର ସଠିକ୍ ବିବରଣୀ ଅଭାବରେ ରାଜ୍ୟର କୃଷି ଓ ଶିଳ୍ପ ବିକାଶପାଇଁ ପୂର୍ଣ୍ଣାଙ୍ଗ ଯୋଜନା ଅସମ୍ଭବ । ରାଜ୍ୟରେ ଥିବା ୫୧,୯୦୯ ଗୋଟି ଗ୍ରାମର ସଠିକ୍ ନକ୍ସା ଓ ରେକର୍ଡ଼ ପ୍ରସ୍ତୁତ ନହେଲେ, ରାଜ୍ୟର କ୍ଷୁଦ୍ର ଚାଷୀ, ଭାଗଚାଷୀ ଓ ଭୂମିହୀନ କୃଷି ଶ୍ରମିକଙ୍କର ଆର୍ଥିକ ଉନ୍ନତିପାଇଁ ଯୋଜନା-

ବନ୍ଧ ଭାବରେ କାର୍ଯ୍ୟ କରାଯାଇ ପାରିବ ନାହିଁ । ଏଣୁ ସାରା ରାଜ୍ୟରେ ନୂତନ ବନ୍ଦୋବସ୍ତର ପ୍ରୟୋଜନୀୟତା ଉପଲବ୍ଧି କରାଗଲା । ବିଶେଷତଃ କୋରାପୁଟ ଜିଲ୍ଲା, ଗଞ୍ଜାମ ଜିଲ୍ଲାର ଏଜେନ୍ସି ଅଞ୍ଚଳ, ବୌଦ୍ଧ-କନ୍ଧମାଳ ଜିଲ୍ଲାର କନ୍ଧମାଳ ଓ ବାଲିଗୁଡ଼ା ସବ୍‌ଡିଭିଜନ୍ ଏବଂ କେନ୍ଦୁଝର ଜିଲ୍ଲାର ଭୂୟାଁପିଢ଼ ଓ ଯୁଆଙ୍ଗପିଢ଼ ଅଞ୍ଚଳ ପୂର୍ବରୁ ବନ୍ଦୋବସ୍ତ ହୋଇ ନଥିବାରୁ କୌଣସି ଗ୍ରାମର ନକ୍‌ସା ବା କାଗଜାତ୍ ନଥିଲା । ଏହି ଅଞ୍ଚଳରେ ପ୍ରଜାଙ୍କର ଜମିବାଡ଼ି ସଂକ୍ରାନ୍ତ ମାଲିମକଦ୍ଦମା ବିଚାରବେଳେ ବିଶେଷ ଅସୁବିଧା ହେଉଥିଲା । ଆଦିବାସୀବହୁଳ ଏହି ଅଞ୍ଚଳଗୁଡ଼ିକରେ ପ୍ରଜାଙ୍କୁ ଜମିର ପୂର୍ଣ୍ଣ ଅଧିକାର ଦେବାପାଇଁ ତଥା ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ ସାଧନପାଇଁ ବନ୍ଦୋବସ୍ତ ଏକାନ୍ତ ପ୍ରୟୋଜନ ବୋଲି ଉପଲବ୍ଧି କରାଗଲା । ସମଗ୍ର ଓଡ଼ିଶାରେ ଶୀଘ୍ର ବନ୍ଦୋବସ୍ତ କାର୍ଯ୍ୟ ଶେଷ କରିବାପାଇଁ ଏବଂ ଶୃଙ୍ଖଳିତ ଭାବରେ ସଠିକ୍ ନକ୍‌ସା ଓ ରେକର୍ଡ଼ ପ୍ରସ୍ତୁତପାଇଁ ପ୍ଲେନ-ପ୍ରିସ୍ଥ ସରକାର ଏକ ଯୋଜନା କଲେ । ସର୍ଭେ ଓ ବନ୍ଦୋବସ୍ତ କାର୍ଯ୍ୟର ତତ୍ତ୍ୱାବଧାରକଭାବରେ ରାଜସ୍ୱ ବୋର୍ଡ଼ ଅଧୀନରେ ବନ୍ଦୋବସ୍ତ କମିଶନର, ଭୂ-ପରିମାପ ଓ ଅଭିଲେଖ ନିର୍ଦ୍ଦେଶକ ନିଯୁକ୍ତ ହେଲେ । ଛଅଗୋଟି ଅଞ୍ଚଳରେ ଓଡ଼ିଶାର ୧୩ ଗୋଟି ଜିଲ୍ଲାକୁ ବିଭକ୍ତ କରାଯାଇ ପ୍ରତି ଅଞ୍ଚଳ ଦାୟିତ୍ୱରେ ଜଣେ ଲେଖାଏଁ ବନ୍ଦୋବସ୍ତ ଅଧିକାରୀ (Settlement Officer) ରହିଅଛନ୍ତି ଯଥା—

(୧) ସମ୍ବଲପୁର, ବଲାଙ୍ଗୀର, ସୁନ୍ଦରଗଡ଼ ଓ କଳାହାଣ୍ଡି ଜିଲ୍ଲା ।

(୨) ବାଲେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲା

(୩) ଢେଙ୍କାନାଳ ଓ କେନ୍ଦୁଝର ଜିଲ୍ଲା

(୪) କଟକ ଓ ପୁରୀ ଜିଲ୍ଲା

(୫) ଗଞ୍ଜାମ ଓ କୋରାପୁଟ ଜିଲ୍ଲା

(୬) ବୌଦ୍ଧ-କନ୍ଧମାଳ ଜିଲ୍ଲା ।

ଏହି ବନ୍ଦୋବସ୍ତ ଅଧିକାରୀମାନଙ୍କର ସଦର କାର୍ଯ୍ୟାଳୟ ଯଥାକ୍ରମେ (୧) ସମ୍ବଲପୁର, (୨) ବାରିପଦା, (୩) ଢେଙ୍କାନାଳ, (୪) କଟକ, (୫) ବ୍ରହ୍ମପୁର ଓ (୬) ଫୁଲବାଣୀରେ ଅବସ୍ଥିତ । କଳାହାଣ୍ଡି ବ୍ୟତୀତ ଅନ୍ୟ ସମସ୍ତ ଜିଲ୍ଲାରେ ଏକ ବା ଏକାଧିକ ଚାର୍ଜ ଅଫିସର ରହି ବନ୍ଦୋବସ୍ତ କାର୍ଯ୍ୟ ପରିଚାଳନା କରୁଅଛନ୍ତି । କଳାହାଣ୍ଡି ଜିଲ୍ଲାର ବନ୍ଦୋବସ୍ତ ଶେଷ ହୋଇଥିବାରୁ ବର୍ତ୍ତମାନ ସେଠାରେ କୌଣସି ବନ୍ଦୋବସ୍ତ କାର୍ଯ୍ୟାଳୟ ନାହିଁ । ପ୍ରତ୍ୟେକ ଜିଲ୍ଲାର ବନ୍ଦୋବସ୍ତ ଶିବିରମାନଙ୍କର ଦାୟିତ୍ୱରେ ଥିବା ସହକାରୀ ବନ୍ଦୋବସ୍ତ ଅଧିକାରୀ ଏବଂ ତାଙ୍କ ଅଧୀନରେ କାର୍ଯ୍ୟ କରୁଥିବା ଅମିନ, ମୁନସରିମ୍, ପେସ୍କାର, ଡ୍ରାଫ୍-ସେକଟର, ରେକର୍ଡ଼ମ୍ୟାନ ଆଦି କର୍ମଚାରୀଗଣ ଚାର୍ଜ ଅଫିସର-ମାନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କାର୍ଯ୍ୟ କରନ୍ତି । ତେଣୁ କଟକର ପ୍ରଥମ ଶ୍ରେଣୀ ମାନ୍ୟତା ଅଙ୍କନ ଓ ସୁଦକ୍ଷ ନାୟକ ବିଭାଗୀୟ କର୍ମଚାରୀମାନଙ୍କୁ ଚାର୍ଜ ଅଫିସରଭାବରେ ନିଯୁକ୍ତ କରାଯାଇଅଛି । ପ୍ରୟୋଜନ ଅନୁଯାୟୀ ଯଥାଶୀଘ୍ର ନକ୍‌ସା ଛପିବାପାଇଁ ଏବଂ ଗ୍ରାମର ସରହଦ ତଥା ଜୋଗ୍ରଭ ଜଙ୍ଗଲ ରେଖାଦିକୁ ଥିଓଡ଼ୋଲାଇଟ୍ ଯନ୍ତ୍ରଦ୍ୱାରା ସର୍ଭେ କରିବାପାଇଁ କଟକଠାରେ ସର୍ଭେ ଓ ନକ୍‌ସା ଉପନିର୍ଦ୍ଦେଶକ ଅଫିସ ୧୯୬୬ ମସିହାଠାରୁ ଖୋଲାଯାଇଅଛି । ପୂର୍ବରୁ ଏହି କାର୍ଯ୍ୟ-ପାଇଁ ଆମକୁ ବିହାର ସରକାରଙ୍କ ପାଟଣାଠାରେ ଥିବା ଏହି ଅଫିସ ଉପରେ ନିର୍ଭର କରିବାକୁ ପଡ଼ୁଥିଲା । ଅନ୍ୟ ରାଜ୍ୟର ଅଫିସ ହେତୁ ଆମ ସରକାରଙ୍କର କୌଣସି କର୍ତ୍ତୃତ୍ୱ ନଥିଲା । ଏଣୁ ଆମ ରାଜ୍ୟର କାର୍ଯ୍ୟ ବିଳମ୍ବ ହେଉଥିଲା । ଫଳ ମଧ୍ୟ ଅଧିକ ହେଉଥିଲା । ବର୍ତ୍ତମାନ ସେ ଅସୁବିଧା ଦୂର ହୋଇଅଛି । ଆମର ଏହି ନକ୍‌ସା ଛପା କାର୍ଯ୍ୟାଳୟରେ ଅତ୍ୟାଧୁନିକ ଓ ଅତିମୂଲ୍ୟବାନ ଛପା ଯନ୍ତ୍ରମାନ ଦେଖାଯାଇ ପାରେ ।

ସ୍ୱାଧୀନତାପରେ ସମଗ୍ର ଓଡ଼ିଶାର ୫୧,୯୦୯ ଗ୍ରାମ ମଧ୍ୟରୁ ଚଳିତ ବର୍ଷ ସେପ୍ଟେମ୍ବର ଶେଷସୁଦ୍ଧା ୨୫,୭୧୫ ଗୋଟି ଗ୍ରାମର ସର୍ଭେ, ରେକର୍ଡ଼ ପ୍ରସ୍ତୁତ ଓ ପଟ୍ଟା ବଣ୍ଟନ କାର୍ଯ୍ୟ ସଂପୂର୍ଣ୍ଣ ହେବ । ଅଦ୍ୟାବଧି ଆର୍ଥିକ ଅସୁବିଧା ତଥା ଅନ୍ୟ କେତେକ ଅନିବାର୍ଯ୍ୟ କାରଣବଶତଃ ବନ୍ଦୋବସ୍ତ କାର୍ଯ୍ୟର ଅଗ୍ରଗତି ବ୍ୟାହତ ହୋଇଥିଲେହେଁ ବର୍ତ୍ତମାନ ଏହି କାର୍ଯ୍ୟକୁ ତ୍ୱରାନ୍ୱିତ କରିବାକୁ ଚେଷ୍ଟା କରାଯାଉଅଛି । ବିଶେଷତଃ ପ୍ରଧାନମନ୍ତ୍ରୀଙ୍କ ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମ ପ୍ରବର୍ତ୍ତିତ ହେବାପରେ ଅଗ୍ରାଧିକାର ଭିତ୍ତିରେ ଏହି କାର୍ଯ୍ୟ ଚାଲିଛି । ରାଜ୍ୟର ଅବଶିଷ୍ଟ ୨୫,୧୬୩ ଗୋଟି ଗ୍ରାମର ବନ୍ଦୋବସ୍ତ କାର୍ଯ୍ୟ ଓ ୧,୦୨୧ ଗୋଟି ଗ୍ରାମର ବନ୍ଦୋବସ୍ତ ସହ ଚକବନ୍ଦୀ କାର୍ଯ୍ୟ ତୁରନ୍ତ ଶେଷ କରିବାର ଯୋଜନା କରା-ଯାଇଅଛି । ଆସନ୍ତା ଛଅ ବର୍ଷରେ ଅର୍ଥାତ୍ ୧୯୮୨ ମସିହା ଜୁଲାଇ ଶେଷ ବେଳକୁ ଏହି ୨୫,୧୬୩ ଗୋଟି ଗ୍ରାମର ନକ୍‌ସା ଓ ରେକର୍ଡ଼ର ଚୂଡ଼ାନ୍ତ ପ୍ରକାଶନ ତଥା ପଟ୍ଟାବଣ୍ଟନ କାର୍ଯ୍ୟ ପରିସମାପ୍ତି ପାଇଁ ମୋଟ ୧୭ କୋଟି ୭୧ ଲକ୍ଷ ୫୦ ହଜାର ଟଙ୍କାର ଏକ ଅଟକଳ କରାଯାଇଛି ଏବଂ ଏଥିପାଇଁ ପୂର୍ଣ୍ଣାଙ୍ଗ ଯୋଜନା ପ୍ରସ୍ତୁତ ହୋଇସାରିଛି । ଏଥିରୁ

୧୦ ହଜାର ଗ୍ରାମରେ ସର୍ଭେ ଓ ପ୍ରାଥମିକ ସ୍ୱତ୍ୱଲିପି କାର୍ଯ୍ୟ ସଂପୂର୍ଣ୍ଣ ହୋଇ ବନ୍ଦୋବସ୍ତର ଅନ୍ୟାନ୍ୟ ପର୍ଯ୍ୟାୟରେ କାର୍ଯ୍ୟ ଚାଲିଛି । ଏଣୁ ଅର୍ଥାଭାବ କିମ୍ବା ଅନ୍ୟ କୌଣସି ପ୍ରାକୃତିକ ଦୁର୍ବିପାକ ନ ହେଲେ ଏହି ଯୋଜନା ଅନୁସାରେ ଆସନ୍ତା ଛଅ ବର୍ଷରେ ସାରା ଓଡ଼ିଶାରେ ଚଳିତ ବନ୍ଦୋବସ୍ତ କାର୍ଯ୍ୟ ସଂପୂର୍ଣ୍ଣ ହୋଇଯିବ ।

ବନ୍ଦୋବସ୍ତ କମିଶନର, ଓଡ଼ିଶା



ଗୋପବନ୍ଧୁ ଜନ୍ମ ଶତବାର୍ଷିକୀ ପାଳନ ଉପଲକ୍ଷେ କଟକରେ ଅକ୍ଟୋବର ୯ ତାରିଖରେ ଅନୁଷ୍ଠିତ ଶୋଭାଯାତ୍ରାର ଏକ ଦୃଶ୍ୟ



ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ବାତ୍ୟାବିଧ୍ୱସ୍ତ ଅଞ୍ଚଳ ଗସ୍ତ କାଳରେ ସେପ୍ଟେମ୍ବର ୧୮ ତାରିଖ ଦିନ ଝେଗରାଇଠାରେ ଭାଷଣ ଦେଉଛନ୍ତି ।



ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଝେଣ୍ଟିଗଡ଼ରେ ଅନୁଷ୍ଠିତ ନିଖିଳ ଭାରତ ମହିଳା ସମର ଶିକ୍ଷାର୍ଥୀ ବାହିନୀ, ଶିବିରରେ ୧୯୭୬ ପାଇଁ ଶ୍ରେଷ୍ଠ କ୍ୟାଡେଟ୍ ବିବେଚିତ ହୋଇଥିବା ରମା ଦେବୀ ମହିଳା କଲେଜ ଛାତ୍ରୀ କୁମାରୀ ପ୍ରଦେଶ ନନ୍ଦିନୀ ଆଗ୍ରଫିଙ୍କୁ ସାର୍ଟିଫିକେଟ୍ ପ୍ରଦାନ କରୁଛନ୍ତି ।



# ଗୋତି ପ୍ରଥା ଉଚ୍ଛେଦର ବିଭିନ୍ନ ଦିଗ



ଶ୍ରୀ ମାଗୁଣି ଦାଶ

ଓଡ଼ିଶାର ଫୁଲବାଣୀ, କୋରାପୁଟ, କଳାହାଣ୍ଡି ଓ ଗଞ୍ଜାମ ଜିଲ୍ଲାର ମାଳଅଞ୍ଚଳରେ ଗୋଠ ପ୍ରଥା ଭଳି ଏକ ଜଘନ୍ୟ ପ୍ରଥା ବହୁକାଳରୁ ପ୍ରଚଳିତ ହୋଇଆସିଛି । ଏହାକୁ କେହି କେହି ବେଠ ମଜୁରିଆ ବା କ୍ରୀତଦାସ ପ୍ରଥା ମଧ୍ୟ କହିଥାନ୍ତି ।

ଅଭାବଗ୍ରସ୍ତ ଆଦିବାସୀ ଓ ହରିଜନ ଶ୍ରେଣୀର ଲୋକେ ନିଜର ଅଭାବ ସମୟରେ ସାହୁକାର ବା ମହାଜନଙ୍କଠାରୁ କିଛି ଟଙ୍କା କରଜ ନେଇ କରଜ ପରିଶୋଧ କରିବାକୁ ଅସମର୍ଥ ହୋଇ ନିଜର ପୁତ୍ରକନ୍ୟାଙ୍କୁ ବନ୍ଧକ ସ୍ୱରୂପ ଗୋଠ ଖଟିବା ପାଇଁ ବାଧ୍ୟ ହୋଇ ମହାଜନ ବା ସାହୁକାର ଘରେ ଛାଡ଼ି ଦେଇଥାନ୍ତି । ଏପରିକି ଝିଅର ବିବାହପାଇଁ କରାଯାଇ ଥିବା କରଜ ପରିଶୋଧ ନ ହୋଇ ପାରିବାରୁ ନିଜର ଅଲ୍ଅଳ ସାନଭଉଣୀକୁ ମହାଜନ ବା ସାହୁକାର ଘରେ ଗୋଠ ଖଟିବାକୁ ହୋଇଛି । ବାପ ଓ ମା କରିଥିବା କରଜ ପରିଶୋଧ ନକରି ମୃତ୍ୟୁ ବରଣ କରିବା ପରେ ପୁଅ ବା କନ୍ୟାକୁ ଉକ୍ତ କରଜ ପାଇଁ ସାହୁକାର ଘରେ ଗୋଠ ଖଟିବାକୁ ହୋଇଛି । ଜମିରେ ଫସଲ କରିବାପାଇଁ ଚାଷୀ କରଜକରିଥିବା ଟଙ୍କା ମରୁଡ଼ି ବା ବନ୍ୟଜନ୍ତୁଙ୍କ ଦ୍ୱାରା ଫସଲ ନଷ୍ଟ ହେବା ପରେ ସାହୁକାରକୁ କରଜ ପରିଶୋଧ ନକରି ପାରି କୃଷୀ ତା'ର ପୁଅ ବା କନ୍ୟାକୁ ବନ୍ଧକ ସ୍ୱରୂପ ଗୋଠ ଖଟିବାକୁ ମଧ୍ୟ ଛାଡ଼ି ଦେଇଥିବା କଥା ଦେଖାଯାଇଛି । ସାମାନ୍ୟ କେତୋଟି ଟଙ୍କା ବିନିମୟରେ ଗୋଠ ଶ୍ରମିକଙ୍କୁ ଜୀବନ ସାରା ଖାଉନ୍ଦ ଘରେ ଖଟିବାକୁ ହୋଇଥାଏ । ଗୋଠ ଶ୍ରମିକକୁ ଗୃହ ଓ କୃଷି କାର୍ଯ୍ୟ ଇତ୍ୟାଦିରେ ନିଯୁକ୍ତ କରାଯାଇଥାଏ । ଏଥିପାଇଁ ଖାଉନ୍ଦ ବା ମାଲିକ ଶ୍ରମିକକୁ କିଛି ମଜୁରି ବା ପାରିଶ୍ରମିକ ନ ଦେଇ କେବଳ ପେଟକୁ ଗଣ୍ଡେ ଖାଇବାକୁ ଦେଇ ହାଡଭଙ୍ଗା ପରିଶ୍ରମ କରିବା ପାଇଁ ବାଧ୍ୟ କରିଥାନ୍ତି । ମୁଖ୍ୟତଃ ଆଦିବାସୀ ଓ ହରିଜନ ଶ୍ରେଣୀର ପୁଅଝିଅମାନେ ଏହି ଜଘନ୍ୟ ପ୍ରଥାର ଶୀକାର ହୋଇଥାନ୍ତି । ଏପର୍ଯ୍ୟନ୍ତ ଫୁଲବାଣୀ, କୋରାପୁଟ, ଓ କଳାହାଣ୍ଡି ଜିଲ୍ଲାରେ ମୁକ୍ତିପାଇଥିବା ଗୋଠ ମଜୁରିଆମାନଙ୍କୁ

ମଧ୍ୟରେ ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀ ବା ଯୁବତୀମାନେ ଅଧିକାଂଶ ସ୍ଥଳରେ ଗୋତି ଖଟିବାର ଦେଖାଯାଇଛି ।

ଅତୀତର ଇଂରେଜ ଶାସକ ରାଜା, ମହାରାଜା, ଧନୀ ଓ ମହାଜନମାନଙ୍କୁ ନିଜ କବଳରେ ରଖିବାପାଇଁ ଜାଣିଶୁଣି ଗୋତି ପ୍ରଥାର ଉଚ୍ଛେଦ ପାଇଁ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନଥିଲେ । ରାଜା ନିଜ ରାଜ୍ୟର ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାରକରି ଅତ୍ୟନ୍ତ ପ୍ରଜାପୀଡ଼କ ହେଲେ ମଧ୍ୟ ବିଦେଶୀ ସରକାର ତାଙ୍କୁ ଯେଉଁପରି ପୂର୍ଣ୍ଣ ମାତ୍ରାରେ ସମର୍ଥନ ଜଣାଉଥିଲେ । ଧନୀ ଲୋକମାନେ ଶ୍ରମିକ ବା ମଜୁରିଆମାନଙ୍କୁ ଗୋତି ବା ବେଠି ମଜୁରିଆ ଭାବରେ ଖଟାଇ ସେମାନଙ୍କ ପ୍ରତି ଅମାନୁଷିକ ଅତ୍ୟାଚାର କଲେ ମଧ୍ୟ ତତ୍କାଳୀନ ସରକାର ଧନୀମାନଙ୍କୁ ଏହି କାର୍ଯ୍ୟରେ ସାହାଯ୍ୟ ସମର୍ଥନ ଜଣାଉଥିଲେ । ଗୋତି ବା ବେଠି ମଜୁରିଆ ପ୍ରଥା କେବଳ ଯେ ଓଡ଼ିଶାରେ ପ୍ରଚଳିତ ତାହା ନୁହେଁ, ବଙ୍ଗଳା, ବିହାର, ମଧ୍ୟ ପ୍ରଦେଶ, ତାମିଲନାଡୁ, କର୍ଣ୍ଣାଟକ, ଗୁଜରାଟ, ଆନ୍ଧ୍ର ଓ ରାଜସ୍ଥାନ ଇତ୍ୟାଦି ରାଜ୍ୟରେ ମଧ୍ୟ ଭୀଷଣ ଅଧିକ ପ୍ରଚଳିତ ।

ଗୋତିପ୍ରଥା ଉଚ୍ଛେଦ ପାଇଁ ଓଡ଼ିଶା ସରକାର ପ୍ରଥମେ ୧୯୪୮ ମସିହାରେ ଗୋଟିଏ ରେଗୁଲେସନ ଜାରି କରିଥିଲେ । ୧୯୭୫ ମସିହା ଅକ୍ଟୋବର ୨୪ ତାରିଖରେ ଭାରତର ରାଷ୍ଟ୍ରପତି ଏକ ଅଧ୍ୟାଦେଶନାମା ଜାରିକରି ଗୋତି ପ୍ରଥାକୁ ବେଆଇନ ଘୋଷଣା କଲେ । ଚଳିତ ବର୍ଷ ଫେବୃଆରି ୯ ତାରିଖଠାରୁ ଏହା ଏକ ଆଇନରେ ପରିଣତ କରାଯାଇଛି । ଏହି ଆଇନବଳରେ ମହାଜନ ବା ସାହୁକାରଙ୍କ ନିକଟରେ ବନ୍ଧକ ପଡ଼ିଥିବା ସମ୍ପତ୍ତି ମୁକୁଳାଇବା ପାଇଁ ଶାସନ କର୍ତ୍ତୃପକ୍ଷଙ୍କୁ ବ୍ୟାପକ କ୍ଷମତା ଦିଆଯାଇଛି ଏବଂ ବିଭିନ୍ନ ସ୍ଥାନରେ କେତେକ ଗୋତି ମଜୁରିଆଙ୍କୁ ମଧ୍ୟ ମୁକ୍ତ କରାଯାଇଛି । ଗୋତି ଖଟାଉଥିବା କେତେକ ମହାଜନ ଓ ସାହୁକାର ମଧ୍ୟ ଏହି ଅପରାଧରେ ଦଣ୍ଡିତ ହୋଇଛନ୍ତି । ତଥାପି ଗୋତି ପ୍ରଥାର ସମ୍ପୂର୍ଣ୍ଣ ବିଲୋପ ହୋଇପାରିନାହିଁ ।

ଆନ୍ଧ୍ର ସରକାର ବେଠି ଶ୍ରମିକ କେଉଁଠି ରହିଥିବା ଖବର ଯୋଗାଇ ଦେଲେ ଏକଶତ ଟଙ୍କା ପୁରସ୍କାର ଦେବାପାଇଁ ଘୋଷଣା କରିଛନ୍ତି ।

ଦେଶରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରାଯିବା ପରେ ପରେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ୨୦ ଦଫା ସମ୍ବଳିତ ଅର୍ଥନୈତିକ କାର୍ଯ୍ୟକ୍ରମ (ବର୍ତ୍ତମାନ ୨୪ ଦଫା କାର୍ଯ୍ୟକ୍ରମ, କାର୍ଯ୍ୟକାରୀ କରିବାପାଇଁ ଦେଶସାରା ଉଦ୍ୟମ ଚାଲିଛି । ଏହି ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମ ମଧ୍ୟରୁ ୪ର୍ଥ ଦଫା ହେଉଛି ଦେଶରୁ ବେଠି ପ୍ରଥାର ଉଚ୍ଛେଦ ସାଧନ । ଓଡ଼ିଶାରେ ଏହାକୁ କଡ଼ାକଡ଼ି ଭାବରେ କାର୍ଯ୍ୟକାରୀ କରିବାପାଇଁ ବ୍ୟାପକ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ଏ ପର୍ଯ୍ୟନ୍ତ ୨,୨୯୭ ଜଣ ଗୋତି ଶ୍ରମିକଙ୍କୁ ମୁକ୍ତ କରାଯାଇଛି ।



ଫୁଲବାଣୀ ଜିଲ୍ଲା ଫିରିଙ୍ଗିଆ ଥାନା ତଙ୍ଗରକଥା ଗ୍ରାମରୁ ସୁଲ କୁଅଁର ନାମକ ୧୫ ବର୍ଷ ବାଳକକୁ ଗୋତିରୁ ମୁକ୍ତ କରାଯାଇଛି, ଯେ ୧୫ ଟଙ୍କା ପାଇଁ ସାରା ଜୀବନ ଗୋତି ଖଟୁଥିଲେ ।

ଏକା କୋରାପୁଟ ଜିଲ୍ଲାରୁ ୨,୯୭୫, କଳାହାଣ୍ଡି ଜିଲ୍ଲାରୁ ୩୨ ଜଣ, ଫୁଲବାଣୀ ଜିଲ୍ଲାରୁ ୧୫ (ନିକଟରେ ଆଉ ୯ ଜଣଙ୍କୁ ମୁକ୍ତ କରାଯାଇଛି) ଓ ଗଞ୍ଜାମ ମାଳ ଅଞ୍ଚଳରୁ ୪ ଜଣ ଗୋତି ଶ୍ରମିକଙ୍କୁ ମୁକ୍ତ କରାଯାଇ ଥଇଥାନ କରାଯାଇଛି । ଫୁଲବାଣୀ ଜିଲ୍ଲାରୁ ମୁକ୍ତ କରାଯାଇ ଥିବା ଗୋତି ଶ୍ରମିକମାନଙ୍କୁ ମାଲିକ ବା ଖାଉନ୍ଦମାନେ ସରକାରୀ କର୍ତ୍ତୃପକ୍ଷଙ୍କ ସାମନାରେ ସ୍ୱତଃ ପ୍ରବୃତ୍ତ ହୋଇ ଏକ ହଜାର ଟଙ୍କାଠାରୁ ୨ ହଜାର ଟଙ୍କା ପର୍ଯ୍ୟନ୍ତ କ୍ଷତିପୂରଣ ବା ଥଇଥାନ ଖର୍ଚ୍ଚ ଦେଇଛନ୍ତି । ଗୋତି ଶ୍ରମିକଙ୍କୁ ମୁକ୍ତ ଦିଆଗଲାବେଳେ ମାଲିକ ବା ଖାଉନ୍ଦମାନେ ଗୁଡ଼ିଲ ଓ ନୂଆଲୁଗା ଦେଇ ମୁକ୍ତ କରିଥିବା ଦେଖାଯାଇଛି ।

ଫୁଲବାଣୀ ମାଲଅଞ୍ଚଳର ଆଦିବାସୀ ଓ ହରିଜନମାନଙ୍କ ମଧ୍ୟରେ ଏଥିପାଇଁ ବିଶେଷ ସନ୍ତୋଷ ପ୍ରକାଶ ପାଇଛି ଓ ପ୍ରଧାନମନ୍ତ୍ରୀଙ୍କ ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମକୁ ସେମାନେ ପୂର୍ଣ୍ଣ ପ୍ରାଣରେ ସମର୍ଥନ ଓ ସ୍ୱାଗତ ଜଣାଇଛନ୍ତି ।

କଳାହାଣ୍ଡି ଜିଲ୍ଲାରେ ମଧ୍ୟ ସରକାରୀ କର୍ତ୍ତୃପକ୍ଷ ବ୍ୟାପକ ଅନୁସନ୍ଧାନ ଚଳାଇ କେତୋଟି ଗୋତି ଶ୍ରମିକଙ୍କୁ ମୁକ୍ତ କଲାପରେ ଅନ୍ୟ ଖାତକ ବା ମାଲିକମାନେ ଆପେ ଆପେ ଗୋତି ଶ୍ରମିକମାନଙ୍କୁ ମୁକ୍ତକରି ଦେଉଛନ୍ତି । ମଧ୍ୟ ଯୁଗର ସାମନ୍ତବାଦୀ ବ୍ୟବସ୍ଥାର ଏକ ଅଂଶ ସ୍ୱରୂପ ଯୁଗ ଯୁଗ ଧରି ଚଳିଆସୁଥିବା ଏହି ଜଘନ୍ୟ ପ୍ରଥାର ଅନ୍ତେ ଆସ୍ତେ ଅବସାନ ହେବାରେ ଲାଗିଛି ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଓଡ଼ିଶାର ଗୋତି ପ୍ରଥାରୁ ମୁକ୍ତ ଶ୍ରମିକମାନଙ୍କପାଇଁ ଅଗ୍ରାଧିକାର ଭିତ୍ତିରେ ଏକ ବଳିଷ୍ଠ ପଦକ୍ଷେପ ଗ୍ରହଣ କରିଛନ୍ତି । ଏହି ଯୋଜନାଟି ଓଡ଼ିଶା ଆଦିବାସୀ ଅଞ୍ଚଳ ଉନ୍ନୟନ କମିଟି ଦ୍ୱାରା ଅନୁମୋଦିତ ହୋଇ କାର୍ଯ୍ୟକାରୀ କରାଯାଉଛି ।

ଏହି ଯୋଜନା ଫଳରେ ଗୋତି ପ୍ରଥାରୁ ମୁକ୍ତ ଶ୍ରମିକମାନଙ୍କୁ ମୁକ୍ତ ହେବା ସଙ୍ଗେ ସଙ୍ଗେ ୧୫ ଜଣେ ବୃଦ୍ଧିଳ, ସ୍ତ୍ରୀ ଶ୍ରମିକ ହୋଇଥିଲେ ଗୋଟିଏ ଶାଢ଼ି ଏବଂ ପୁରୁଷ ଶ୍ରମିକ ହୋଇଥିଲେ ଗୋଟିଏ ଧୋତି ସରକାରୀ ବ୍ୟୟରେ ଯୋଗାଇ ଦିଆଯିବ । ଏହା ଛଡ଼ା ଗୋତି ଶ୍ରମିକର ଭରଣ ପୋଷଣ ପାଇଁ ମାସିକ ୫୦ ଟଙ୍କା କରି ଛ'ମାସ ଯାଏଁ



ଫୁଲବାଣୀ ଜିଲ୍ଲା ଦାରିଙ୍ଗବାଡ଼ି ପଞ୍ଚାୟତ ସମିତି ଅନ୍ତର୍ଗତ ମହାଗୁଡ଼ା ଗ୍ରାମରୁ ଉଦ୍ଧାର କରାଯାଇଥିବା ତିନିଜଣ ଗୋତି ଶ୍ରମିକ

ଆର୍ଥିକ ସାହାଯ୍ୟ ଦିଆଯିବ । ଗୋତିମୁକ୍ତ ଶ୍ରମିକକୁ ବୃତ୍ତି ପାଇଁ ୨ ଏକର ଜମି ଓ ଘର ପାଇଁ ଭିତ୍ତି ଯୋଗାଇ ଦିଆଯିବ । ଜମିର ବୃତ୍ତି ଅବାଦ ପାଇଁ ସାହାଯ୍ୟ ସୂତ୍ରରେ ୩୦୦ ଟଙ୍କା ଲେଖାଏଁ ଦିଆଯିବ । ଶ୍ରମିକମାନେ ଯେପରି ସ୍ୱାବଲମ୍ବୀ ଓ ସ୍ୱଚ୍ଛନ୍ଦ ଜୀବନଯାପନ କରିପାରିବେ ସେଥିପାଇଁ ଶ୍ରମିକମାନଙ୍କୁ ବିହନ ଓ ସାର ଇତ୍ୟାଦି କିଣିବାପାଇଁ ଆର୍ଥିକ ସାହାଯ୍ୟ ଦିଆଯିବ । ଏହାଛଡ଼ା ଅତିରିକ୍ତ ଆୟପାଇଁ ପ୍ରତ୍ୟେକ ଶ୍ରମିକଙ୍କୁ ଗୁଣ୍ଡେ ଗାଡ଼ି କରି ଛେଳି ପାଳିବାପାଇଁ ଯୋଗାଇ ଦିଆଯିବ ।

ଅବିବାହିତା ସ୍ତ୍ରୀ ଶ୍ରମିକମାନଙ୍କୁ ଉପରୋକ୍ତ ସମସ୍ତ ସୁବିଧା ସହ ବିବାହ ଖର୍ଚ୍ଚ ପାଇଁ ୫୦୦ ଟଙ୍କା ଆର୍ଥିକ ସାହାଯ୍ୟ ଦିଆଯିବ । ଗୋତିପ୍ରଥାରୁ ମୁକ୍ତ ସ୍ତ୍ରୀ ଲୋକର ସ୍ୱାମୀ ଭୂମିହୀନ ହୋଇଥିଲେ ଜଣେ ମୁକ୍ତ ପୁରୁଷ ଶ୍ରମିକ ପାଇଁ ଯେଉଁସୁବିଧା ସୁଯୋଗ ଯୋଗାଇ ଦିଆଯିବାର କଥା ତାଙ୍କୁ ମଧ୍ୟ ସେହି ସୁବିଧାସୁଯୋଗ ଦିଆଯିବ ।

ଗୋତିମୁକ୍ତ ଶ୍ରମିକମାନଙ୍କୁ P. W. D., R.E.O. ଓ ବ୍ଲକ ଜରିଆରେ ହେଉଥିବା ରାସ୍ତା, ବନ୍ଧ ଇତ୍ୟାଦି କାର୍ଯ୍ୟରେ ଦୈନିକ ମଜୁରିଆ ଭାବରେ ନିଯୁକ୍ତ ଦିଆଯିବ ।

ଗୋତି ପ୍ରଥାର ଅବସାନ ପାଇଁ ଅଭାବଗ୍ରସ୍ତ ଲୋକମାନଙ୍କୁ ଆବଶ୍ୟକତା ସମୟରେ ସମବାୟ ସମିତି ବା ବ୍ୟାଙ୍କ ଇତ୍ୟାଦି ବିଭିନ୍ନ ଲୋକହିତକର ସଂସ୍ଥାମାନଙ୍କରୁ ଋଣ ଯୋଗାଇଦେବା ଉଚିତ ହେବ । ଜମିବାଡ଼ି ନ ଥିବା ଶ୍ରମିକମାନଙ୍କୁ ବ୍ୟାଙ୍କରୁ ଋଣ ମିଳିବା କଷ୍ଟକର । ଏପରି ସ୍ଥଳେ ଅନ୍ୟ କୌଣସି ସରକାରୀ ବା ସମାଜସେବୀ ସଂସ୍ଥା ସେମାନଙ୍କର ଅଭାବ ବା ଆବଶ୍ୟକ ସମୟରେ ଋଣ ଦେବାର ବ୍ୟବସ୍ଥା କଲେ ଗୋତି ପ୍ରଥାର ଅଚିରେ ଉଚ୍ଛେଦ ସାଧନ ହୋଇ ପାରିବ ।

(ଆକାଶବାଣୀ ସୌଜନ୍ୟରୁ)

ଜିଲ୍ଲା ଲୋକ ସମ୍ପର୍କ ଅଧିକାରୀ
ଫୁଲବାଣୀ



ଉତ୍କଳ ଜନନେ ହଅ ନବବଳ — ଉତ୍କଳ ପାଦପେ ରସମୟ ଫଳ ।
ଉତ୍କଳ-ଗଣତେ ମଧୁର ଜୀବନ — ଉତ୍କଳ କାନନେ ସ୍ୱର୍ଗୀୟ ସୁମନ ।
ଉତ୍କଳ ଆକାଶେ ନବ ଯଶରବି — ଉତ୍କଳ ପ୍ରକୃତି ଧରୁ ନବ ଛବି ।

× × ×

ପୂର୍ବ ପୂରୁଷର ପବିତ୍ର ଶ୍ମଶାନ — ଦେଶର ଜାତିର ଗଉରବ ଗାନ ।
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ — ଉଦ୍ଧରିବାପାଇଁ କଲେ ତନୁକ୍ଷୟ ।
ମାନବ ଜୀବନ ହୁଅଇ ସଫଳ — ଏ ମହାଦୀକ୍ଷା କି ବୁଝିବ ଉତ୍କଳ ?

× × ×

ପ୍ରେମ ଭାବେ ଯାର ଅନ୍ତର ପୂରିତ — ସର୍ବ ପ୍ରାଣୀ ହୃଦ ତା ହୃଦେ ଅଙ୍କିତ ।
ସର୍ବ ଅନୁଭୂତ ସର୍ବଭୂତେ ତାର — ତା ଆଖିରେ ବିଶ୍ୱ ଏକ ପରିବାର ।
ସେହି ଜନେ ବିଶ୍ୱ, ବିଶ୍ୱ ମଧ୍ୟେ ସେହି — ଅନ୍ୟ ହୋଇ ତାର ନାହିଁ ଆଉ କେହି ।

× × ×

ହିନ୍ଦୁ ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟିଆନ — ଶିଖ ଜୈନ ଯେତେ ଭାରତ ସନ୍ତାନ ।
ଯେତେ ଧର୍ମ, ଯେତେ ବର୍ଣ୍ଣ ଜାତିକୁଳ — ଭାରତ ଜନନୀ ସମ୍ପ୍ରକ୍ତ ମୂଳ ।
ଏକ ଆଶା ଏକ ଲକ୍ଷ୍ୟ ଏକ ଧ୍ୟାନ — ଏକଇ ଅନୁଭୂତି, ଏକଇ ଶ୍ମଶାନ ।
ଏକ କର୍ମ ଖେଳ ଏକ ମାତୃପଦେ — କରି ଏକ ପ୍ରାଣ ସଂପଦ ବିପଦେ ।
ଏକତା ମଂତ୍ରରେ ରଖ ସଦାମତି — ହେବ ଏହିଭାବେ ସ୍ୱରାଜ୍ୟ ପ୍ରାପତି ।

× × ×

—ଗୋପବନ୍ଧୁ

# ଶ୍ରମିକ କଲ୍ୟାଣ ଦିଗରେ ଆମର ଦୃଢ଼ ପଦକ୍ଷେପ

ଶିଳ୍ପ କ୍ଷେତ୍ରରେ ସୁସ୍ଥ ସମ୍ପର୍କ ପ୍ରତିଷ୍ଠା କରି ଏକ ପକ୍ଷରେ ଶ୍ରମିକମାନଙ୍କର ସ୍ୱାର୍ଥ ସୁରକ୍ଷା ଏବଂ ଅନ୍ୟ ପକ୍ଷରେ ଉତ୍ପାଦନ ବୃଦ୍ଧି ଏକ ବିକାଶୋନ୍ମୁଖୀ ରାଜ୍ୟ ପକ୍ଷରେ ଅତି ଗୁରୁତ୍ୱପୂର୍ଣ୍ଣ । ଉକ୍ତ ଦାୟିତ୍ୱ ତୁଲାଇବା ଦିଗରେ ରାଜ୍ୟ ସରକାରଙ୍କ ପକ୍ଷରୁ ନିରବଚ୍ଛିନ୍ନ ଉଦ୍ୟମ ହୋଇ ଆସିଛି । ବିଶେଷକରି, ଦେଶରେ ୧୯୭୫ ଜୁଲାଇ ପହିଲାଠାରୁ ନୂତନ ଅର୍ଥନୈତିକ କାର୍ଯ୍ୟକ୍ରମ ଆରମ୍ଭ ହେବା ଦିନଠାରୁ ରାଜ୍ୟ ଶ୍ରମ ନିର୍ଦ୍ଦେଶାଳୟ ବିଭିନ୍ନ ଶ୍ରମ ଆଇନ କାର୍ଯ୍ୟକାରୀ କରି ଶ୍ରମିକମାନଙ୍କ କଲ୍ୟାଣ ଦିଗରେ ଦୃଢ଼ ପଦକ୍ଷେପମାନ ନେଇଛନ୍ତି ।

## ଗ୍ରାମ୍ୟ ଶ୍ରମିକଙ୍କ ସ୍ୱାର୍ଥ ସୁରକ୍ଷା

୧୯୭୧ ମସିହା ଜନଗଣନା ଅନୁସାରେ ଆମ ରାଜ୍ୟର କୃଷି ଶ୍ରମିକଙ୍କ ସଂଖ୍ୟା ପ୍ରାୟ ୧୯,୩୭,୫୭୪ । ଏମାନେ ଗାଁ ଗହଳରେ ମୁଖ୍ୟତଃ କୃଷି କ୍ଷେତ୍ରରେ କାର୍ଯ୍ୟ କରନ୍ତି । ଏମାନଙ୍କ ମଧ୍ୟରେ ସଂଗଠନ ମନୋବୃତ୍ତି ତଥା ନେତୃତ୍ୱର ଅଭାବ ରହିଥିବାରୁ ଏମାନଙ୍କୁ ନାନାଭାବରେ ଶୋଷଣ କରାଯାଉଥିଲା । ବିଶେଷକରି, ସର୍ବନିମ୍ନ ମଜୁରି ଦିଆଯିବା କ୍ଷେତ୍ରରେ ସେମାନଙ୍କ ପ୍ରତି ଗୁରୁତର ଅବହେଳା ପ୍ରଦର୍ଶନ କରାଯାଉଥିଲା । ଫଳରେ ସେମାନେ ନାନା ଦୁଃଖ କଷ୍ଟ ମଧ୍ୟରେ କାଳଯାପନ କରୁଥିଲେ । ସେମାନଙ୍କର ଦୈନନ୍ଦିନ ଜୀବନର ସର୍ବନିମ୍ନ ଆବଶ୍ୟକତାଗୁଡ଼ିକୁ ଆଖି ଆଗରେ ରଖି ସର୍ବନିମ୍ନ ମଜୁରି ୩ ଟଙ୍କାରୁ ୪ ଟଙ୍କାକୁ ବୃଦ୍ଧି କରାଯାଇଛି ଏବଂ ତାହା ଉପଯୁକ୍ତ ଭାବେ କାର୍ଯ୍ୟକାରୀ ହେବ, ସେଥି ନିମନ୍ତେ ବ୍ୟାପକ ବ୍ୟବସ୍ଥା କରାଯାଇଛି । ରାଜସ୍ୱ ବିଭାଗର ତହସିଲଦାର, ଅତିରିକ୍ତ ତହସିଲଦାର, ରାଜସ୍ୱ ଅଧୀକ୍ଷକ ଓ ରାଜସ୍ୱ ନିରୀକ୍ଷକ ଏବଂ ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗର ଜିଲ୍ଲାମଙ୍ଗଳ ଅଧିକାରୀ ଓ ସହକାରୀ ଜିଲ୍ଲା ମଙ୍ଗଳ ଅଧିକାରୀମାନଙ୍କୁ ଏହି ବିଷୟରେ ତଦାରଖ କରିବା ନିମନ୍ତେ ସର୍ବନିମ୍ନ ମଜୁରି ଆଇନ ଅନୁସାରେ

ପରିଦର୍ଶକରୂପେ ନିଯୁକ୍ତ ହୋଇଯାଇଛନ୍ତି । ଏହା ବ୍ୟତୀତ, ରାଜ୍ୟ ଶ୍ରମ ନିର୍ଦ୍ଦେଶାଳୟରେ ଗ୍ରାମ୍ୟ ଶ୍ରମିକଙ୍କ ବିଭିନ୍ନ ଅଭାବ ଅସୁବିଧା ବୁଝିବା ନିମନ୍ତେ ଗୋଟିଏ ଗ୍ରାମୀଣ ଶ୍ରମ ବିଭାଗ (Rural Labour Cell) ଖୋଲାଯାଇଛି । ଏହି ଯୋଜନା ଅନୁସାରେ ଆମ ରାଜ୍ୟର ବିଭିନ୍ନ ଜିଲ୍ଲାରେ ୧୪ ଜଣ ସହକାରୀ ଶ୍ରମ ଅଧିକାରୀଙ୍କୁ ଅବସ୍ଥାପିତ କରାଯାଇଛି । ସେମାନେ ଗାଁ ଗାଁ ବୁଲି ଗ୍ରାମ୍ୟ ଶ୍ରମିକଙ୍କ ବିଭିନ୍ନ ଅସୁବିଧା ସମ୍ପର୍କରେ ତଦାରଖ କରୁଛନ୍ତି ।

ପୁନଶ୍ଚ ଗ୍ରାମ୍ୟ ଶ୍ରମିକଙ୍କ ମଧ୍ୟରେ ନେତୃତ୍ୱର ବିକାଶପାଇଁ ଗ୍ରାମ୍ୟ ଶ୍ରମ ସଂଗଠକମାନଙ୍କ ନିମନ୍ତେ ଏକ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ପୁରୀ ଜିଲ୍ଲାର ଚାପଙ୍ଗଠାରେ ୧୯୭୭ ମସିହା ଫେବୃଆରୀ ୨୨ଠାରୁ ୨୭ ତାରିଖ ମଧ୍ୟରେ ନୂଆଦିଲ୍ଲୀସ୍ଥିତ ଜାତୀୟ ଶ୍ରମ ପ୍ରତିଷ୍ଠାନ ଆନୁକୂଲ୍ୟରେ ଆୟୋଜିତ ହୋଇଥିଲା । ସେଥିରେ ରାଜ୍ୟର ବିଭିନ୍ନ ଜିଲ୍ଲାରୁ ୪୯ ଜଣ ଗ୍ରାମ୍ୟ ଶ୍ରମ ସଂଗଠକ ଯୋଗ ଦେଇଥିଲେ । ଏକ ସପ୍ତାହ ବ୍ୟାପୀ ଏହି ତାଲିମ ଶିବିରରେ ଜାତୀୟ ଶ୍ରମ ପ୍ରତିଷ୍ଠାନର ଅଧ୍ୟାପକଗଣ ଓ ରାଜ୍ୟ ସରକାରଙ୍କ ପଦସ୍ଥ ଅଧିକାରୀମାନେ ଗ୍ରାମ୍ୟ ଶ୍ରମ ସଂଗଠକମାନଙ୍କୁ ତାଲିମ ଦେଇଥିଲେ । ଏଭଳି ଏକ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଆୟୋଜିତ ହେବା ଓଡ଼ିଶାରେ ସର୍ବପ୍ରଥମ ।

## ଶିଳ୍ପ କ୍ଷେତ୍ରରେ ଶାନ୍ତି ପ୍ରତିଷ୍ଠା

ଶ୍ରମିକ ଓ ମାଲିକ ମଧ୍ୟରେ ସୁସମ୍ପର୍କ ରକ୍ଷାକରି ଶିଳ୍ପ କ୍ଷେତ୍ରରେ ଶାନ୍ତି ପ୍ରତିଷ୍ଠା କରିବା ଦିଗରେ ରାଜ୍ୟ ଶ୍ରମ ନିର୍ଦ୍ଦେଶାଳୟ ସର୍ବଦା ତତ୍ପରତା ଦେଖାଇ ଆସିଛି । ଦେଶରେ ଜରୁରୀ ଅବସ୍ଥା ଜାରି ହେବାବେଳକୁ ଝାରସୁଗୁଡ଼ାସ୍ଥିତ ଶ୍ରୀଧର ଟେକ୍‌ସଟାଇଲ୍ ମିଲ୍, ଭୁବନେଶ୍ୱରସ୍ଥିତ ଓଡ଼ିଶା ଟେକ୍‌ସଟ ବୁକ୍ ପ୍ରେସ ଏବଂ ଗୋପାଳପୁରସ୍ଥିତ ପାମବିଚ୍ ହୋଟେଲରେ ଶ୍ରମିକ ଧର୍ମଘଟ ଲାଗି ରହିଥିଲା । ଏହା ବ୍ୟତୀତ ବିଭିନ୍ନ କଳକାରଖାନାରେ ବିଶେଷକରି ଓରିଏଣ୍ଟ ପେପର ମିଲ୍, ବ୍ରଜରାଜନଗର, ଆଲୁମିନିୟମ୍ ଇଣ୍ଡଷ୍ଟ୍ରିକ୍, ହୀରାକୁଦ ଓ ଚିଟାଗଡ଼ ପେପର ମିଲ୍, ଚୌଦ୍ୱାରରେ ଶ୍ରମିକ ଅଶାନ୍ତି ମଧ୍ୟ ଚାଲିଥିଲା । ରାଜ୍ୟ ଶ୍ରମ ନିର୍ଦ୍ଦେଶାଳୟର ପଦାଧିକାରୀମାନେ ଏଗୁଡ଼ିକର ଆଶୁ ସମାଧାନ ନିମନ୍ତେ ବ୍ୟାପକ ଉଦ୍ୟମ କରିଥିଲେ ଏବଂ ଏହାଫଳରେ ଉପରୋକ୍ତ ଶିଳ୍ପାନୁଷ୍ଠାନଗୁଡ଼ିକରେ ଦୀର୍ଘମିଆଦୀ ସୂତ୍ରରେ ଚୁକ୍ତିନାମାମାନ ସ୍ୱାକ୍ଷରିତ ହୋଇ ଶାନ୍ତି ପ୍ରତିଷ୍ଠା ସମ୍ଭବ ହୋଇପାରିଥିଲା । ଏକ ସମୀକ୍ଷାରୁ ଜଣାଯାଇଛି ଯେ ଆମ ରାଜ୍ୟରେ ୧୯୭୪ ମସିହାରେ ୭୮ଟି ଧର୍ମଘଟ ଏବଂ ତାଲାବନ୍ଦ ହୋଇଥିବାସ୍ଥଳେ ୧୯୭୫ ମସିହାରେ ୩୭ଟି ଧର୍ମଘଟ ଏବଂ ତାଲାବନ୍ଦ ହୋଇଥିଲା । ବିଶେଷକରି ୧୯୭୫ ଜାନୁଆରୀ ମାସରୁ ଜୁନ୍ ମାସ ଶେଷସୁଦ୍ଧା ରାଜ୍ୟରେ ୩୧ଟି ଧର୍ମଘଟ ଏବଂ ୨ଟି ତାଲାବନ୍ଦ ହୋଇ ୨,୮୮,୫୮୨ କାର୍ଯ୍ୟଦିନ କ୍ଷତି ହୋଇଥିବାସ୍ଥଳେ ଜୁଲାଇ ମାସଠାରୁ ଡିସେମ୍ବର ଶେଷସୁଦ୍ଧା ମାତ୍ର ୩ଟି ଧର୍ମଘଟ ହୋଇ ୮,୪୭୯ କାର୍ଯ୍ୟଦିନ କ୍ଷତି ହୋଇଥିଲା ।

ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଶିଳ୍ପ ତଥା ଖଣି ଶ୍ରମିକଙ୍କ ମଧ୍ୟରେ ନୂତନ ଚେତନା ଜାଗ୍ରତ କରାଇବା ଅଭିପ୍ରାୟରେ ଗତ ମାର୍ଚ୍ଚ ମାସ ଶେଷ ସପ୍ତାହରେ ଜାତୀୟ ଶ୍ରମ ପ୍ରତିଷ୍ଠାନ ଓ କେନ୍ଦ୍ର ତଥା ରାଜ୍ୟ ସରକାରଙ୍କ ଶ୍ରମ ବିଭାଗ ତରଫରୁ ତାଳଚେରଠାରେ ଖଣି ଏବଂ ଶିଳ୍ପ ଶ୍ରମିକ ସଂଗଠକମାନଙ୍କର ଏକ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଆୟୋଜିତ ହୋଇଥିଲା । ଏଥିରେ ରାଜ୍ୟର ବିଭିନ୍ନ ଜିଲ୍ଲାରୁ ୧୦୦ ଜଣ ଶ୍ରମ ସଂଗଠକ ଯୋଗ ଦେଇଥିଲେ । ଏହି ତାଲିମ ଶିବିରରେ ଜାତୀୟ ଶ୍ରମ ପ୍ରତିଷ୍ଠାନର ଅଧ୍ୟାପକ, କେନ୍ଦ୍ର ତଥା ରାଜ୍ୟ ସରକାରଙ୍କର ବିଭିନ୍ନ ପଦାଧିକାରୀମାନେ ପ୍ରଚଳିତ ଶ୍ରମ ଆଇନ ତଥା ସେଗୁଡ଼ିକର କାର୍ଯ୍ୟକାରିତା ସମ୍ପର୍କରେ ଆଲୋକପାତ କରିଥିଲେ । ଓଡ଼ିଶାରେ ଏଭଳି ଏକ ତାଲିମ କାର୍ଯ୍ୟକ୍ରମର ପ୍ରଭାବ ଶିଳ୍ପ ଶ୍ରମିକମାନଙ୍କ ଉପରେ ବିଶେଷଭାବେ ପଡ଼ିଥିଲା ।

## ଶ୍ରମିକମାନଙ୍କର ମଜୁରୀ ବୃଦ୍ଧି

୧୯୪୮ ମସିହା ସର୍ବନିମ୍ନ ମଜୁରୀ ଆଇନ ଅନୁସାରେ ତଫସିଲଭୁକ୍ତ ଶିଳ୍ପ ସଂସ୍ଥାରେ ନିଯୋଜିତ ଶ୍ରମିକମାନଙ୍କ ମଜୁରୀ ନିର୍ଦ୍ଧାରଣ ଏବଂ ପରିବର୍ତ୍ତନ ନିମନ୍ତେ ରାଜ୍ୟ ସରକାର କ୍ଷମତାପ୍ରାପ୍ତ ହୋଇଛନ୍ତି । ବର୍ତ୍ତମାନସୁଦ୍ଧା ଯେଉଁସବୁ ଉଦ୍ୟୋଗ ପ୍ରତି ସର୍ବନିମ୍ନ ମଜୁରୀ ପ୍ରୟୋଗ କରାଯାଇଛି, ସେଗୁଡ଼ିକ ହେଲା—କେନ୍ଦୁପତ୍ର ସଂଗ୍ରହ, ଲୁଣ ପ୍ରସ୍ତୁତ, ବେସରକାରୀ ସଡ଼କ ପରିବହନ, ସରକାରୀ ମୋଟର ପରିବହନ, ରାସ୍ତା ଏବଂ କୋଠାବାଡ଼ି ନିର୍ମାଣ ଓ ମରାମତି, ପଥର ଭଙ୍ଗା, ଗୁଣ୍ଡଲ, ଡାଲି ଏବଂ ଅଟାକଳ, ମୁଦ୍ରଣ ଶିଳ୍ପ, ହୋଟେଲ, ଦୋକାନ ଓ ବାଣିଜ୍ୟ ପ୍ରତିଷ୍ଠାନ, ଚଳଚ୍ଚିତ୍ର ଶିଳ୍ପ, ବାଉଁଶ ଆମଦାନୀ, କାଠ ବ୍ୟବସାୟ (କାଠ କାଟିବା ଏବଂ କାଠ କରତିବା ସମେତ), ମଦଭାଟି, ଧାତବ ଶିଳ୍ପ (ଘରୋଇ ଏବଂ ଗ୍ରାମ୍ୟ ସଂସ୍ଥା ବ୍ୟତୀତ), ତମାଖୁ ଉତ୍ପାଦନ (ବିଡ଼ି ଓ ଗୁଡ଼ାଖୁ ପ୍ରସ୍ତୁତ ସମେତ), ପୌର ପରିଷଦ, କୃଷି, ଇଟା ଏବଂ ଖପରଲି ପ୍ରସ୍ତୁତ, କରତକଳ, ହସ୍ତତନ୍ତ ଓ ରେଶମ ଶିଳ୍ପ, କାଠ ଶିଳ୍ପ (କାଠ କାଟିବା ଏବଂ କାଠ କରତିବା ବ୍ୟତୀତ), ତେଲ କଳ, ନଦୀ ବନ୍ଧ, ବାଡ଼ ନିର୍ମାଣ ଏବଂ ରକ୍ଷଣାବେକ୍ଷଣ, ରିଫ୍ରାକ୍‌ଟୋରିଜ, ମୃତ୍ତିକା ଶିଳ୍ପ, ରସାୟନ

ଶିଳ୍ପ ଓ ୫୦ ଜଣରୁ କମ୍ ଶ୍ରମିକ କାମ କରୁଥିବା ଇଞ୍ଜିନିୟରିଂ ସଂସ୍ଥା ।

ଇତି ମଧ୍ୟରେ ରାଜ୍ୟ ସର୍ବନିମ୍ନ ମଜୁରି ଉପଦେଷ୍ଟା ପରିଷଦର ବୈଠକ ବସି ନିମ୍ନଲିଖିତ ଶିଳ୍ପ ସଂସ୍ଥାରେ ନିୟୋଜିତ ଶ୍ରମିକମାନଙ୍କ ମଜୁରି ନିର୍ଦ୍ଧାରଣ ଏବଂ ପ୍ରବର୍ତ୍ତିତ କରିଛନ୍ତି । ସେଗୁଡ଼ିକ ହେଲ :—କେନ୍ଦୁପତ୍ର ସଂଗ୍ରହ, ଲୁଣ ପ୍ରସ୍ତୁତ, ବେସରକାରି ସଡ଼କ ପରିବହନ, ସରକାରୀ ମୋଟର ପରିବହନ, ରାସ୍ତା ଏବଂ କୋଠାବାଡ଼ି ନିର୍ମାଣ ଓ ମରାମତି, ପଥରଭଙ୍ଗା, ଗୁହାଳ, ଡାଲ୍ ଏବଂ ଅଟାକଳ, ମୁଦ୍ରଣ ଶିଳ୍ପ, ହୋଟେଲ, ଦୋକାନ ଓ ବାଣିଜ୍ୟ ପ୍ରତିଷ୍ଠାନ, ଚଳଚ୍ଚିତ୍ର ଶିଳ୍ପ, ବାଉଁଶ ଆମଦାନୀ, କାଠ ବ୍ୟବସାୟ (କାଠ କାଟିବା ଏବଂ କରତିବା ସମେତ) ମଦଭାଟି, ତମାଖୁ ଉତ୍ପାଦନ (ବିଡ଼ି ଓ ଗୁଡ଼ାଖୁ ପ୍ରସ୍ତୁତ ସମେତ) ପୌର ପରିଷଦ ଏବଂ କୃଷି । ଏହା ବ୍ୟତୀତ ଇଟା ଏବଂ ଖପରଲ୍ ପ୍ରସ୍ତୁତ, ହସ୍ତତନ୍ତ ଓ ରେଶମ ଶିଳ୍ପ, କାଠ ଶିଳ୍ପ (କାଠ କରତିବା ଏବଂ କାଠ କାଟିବା ବ୍ୟତୀତ) ନଦୀବନ୍ଧ ବାନ୍ଧ ନିର୍ମାଣ ଓ ରକ୍ଷଣାବେକ୍ଷଣ ସଂସ୍ଥାରେ ସର୍ବନିମ୍ନ ମଜୁରି ନିର୍ଦ୍ଧାରଣ କରାଯାଇ ପ୍ରାରମ୍ଭିକ ବିଜ୍ଞପ୍ତି ପ୍ରକାଶ କରାଯାଇଛି ।

ସର୍ବନିମ୍ନ ମଜୁରି ଆଇନକୁ ଯଥାଯଥଭାବେ କାର୍ଯ୍ୟକାରୀ କରିବା ନିମନ୍ତେ ଜରୁରୀ ପରିସ୍ଥିତି ସୃଷ୍ଟି ହେବା ପରଠାରୁ ସ୍ୱତନ୍ତ୍ର ପଦକ୍ଷେପମାନ ନିଆଯାଇଛି । ତଦନୁଯାୟୀ ରାଜ୍ୟ ଶ୍ରମ ନିର୍ଦ୍ଦେଶାଳୟର ପରିଦର୍ଶକମାନେ ୧୯୭୫ ଜୁଲାଇ ୧ ତାରିଖରୁ ୧୯୭୬ ଜୁନ୍ ଶେଷସୁଦ୍ଧା ୨,୬୫୧ଟି ଘଟଣା ପରିଦର୍ଶନ କରିଛନ୍ତି ଏବଂ ଆଇନ ଖିଲାପ କରିଥିବା ଅଭିଯୋଗରେ ବିଭିନ୍ନ ମାଲିକଙ୍କ ବିରୁଦ୍ଧରେ ୧,୭୦୮ଟି ମକଦ୍ଦମା ଦାଏର କରାଯାଇଛି । ଏହା ବ୍ୟତୀତ ମାଲିକମାନଙ୍କଠାରୁ କମ୍ ମଜୁରି ଦେୟ ବାବଦରେ ଟ ୨,୧୧,୬୦୯.୬୧ ପଇସା ଅଦାୟ କରାଯାଇ ସଂପୃକ୍ତ ଶ୍ରମିକମାନଙ୍କୁ ଦିଆଯାଇଛି ।

## ଦାଦନ ଶ୍ରମିକ ନିୟନ୍ତ୍ରଣ

ଓଡ଼ିଶାର ଶ୍ରମିକମାନଙ୍କ ମାଟିଖୋଳା କାମରେ ସୁନାମ ଥିବାରୁ ଠିକାଦାର ତଥା କୁଲି ସର୍ଦ୍ଦାରମାନେ ସେମାନଙ୍କୁ ରାଜ୍ୟ ବାହାରେ ବିଭିନ୍ନ କଣ୍ଟ୍ରାକ୍ଟର କିମ୍ବା କମ୍ପାନୀ ଅଧୀନରେ ମାଟିକାମ ଏବଂ ଅନ୍ୟାନ୍ୟ କାମ କରିବା ପାଇଁ ନେଇ ଯାଆନ୍ତି । ଲୋକ ସଂଗ୍ରହ ସମୟରେ ଠିକାଦାର ତଥା ସର୍ଦ୍ଦାରମାନେ ଶ୍ରମିକମାନଙ୍କୁ ନାନା ପ୍ରଲୋଭନ ଦେଖାଇ ଗୋଟିଏ ତମସୁକ ଲେଖାଇ ନିଅନ୍ତି । ରାଜ୍ୟ ବାହାରେ ସେହି ଶ୍ରମିକମାନଙ୍କୁ ଉଚିତ ମଜୁରି ଦେବା କାର୍ଯ୍ୟରେ ମୃତାହତ ହେଲେ ସେମାନଙ୍କୁ ଉପଯୁକ୍ତ କ୍ଷତିପୂରଣ ଦେବା, କାମ ସରିଗଲେ ରାସ୍ତା ଖର୍ଚ୍ଚ ଦେଇ ଶ୍ରମିକମାନଙ୍କୁ ସେମାନଙ୍କ ନିଜ ଘରକୁ ପଠାଇବା ଦିଗରେ ଠିକାଦାରମାନେ ଉଦାସୀନ ରହୁଥିବା ଘଟଣା ରାଜ୍ୟ ସରକାରଙ୍କ ଦୃଷ୍ଟିଗୋଚର ହେବା ପରେ ଏ ବିଷୟରେ ଏକ ବିଧିବଦ୍ଧ ଆଇନ ବ୍ୟବସ୍ଥା କରିବାପାଇଁ ପଦକ୍ଷେପ ନିଆଯାଇ ୧୯୭୫ ମସିହା ଦାଦନ ଶ୍ରମିକ (ବିନିୟମ ଓ ନିୟନ୍ତ୍ରଣ) ଆଇନ ପ୍ରଣୟନ କରାଯାଇଛି ।

ଉପରୋକ୍ତ ଆଇନ ଏବେ ସାରା ରାଜ୍ୟରେ ବଳବତ୍ତର କରାଯାଇଛି ଏବଂ ଭୁବନେଶ୍ୱର ଓ ରାଉରକେଲାଠାରେ ଅବସ୍ଥାପିତ ଉପ-ଶ୍ରମ କମିଶନରଙ୍କଠାରୁ ରେଜିଷ୍ଟ୍ରିଭୁକ୍ତ ନହୋଇ ଏବଂ ପ୍ରମାଣପତ୍ର ନ ପାଇ କୌଣସି ଠିକାଦାର ଦାଦନ ଶ୍ରମିକ ସଂଗ୍ରହ କରିପାରିବେ ନାହିଁ ବୋଲି ଆଇନରେ ବ୍ୟବସ୍ଥା ରହିଛି । ଦାଦନ ଶ୍ରମିକ ସଂଗ୍ରହ ସମୟରେ ଠିକାଦାରମାନେ ସଂପୃକ୍ତ ଶ୍ରମିକଙ୍କ ସହ ଚୁକ୍ତିନାମାରେ ସ୍ୱାକ୍ଷର କରିବେ । ଏହି ଚୁକ୍ତିନାମାର ଏକ କପି ନକଲ୍ ଶ୍ରମ କମିଶନରଙ୍କ ନିକଟକୁ ପଠାଇବା ଲାଗି ଆଇନରେ ବ୍ୟବସ୍ଥା ରଖାଯାଇଛି ।

ଚୁକ୍ତିନାମାର ସର୍ତ୍ତ ଅନୁଯାୟୀ ଦାଦନ ଶ୍ରମିକମାନଙ୍କ ପାଇଁ ଉଦ୍ଦିଷ୍ଟ ସମସ୍ତ ପାଉଣା ନିଯୁକ୍ତିକ (Agent) ମାନେ ଦେବାପାଇଁ ଦାୟୀ ରହିବେ । ଯଦି କୌଣସି ନିଯୁକ୍ତିକ ଚୁକ୍ତିନାମାର ସର୍ତ୍ତ ଖିଲାପ କରନ୍ତି, ତାହାହେଲେ ସଂପୃକ୍ତ ଦାଦନ ଶ୍ରମିକ ଶ୍ରମ ବିଭାଗର ସ୍ଥାନୀୟ ସହକାରୀ ଶ୍ରମ କମିଶନର୍ କିମ୍ବା ସବ୍‌ଡିଭିଜନାଲ ବିଚାର ବିଭାଗ ମାଜିଷ୍ଟ୍ରେଟଙ୍କ ନିକଟରେ ତାଙ୍କର ପ୍ରାପ୍ୟ ନିମନ୍ତେ ଆପତ୍ତି ଆବେଦନ କରିପାରିବେ । ସହକାରୀ ଶ୍ରମ କମିଶନର କିମ୍ବା ମାଜିଷ୍ଟ୍ରେଟ ଆପତ୍ତି ଅଭିଯୋଗ ସମ୍ପର୍କରେ ଅନୁସନ୍ଧାନ କରି ଉଚିତ କାର୍ଯ୍ୟାନୁଷ୍ଠାନ କରିବେ ।

ଦାଦନ ଆଇନ ଅନୁସାରେ ବର୍ତ୍ତମାନ ସୁଦ୍ଧା ୧୬୧ ଜଣ ଖାତାଦାର ପ୍ରମାଣପତ୍ର ପାଇବା ନିମନ୍ତେ ନିବନ୍ଧକ ଅଧିକାରୀଙ୍କୁ ଆବେଦନ କରିଛନ୍ତି ଏବଂ ତନ୍ମଧ୍ୟରୁ ୬୧ଟି ଦରଖାସ୍ତ ଠିକ୍ ଥିବାରୁ ସଂପୃକ୍ତ ଖାତାଦାରମାନଙ୍କୁ ଦାଦନ ଶ୍ରମିକ ସଂଗ୍ରହ ନିମନ୍ତେ ରେଜିଷ୍ଟ୍ରିଭୁକ୍ତ କରାଯାଇ ପ୍ରମାଣପତ୍ର ଦିଆଯାଇଛି । ଜଣେ ଖାତାଦାରଙ୍କ ବିରୁଦ୍ଧରେ ବିନା ପ୍ରମାଣପତ୍ରରେ ଦାଦନ ଶ୍ରମିକ ସଂଗ୍ରହ କରିଥିବା ଅଭିଯୋଗରେ ମକଦ୍ଦମା ରୁଜୁ କରାଯାଇଛି ।

## ଶିଳ୍ପ ପରିଚାଳନାରେ ଶ୍ରମିକଙ୍କ ଅଂଶ ଗ୍ରହଣ

ଶିଳ୍ପ ପରିଚାଳନାରେ ବିଶେଷ କରି ସପର୍ଶି ସ୍ତରରେ (shop floor) ଓ ଏହାର ଉତ୍ପାଦନ କାର୍ଯ୍ୟକ୍ରମରେ ଶ୍ରମିକମାନଙ୍କ ଅଂଶ ଗ୍ରହଣ ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । ଏହି କାର୍ଯ୍ୟକ୍ରମ ଘୋଷିତ ହେବା ପୂର୍ବରୁ ରାଜ୍ୟ ସରକାର ଶିଳ୍ପ ପରିଚାଳନାରେ ଶ୍ରମିକଙ୍କ ଅଂଶ ଗ୍ରହଣ ସମ୍ପର୍କରେ ଯୋଜନା ପ୍ରସ୍ତୁତ କରି ସରକାରଙ୍କୁ ସୁପାରିଶ କରିବା ନିମନ୍ତେ ଗୋଟିଏ ତ୍ରିପକ୍ଷୀୟ କମିଟି ଗଠନ କରିଥିଲେ । କମିଟିଙ୍କ ସୁପାରିଶ ରାଜ୍ୟ ଶ୍ରମ ଉପଦେଷ୍ଟା ପରିଷଦରେ ଆଲୋଚିତ ହୋଇଥିଲା । ଇତ୍ୟବସରରେ ଭାରତ ସରକାରଙ୍କ ଶ୍ରମ ମନ୍ତ୍ରଣାଳୟ ୧୯୭୫ ମସିହା ଅକ୍ଟୋବର ୩୦ ତାରିଖ ଦିନ ଶିଳ୍ପ ପରିଚାଳନାରେ ଶ୍ରମିକମାନଙ୍କ ଅଂଶ ଗ୍ରହଣ ସମ୍ପର୍କରେ ଗୋଟିଏ ଯୋଜନା ପ୍ରସ୍ତୁତ କଲେ । ରାଜ୍ୟ ସରକାର ତ୍ରିପକ୍ଷୀୟ କମିଟିଙ୍କ ସୁପାରିଶ ଓ ଶ୍ରମ ଉପଦେଷ୍ଟା ପରିଷଦର ସୁପାରିଶଗୁଡ଼ିକୁ ସାବଧାନତାର ସହ ବିଚାର କରି ମୂଳତଃ ଭାରତ ସରକାରଙ୍କ ଦ୍ୱାରା ପ୍ରଣୀତ ଯୋଜନା ଅନୁଯାୟୀ କେନ୍ଦ୍ର ସରକାରଙ୍କ ପରିସରଭୁକ୍ତ ହୋଇନଥିବା ରାଜ୍ୟର ଅନ୍ୟାନ୍ୟ ଶିଳ୍ପାନୁଷ୍ଠାନରେ କାର୍ଯ୍ୟକାରୀ କରିବାପାଇଁ ଗୋଟିଏ ଯୋଜନା ପ୍ରଣୟନ କରିଛନ୍ତି ।

ଏହି ଯୋଜନା ପ୍ରଥମାବସ୍ଥାରେ ସରକାରୀ, ବେସରକାରୀ ତଥା ସମବାୟ ପ୍ରତିଷ୍ଠାନ ଏବଂ ବିଭାଗୀୟ ଉତ୍ପାଦନକାରୀ ଶିଳ୍ପ ସଂସ୍ଥା ଏବଂ ଖଣିଗୁଡ଼ିକରେ ଲାଗୁ ହେବ ବୋଲି ସ୍ଥିର କରାଯାଇଛି । ୫୦୦ କିମ୍ବା ତଦୂର୍ଦ୍ଧ୍ୱ ଶ୍ରମିକ କାର୍ଯ୍ୟ କରୁଥିବା ଶିଳ୍ପ ସଂସ୍ଥାଗୁଡ଼ିକ ପାଇଁ ବର୍ତ୍ତମାନ ଏହି ଆଇନ ଲାଗୁ କରାଯାଇଛି । ଏହି ଯୋଜନାର କାର୍ଯ୍ୟକାରିତା ସମୀକ୍ଷା କରିବାପାଇଁ ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଗୋଟିଏ ଉଚ୍ଚସ୍ତରୀୟ କମିଟି ଗଠନ କରାଯାଇଛି । ଗତ ମଇ ମାସ ୪ ତାରିଖ ଦିନ କମିଟିର ପ୍ରଥମ ବୈଠକ ବସି ଆଇନର କାର୍ଯ୍ୟକାରିତା ସମ୍ପର୍କରେ ଅନୁଧ୍ୟାନ କରିଥିଲେ ।

## ଏହି ଯୋଜନା ନିମ୍ନୋକ୍ତ ସଂସ୍ଥାମାନଙ୍କରେ ସଂପ୍ରତି କାର୍ଯ୍ୟକାରୀ ହେଉଅଛି

| ସେକ୍ଟରର ନାମ | ପରିସରଭୁକ୍ତ ଶିଳ୍ପ ସଂସ୍ଥା | ଯୋଜନା କାର୍ଯ୍ୟକାରୀ ହୋଇଥିବା ଶିଳ୍ପ-ସଂସ୍ଥାର ସଂଖ୍ୟା |
|---|---|---|
| ରାଜ୍ୟ ସରକାରୀ ଶିଳ୍ପ ସଂସ୍ଥା | ୧୪ | ୧୪ |
| କେନ୍ଦ୍ର ସରକାରୀ ଶିଳ୍ପ ସଂସ୍ଥା | ୩ | ୩ |
| ସମବାୟ ଶିଳ୍ପ | ୩ | ୩ |
| ବେସରକାରୀ ଶିଳ୍ପ ସଂସ୍ଥା | ୨୦ | ୧୯ |
| ଖଣି ଶିଳ୍ପ ସଂସ୍ଥା | ୪୯ | ୨୭ |

ଜଣାଯାଇଛି ଯେ ଉକ୍ତ ଯୋଜନା କାର୍ଯ୍ୟକାରୀ କରାଯାଇଥିବା ବିଭିନ୍ନ ଶିଳ୍ପାନୁଷ୍ଠାନରେ ସପର୍ଶି ପରିଷଦ ଏବଂ ଯୌଥ ପରିଷଦର ବୈଠକ ନିୟମିତ ଭାବେ ବସୁଛି । ଉତ୍ପାଦନ ବୃଦ୍ଧି, କାରଖାନାର ଜିନିଷପତ୍ର ରକ୍ଷା ଶ୍ରମମଙ୍ଗଳ ଇତ୍ୟାଦି ସମ୍ପର୍କରେ ଗଠନମୂଳକ ଆଲୋଚନା କରାଯାଇ ସେଗୁଡ଼ିକୁ କାର୍ଯ୍ୟକାରୀ କରିବା ନିମନ୍ତେ ପଦକ୍ଷେପ ନିଆଯାଇଛି । ଏଭଳି କାର୍ଯ୍ୟକ୍ରମରେ ଶ୍ରମିକମାନେ ବିଶେଷ ଆଗ୍ରହ ପ୍ରକାଶ କରୁଥିବା ଲକ୍ଷ୍ୟ କରାଯାଉଛି ।

## ମହିଳା ଶ୍ରମିକଙ୍କ ସ୍ୱାର୍ଥ ସୁରକ୍ଷା

ଦେଶରେ ଜରୁରୀ ଅବସ୍ଥା ଘୋଷଣା ହେବା ପରେ ମହିଳା ଶ୍ରମିକମାନଙ୍କ ସ୍ୱାର୍ଥ ସୁରକ୍ଷା ନିମନ୍ତେ ଭାରତ ସରକାର ଗୋଟିଏ ଆଇନ ପ୍ରଣୟନ କରିଛନ୍ତି । ଏହି ଆଇନ "ସମାନ ମଜୁରି ଆଇନ" ନାମରେ ସାରା ଦେଶରେ କାର୍ଯ୍ୟକାରୀ କରାଯାଉଛି । ଏହି ଆଇନ ଅନୁସାରେ ସମାନ ଓ ସମାନ ଧରଣର କାମପାଇଁ ସ୍ତ୍ରୀ ବା ପୁରୁଷ ଭିତ୍ତିରେ ମଜୁରି ପ୍ରଦାନ କ୍ଷେତ୍ରରେ ତାରତମ୍ୟ ରଖାଯାଇ ପାରିବ ନାହିଁ । ବର୍ତ୍ତମାନ ଏହି ଆଇନକୁ ଆମ ରାଜ୍ୟରେ ମଧ୍ୟ ବଳବତ୍ତର କରିବା ନିମନ୍ତେ ବିହିତ ପଦକ୍ଷେପ ନିଆଯାଇଛି ।

ଏତଦ୍‌ବ୍ୟତୀତ ମହିଳା ଶ୍ରମିକମାନଙ୍କ ବିଶେଷ ସୁବିଧା ଏବଂ ଅଧିକାର ସମ୍ପର୍କରେ ଗୋଟିଏ ଦୁଇଦିନିଆ ଆଲୋଚନାଚକ୍ର ରାଜ୍ୟ ଶ୍ରମ ନିର୍ଦ୍ଦେଶାଳୟ ତରଫରୁ ଭୁବନେଶ୍ୱରଠାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ୩୪୯ ଜଣ ମହିଳା ଶ୍ରମିକ ପ୍ରତିନିଧି ଯୋଗ ଦେଇଥିଲେ । ବିଭିନ୍ନ ପ୍ରତିନିଧିମାନେ ଏ ବିଷୟରେ ସବିଶେଷ ଆଲୋଚନା କରି ତାଙ୍କର ସଚିନ୍ତିତ ମତାମତ ସରକାରଙ୍କୁ ଦେଇଥିଲେ ।

OGP—MP-IX [Home (P. R.)] 81—30,000—26-10-1976

Vol. XXXIII, No. 3 UTKAL PRASANGA Regd. No. O-247
Licence No. C. R. N. P. 5—Licensed to post without Pre-Payment



Printed at Orissa Govt. Press, Cuttack-10